# ବିଚାରର ଚିନ୍ତନ

ଲେଖକ :

ଶତ୍ରୁଘ୍ନ ନାଥ, ଏମ୍.ଏ.(ଲଣ୍ଡନ)

ପ୍ରକାଶକ :

କାଉନସିଲ୍ ଅଫ୍ ଏବିଲିଟୀ ରିସର୍ଚ୍ଚ ଆଣ୍ଡ ଜେନେରେସନ୍

(CARG)

ଭୁବନେଶ୍ୱର

# ବିଚାରର ଚିନ୍ତନ

**ଲେଖକ :**

ଶତ୍ରୁଘ୍ନ ନାଥ, ଏମ୍.ଏ.(ଲଣ୍ଡନ)

**ପ୍ରକାଶନ ସମୟ :**

କାର୍ତ୍ତିକ ପୂର୍ଣ୍ଣିମା, ୨୦୦୩

**ପ୍ରକାଶକ :**

କାଉନସିଲ୍ ଅଫ୍ ଏବିଲିଟୀ ରିସର୍ଚ୍ଚ ଆଣ୍ଡ ଜେନେରେସନ୍ (CARG)
ପ୍ଲଟ ନମ୍ବର-୪୩୫୬, ପାଣ୍ଡବ ନଗର,
ଟଙ୍କପାଣି ରୋଡ଼, ଭୁବନେଶ୍ୱର-୭୫୧ ୦୧୮
ଓଡ଼ିଶା
ଫୋନ୍-(୦୬୭୪) ୨୪୩୬୫୦୪

**ମୁଦ୍ରଣ :**

ସାକ୍ରେଡ୍ ପ୍ରେସ୍ ସର୍ଭିସ୍, ଭୁବନେଶ୍ୱର

**ମୂଲ୍ୟ :** ଟ.୭୫/-

# ପ୍ରକାଶକୀୟ

କର୍ମମୟ ଜୀବନର ଆରମ୍ଭରୁ ଶିକ୍ଷକତାକୁ ଆଦରି ନେବା, ଶିଶୁ ଶ୍ରେଣୀରୁ ମହାବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷକତା କରିବା କମ୍ ବଡ଼ କଥା ନୁହେଁ। ଶ୍ରୀଯୁକ୍ତ ଶତ୍ରୁଘ୍ନ ନାଥ ଏଭଳି ଜଣେ ଶିକ୍ଷକ ଯିଏ ସାରା ଜୀବନ ଶିକ୍ଷକହିଁ ଥିଲେ। ପିଲାଙ୍କ ପାଇଁ ପାଠ୍ୟପୁସ୍ତକ ରଚନାଠାରୁ ଆରମ୍ଭ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବାରେ ତାଙ୍କର ଭୂମିକା ମହତ୍ତ୍ୱପୂର୍ଣ୍ଣ ହୋଇ ରହି ଆସିଛି। ଶିକ୍ଷା କ୍ଷେତ୍ରରେ ତାଙ୍କର ପ୍ରତିବଦ୍ଧତା ଓ ଦୃଷ୍ଟିଭଙ୍ଗୀ ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି। ସେ ବିଭିନ୍ନ ସମୟରେ ଶିକ୍ଷା ଓ ଶିକ୍ଷକଙ୍କ ଉପରେ ଅନେକ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ କରିଥିଲେ। ତାହାର କିଛି ଅଂଶ ଶିକ୍ଷାସନ୍ଧାନ, ଭୁବନେଶ୍ୱରଙ୍କ ଦ୍ୱାରା "ବ୍ୟକ୍ତିତ୍ୱର ସ୍ଫୁରଣ" ନାମରେ ପ୍ରକାଶିତ ହୋଇଛି। ଆଉ କିଛି ଲେଖା "ବିଚାରର ଚିନ୍ତନ" ନାମରେ ଆମ ଦ୍ୱାରା ପ୍ରକାଶିତ ହେଉଛି। କାଉନସିଲ୍ ଅଫ୍ ଆବିଲିଟି ରିସର୍ଚ୍ଚ ଆଣ୍ଡ ଜେନେରେସନ୍ (କାର୍ଗ)ର ପଞ୍ଜିକୃତ ୧୯୯୮ ମସୀହାରେ ହୋଇଥିଲେ ହେଁ ଏହାର ପ୍ରତିଷ୍ଠାତା ଶ୍ରୀଯୁକ୍ତ ବୈକୁଣ୍ଠ ବିଶ୍ୱାଳଙ୍କ ଅକାଳ ବିୟୋଗ ଯୋଗୁଁ ଅନେକ ସମୟ କାର୍ଯ୍ୟକ୍ଷମ ହୋଇପାରି ନଥିଲା। ଏହାକୁ ଆମେ ୨୦୦୦ ମସୀହା ଠାରୁ କାର୍ଯ୍ୟକ୍ଷମ କରିବା ପାଇଁ ଚେଷ୍ଟା କରି ଆସୁଛୁ। ବିଭିନ୍ନ ସମୟରେ ସାଂପ୍ରତିକ ବିଷୟରେ ଆଲୋଚନା ଚକ୍ର, ପୁସ୍ତକ ପ୍ରକାଶନ, ଜନଚେତନା ଆଦି କାର୍ଯ୍ୟ କରି ଆସୁଅଛୁ। ଏ ଭିତରେ ଆମେ ଶତ୍ରୁଘ୍ନ ନାଥଙ୍କ ରଚିତ "ପିଲାଙ୍କ ବିଲାତ କଥା", କାଶୀନାଥ ନାୟକଙ୍କ "ଲୁହ ପାଲଟିଲା ମୁକ୍ତା" ଏବଂ "ବେଙ୍ଗୁଲୀ ହେଲା ରାଣୀ" ପ୍ରକାଶ କରି ସାରିଛୁ ଏବଂ ସେଗୁଡ଼ିକ ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହୋଇପାରିଛି।

ବିଚାରର ଚିନ୍ତନ ହେଉଛି କାର୍ଗର ଚତୁର୍ଥ ପ୍ରକାଶନ। ଆଶା କରୁଛୁ ଏହା ମଧ୍ୟ ଶିକ୍ଷକ, ଅଭିଭାବକ, ଛାତ୍ରଛାତ୍ରୀ, ପ୍ରଶାସକ ମାନଙ୍କ ଦ୍ୱାରା ଆଦୃତ ହେବ।

ଚେତନା ବିଶ୍ୱାଳ

# ସୂଚୀପତ୍ର



* * * *

# ସାଂସାରିକ ଜୀବନରେ ଅମୃତର ସନ୍ଧାନ

ଓଡ଼ିଆ ଭାଗବତରୁ ପଦଟିଏ :-

ବିଷୟ ଯାହାର ଲୋଚନ,
ହରଇ ଜ୍ଞାନ, ବୁଦ୍ଧିମାନ ।।

ବିଷୟ ଆସକ୍ତି ମହା ଭୟଙ୍କର। ଏହା ଫଳରେ ମନୁଷ୍ୟର ଜ୍ଞାନ, ବୁଦ୍ଧି ଓ ମନ ରହେ ନାହିଁ। ଜ୍ଞାନ, ବୁଦ୍ଧି ଓ ମନକୁ ବିବେକ କୁହାଯାଇପାରେ, ଏହା ନଷ୍ଟ ହୋଇଗଲେ ମଣିଷ ଅବିବେକୀ ହୁଏ। ମୁଁ ରହିବି, ଖାଇବି। ମୋ ଛଡ଼ା ଆଉ କିଛି ନାହିଁ। ମୋର ମାଟି, କୋଠା ଘର। ଏହାହିଁ ସର୍ବସ୍ୱ ହୋଇପଡ଼େ। ଏପରି ସ୍ଥଳରେ ମନୁଷ୍ୟର ବିବେକପଣିଆ ରହେକି ? ତା ହେଲେ ସେ ସ୍ୱାର୍ଥାନ୍ଧ ହୋଇପଡ଼େ ଏବଂ ଏହି ଚିନ୍ତାରେ ସେ କବଳିତ ହୋଇଯାଏ।

ଶିଶୁ ମାତୃଗର୍ଭରୁ ଭୂପତିତ ହୋଇ କୁଆଁ କୁଆଁ ରାବ ଦିଏ। ଏହା ସର୍ବତ୍ର ଦେଖାଦିଏ। ଦେଶ କାଳ ପାତ୍ର ନିର୍ବିଶେଷରେ ବର୍ଣ୍ଣ, ଲିଙ୍ଗ ଆଦିର ପାର୍ଥକ୍ୟ ରହେ ନାହିଁ। କୁଆଁର ଅର୍ଥ ହେଉଛି ମୁଁ କିଏ, କାହିଁକି ଓ ମୋର କ'ଣ ? ସେ ଯେ ପରମପିତାଙ୍କ ଦ୍ୱାରା ପ୍ରେରିତ ଓ ତାଙ୍କ ନିର୍ଦ୍ଦେଶରେ କାମ କରିବ ଏହା ଭୁଲିଯାଏ। ସେହି ବିଷୟବିଷ ତାକୁ ଜର୍ଜରିତ କରେ। ସାଇପଡ଼ିଶାକୁ ସେ ଚିହ୍ନେ ନାହିଁ। ସେମାନଙ୍କଠାରୁ ଦୂରେଇଯାଏ। ତାହେଲେ ତାର ମନୁଷ୍ୟ ପଣିଆ ରହିଲା କି ? ମାନବିକ ଗୁଣରେ ସେ ଭୂଷିତ ହୁଏନାହିଁ।

ସେଥିପାଇଁ କବିଙ୍କ ଉକ୍ତି ହେଉଛି:-

ହସିଖେଳି ସେତୁ ଗମନ୍ତି ସମୟ,
ଜୀବନ ମଣନ୍ତି ମହୋତ୍ସବମୟ।

ଏହା ସମ୍ଭବ ହେବ ଯିଏ ଜୀବନକୁ ସମସ୍ତଙ୍କ ସହିତ ମିଶାଇ ଦିଏ, ସେଥିରେ ହଜାଇଦିଏ ଓ ସେଥିରୁ ମଧ୍ୟ ନିଜସ୍ୱ ଉପଲବ୍‌ଧି କରେ। ଏଥିପାଇଁ ଉତ୍ସବ କରାଯାଇଛି। ପରସ୍ପରକୁ ଚିହ୍ନିବା, ଜାଣିବା, ହସଖୁସିରେ କାଳକାଟିବା, ସେଇଥିପାଇଁ ଉତ୍ସବ। ସେଇଥିପାଇଁ ଆନନ୍ଦ ମୁଖର ଜୀବନ, ପଇସା କଉଡ଼ିର ଭେଦ ସେଠି ନାହିଁ। ପଦପଦବୀର ଚିହ୍ନନାହିଁ। ମନୁଷ୍ୟ ସମାଜ ଏକ ହୁଏ ଉତ୍ସବ ବିମଣ୍ଡିତ ହେଲେ। ଘରଠାରୁ ପର ଭେଦ ରହେନାହିଁ। ସମସ୍ତେ ଆପଣାର, ସେ ବି

ସମସ୍ତଙ୍କର। ଏହାହିଁ ଉତ୍ସବ। ଏଇଥିପାଇଁ ମିଳନ। ଏଇଥିପାଇଁ ଏକତ୍ରୀକରଣ। ଅନ୍ୟର ଦୁଃଖରେ ଦୁଃଖୀ ହେବା ଓ ପକ୍ଷାନ୍ତରରେ ସେମାନଙ୍କ ସୁଖରେ ସୁଖୀ ହେବା ହେଉଛି ମୂଲ୍ୟବୋଧ ମନୁଷ୍ୟ ଜୀବନ ପାଇଁ। ସେମାନଙ୍କର କିଛି କିଛି ଉପକାର କରିବା ହେଉଛି ମନୁଷ୍ୟ ପଣିଆର ଅନ୍ୟ ଏକ ଦିଗ। ଏସବୁ ସବୁ ଯୁଗରେ ସମସ୍ତଙ୍କ ପାଇଁ ଏକାନ୍ତ ଆବଶ୍ୟକ। ରଜତ ଜୟନ୍ତୀ ଅବସରରେ ଏହାହିଁ ଧ୍ୟେୟ ହେଉ। ଏଥିପାଇଁ ନିବେଦନ।

□□□

୭।୧୦।୦୨

# ଶିକ୍ଷା, ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାୟତନ

ଶିକ୍ଷାର୍ଥୀ ଶିକ୍ଷା ନିଅନ୍ତି। ଶିକ୍ଷକ ଶିକ୍ଷା ଦିଅନ୍ତି। ବ୍ୟକ୍ତି ଓ ସମାଜ ଶିକ୍ଷାକୁ ସାଧନ ଭାବରେ ନିୟୋଜିତ କରନ୍ତି। ଏହାର ଉଦ୍ଦେଶ୍ୟ ହେଉଛି ସମାଜର ସୁରକ୍ଷା ଓ ଏହାର ପରିବର୍ତ୍ତନ। ଯୁଗେ ଯୁଗେ ପରୀକ୍ଷିତ ମୂଲ୍ୟବୋଧଗୁଡ଼ିକ ସମାଜର ଭିତ୍ତି ହୁଏ। ସମାଜର ଗତି ଓ ପ୍ରକୃତି ସମୟୋପଯୋଗୀ ହେବା ପାଇଁ ପରିବର୍ତ୍ତିତ ହେଉଥାଏ। ଏହି ପରିବର୍ତ୍ତନ ନିରବଚ୍ଛିନ୍ନ ହୋଇଗଲେ ଏହା ମଧ୍ୟ ଅତୀତର ମହାନ ପରମ୍ପରାକୁ ସାଂପ୍ରତିକ ଆବଶ୍ୟକତାରେ ରଂଜିତ କରି ଭାବୀ ରୂପରେଖ ରଚନା କରିବାରେ ସହାୟକ ହୁଏ। ଏହା ହେଲେ ପରିବର୍ତ୍ତିତ ସ୍ଥିତି ବ୍ୟକ୍ତି ପାଇଁ ଗ୍ରହଣୀୟ ହୁଏ ଓ ସମାଜର ସୁରକ୍ଷା ହେତୁ ବିଶ୍ୱବକ୍ଷରେ ଏହାର ସ୍ୱାତନ୍ତ୍ର୍ୟ ରହେ। ଏହା ଫଳରେ ବ୍ୟକ୍ତି ପକ୍ଷରେ "ମୋ ବ୍ୟକ୍ତି"ର ଭାବନା ସୁଦୃଢ଼ ହୁଏ। ଏଥିଯୋଗୁ ସମାଜ ଓ ବ୍ୟକ୍ତି ପରସ୍ପର ପରିପୂରକ ହୁଏ। ସାମାଜିକ ପରିବର୍ତ୍ତନ ବ୍ୟକ୍ତି ପାଇଁ ଅସହ୍ୟ ହୁଏ ନାହିଁ। ସେ ଏହି ପରିବର୍ତ୍ତନ ଭିତରେ ଆକଚାମାକଚା ଓ ଅଣନିଃଶ୍ୱାସୀ ହୁଏନାହିଁ। ଅସହ୍ୟ ପରିବର୍ତ୍ତନ ମଧ୍ୟରେ ସେ ଆପଣାକୁ ଅସହାୟ ଓ ପଙ୍ଗୁ ମନେ କରେନାହିଁ। କିମ୍ବା ସେ ଆତ୍ମହତ୍ୟା କରେନାହିଁ। ବରଂ ବ୍ୟକ୍ତିତ୍ୱ ସୁବ୍ୟକ୍ତ ହୋଇ ସମାଜର ଶ୍ରୀବୃଦ୍ଧି ସାଧନ କରେ। ଏହାର ପରିଣତି ହୁଏ, ସଂହତି, ଶୌଷ୍ଠବ, ସମୃଦ୍ଧି ଓ ଶାନ୍ତି।

ଏପରି ଏକ ପରିବର୍ତ୍ତନ ସହଜ ସମ୍ଭବ ନୁହେଁ। କାଠିକର ପାଠ। ଶ୍ରେଣୀକୋଠରୀରେ ବକ୍ତୃତାଯୋଗ୍ୟ ବିଷୟ ହୋଇପାରେ। ତତ୍ତ୍ୱଦୃଷ୍ଟିରୁ ଏହା ଏକାନ୍ତ ସମର୍ଥନୀୟ। ଆନ୍ତରିକତା ଓ ଅଭିଜ୍ଞତାର ଅଭାବ ହେତୁରୁ ବକ୍ତୃତା ମଧ୍ୟ

ହୃଦୟସ୍ପର୍ଶୀ ହୋଇପାରେ ନାହିଁ । ଅନେକ ସମୟରେ ଗୋଟିଏ କାନବାଟେ ପଶି ଅନ୍ୟ କାନବାଟେ ବାହାରିଯାଏ । କାନକୁ ଭଲ ଶୁଭେ, କିନ୍ତୁ ମନକୁ ଛୁଏଁ ନାହିଁ । ଶ୍ରୋତାର ଆଚରଣଗତ ପରିବର୍ତ୍ତନ ଦେଖାଯାଏ ନାହିଁ । ପରୀକ୍ଷା ଖାତାରେ ବାନ୍ତି କରାଯାଏ । ପରିବର୍ତ୍ତନ ପାଠ ଗଧ ପିଠିରେ ଚିନିବୋଝ ପରି ଲଦାହୋଇ ରହେ । କେତେବେଳେ ଭୂତ ଗ୍ରାସ କଲାପରି ମାଡ଼ିବସେ । ଟିକିଏ ସମୟର ବ୍ୟବଧାନ ପରେ ନିଶାମୁକ୍ତ ହେଲାପରି ଏହି ତଥ୍ୟମୁକ୍ତି ମିଳିଯାଏ । ଏହାର ସ୍ଥାନ ପରିବର୍ତ୍ତନ (Transfer) ଆପଣା ଆଚରଣକୁ ଓହ୍ଲାଇ ଆସୁନାହିଁ । ସ୍ଥାନାନ୍ତର ଓ କାଳାନ୍ତରରେ ଏହାର ପ୍ରୟୋଗ ଦେଖାଯାଏ ନାହିଁ । ଘଟାନ୍ତର ମଧ୍ୟ ହୁଏ ନାହିଁ ।

ମଜା କଥା ହେଉଛି ଯେ ଆମେ ପରିବର୍ତ୍ତନର ତତ୍ତ୍ୱକୁ କୁଥୁଳିରେ ପୂରାଇ ରଖୁ । ପୋଥି ବାଇଗଣ କରୁ । ଆମ ଶିକ୍ଷାୟତନ ସ୍ତରରେ ଏହାର ପ୍ରୟୋଗ ନ ଥାଏ । ଶ୍ରେଣୀ କୋଠରୀଟି ଶିକ୍ଷାୟତନର ଅଙ୍ଗ ହେଲେହେଁ ଏହାର ଧ୍ୱନି ଶିକ୍ଷାୟତନରେ ପ୍ରତିଧ୍ୱନିତ ହୁଏ ନାହିଁ । ପାଠ୍ୟାନ୍ତରରେ ଶିକ୍ଷାୟତନର ଶିକ୍ଷାଦର୍ଶ ଶ୍ରେଣୀକୋଠରୀରେ ଦୃଢ଼ୀଭୂତ ହୁଏ ନାହିଁ । ଶିକ୍ଷକଗୋଷ୍ଠୀ ଏଥିରେ ସମପ୍ରାଣରେ ସହଭାଗୀ ହୁଅନ୍ତି ନାହିଁ । ଶିକ୍ଷାୟତନର ସମାଜପ୍ରତି ଆନୁଗତ୍ୟକୁ ଏକ ସ୍ୱତନ୍ତ୍ର ପାଠ୍ୟ ବୋଲି ବିଚାର କରି କଣେ ଦି'କଣ ଶିକ୍ଷକଙ୍କ ମୁଣ୍ଡ ଉପରେ ଲଦି ଦିଆଯାଏ । ଶ୍ରେଣୀ ଅନୁସାରେ ଦି'ଟା ଗୋଟେ ପିରିଅଡ୍ ଏଥିପାଇଁ ନିରୂପିତ କରାଯାଏ । ଏହା ଏକ ତ୍ରୁଟିପୂର୍ଣ୍ଣ ବିଚାର ଏବଂ ଏଥିଯୋଗୁଁ ଶିକ୍ଷାର ଏହି ମୂଳ ଲକ୍ଷ୍ୟଟି ଦୃଷ୍ଟିପଥରୁ କକ୍ଷଚ୍ୟୁତ ହୋଇଯାଏ । ଶିକ୍ଷାର ଏହି ପଥଶ୍ରମ ସାର୍ଥକ ହୁଏ, କିନ୍ତୁ ଶିକ୍ଷା ଏକ ନିଷ୍ଫଳ ପ୍ରୟାସରେ ପରିଣତ ହୁଏ । ସମାଜ ସଚେତନତା ଓ ଆନୁଗତ୍ୟର ବିକାଶ ପାଇଁ ସବୁ ଶିକ୍ଷକ ଉତ୍ସର୍ଗୀକୃତ ରହିବା ଉଚିତ । ସମଗ୍ର ପାଠ୍ୟକ୍ରମରେ ଏହା ପ୍ରତିଫଳିତ ହେବା ଆବଶ୍ୟକ । ସମଗ୍ର ଶିକ୍ଷାୟତନ ଏହାର ପ୍ରତୀକ ହେବା ଉଚିତ୍ । ସମୟ ଥିଲା, ଯେତେବେଳେ ଶିକ୍ଷାୟତନର ଚତୁର୍ଦ୍ଦିଗ ନୀତିବାଣୀରେ ଭୂଷିତ ହେଉଥିଲା । ଦେଖି ଦେଖି ଶିକ୍ଷାର୍ଥୀ ପ୍ରଭାବିତ ହେଉଥିଲେ । ଆଜିକାଲି ମଧ୍ୟ କେତେକ ଶିକ୍ଷାୟତନରେ ଏହାକୁ ଦେଖିବାକୁ ମିଳେ । କିନ୍ତୁ ବହୁ କ୍ଷେତ୍ରରେ ଏହାର ଅଭାବ ଦୃଷ୍ଟିଗୋଚର ହୁଏ । ଆଦର୍ଶ ନ ଥାଏ, ଅଭ୍ୟାସ ମଧ୍ୟ କରାଯାଏ ନାହିଁ, କେବଳ ଉଚ୍ଚାରଣ ଓ କଣ୍ଠସ୍ଥୀକରଣ ଉପରେ ଗୁରୁତ୍ୱ ଦିଆଯାଏ । ଶିକ୍ଷାୟତନ ସମାଜର ଓ ସମାଜପାଇଁ ହୋଇ ରହେ ନାହିଁ । ପାଠ୍ୟକ୍ରମ କେବଳ ଗୁଡ଼ିଏ ପାଠ୍ୟବିଷୟର ତାଲିକା ହୁଏ । ବିଭିନ୍ନ ବିଷୟର ସୂଚୀ ଭାବରେ ଉପସ୍ଥାପିତ କରାଯାଏ । କେଉଁଠି କେଉଁଠି ଆଭିମୁଖ୍ୟର ଉଲ୍ଲେଖ କରାଯାଇ ଥିଲେହେଁ ଆଭିମୁଖ୍ୟ ସହିତ ପାଠ୍ୟବସ୍ତୁର ସମ୍ପର୍କକୁ ନିର୍ଦ୍ଦିଷ୍ଟ କରାଯାଇ ନ ଥାଏ । ଏହାଫଳରେ

ଆଭିମୁଖ୍ୟକୁ ପୂରାପୂରି ଉପେକ୍ଷା କରି କେବଳ ପାଠବସ୍ତୁ ଏବଂ ଅନେକ ସ୍ଥଳରେ ଏହା ପ୍ରତି ନଜର ନଦେଇ ପାଠ୍ୟପୁସ୍ତକକୁ ଗୌଣ କରି ଓ ଶିକ୍ଷାର ପରିସର ମଧ୍ୟରୁ ଏହାକୁ ବହିଷ୍କାର କରାଯାଏ । ପରୀକ୍ଷାର ପ୍ରଶ୍ନ ଓ ପ୍ରଶ୍ନୋତ୍ତର ପୁସ୍ତକ ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ପାଇଁ ଧ୍ୟେୟ ହୋଇ ରହେ । ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକର ମୁଖଦର୍ଶନ ମଧ୍ୟ କରାଯାଏ ନାହିଁ । ଏହା ଏକ ଚରମ ଦୁର୍ଗତି ଓ ବୈଫଲ୍ୟର ଚିହ୍ନ, କାରଣ ପାଠ୍ୟକ୍ରମ ପ୍ରସ୍ତୁତିର ବୈଜ୍ଞାନିକ ରୀତି ଅନୁସୃତ ହୁଏନାହିଁ । ଶିକ୍ଷାର ଆଭିମୁଖ୍ୟ ପ୍ରତି ଚରମ ଉଦାସୀନତା ପ୍ରକାଶ ପାଏ । ଶିକ୍ଷାୟତନ ଶିକ୍ଷାର କ୍ଷେତ୍ର ନ ହୋଇ ସମାଜଠାରୁ ବିଚ୍ଛିନ୍ନ ହୋଇ ସେଠାରେ କିଛି ସମୟ ଅତିବାହିତ କରିବାର ସ୍ଥାନ ହୁଏ । ନିଜ ଗୋଡ଼ରେ ଠିଆ ନ ହେବା ଓ ସଂସାର ମଧ୍ୟରେ ପ୍ରବେଶ ନ କରିବା ପର୍ଯ୍ୟନ୍ତ ଶିକ୍ଷାୟତନ ଶିକ୍ଷାର୍ଥୀ ପାଇଁ ଏକ କାରାଗାର ରୂପେ କାର୍ଯ୍ୟ କରେ । ସେ ଅଟକବନ୍ଦୀ ହୁଏ । ଶିକ୍ଷାର ସମୟ ହେଉଛି ଜୀବନବ୍ୟାପୀ । ଜୀବନ ନିର୍ମାଣ କ୍ଷେତ୍ର ହେଉଛି ଶିକ୍ଷାୟତନ । ଶିକ୍ଷା ପରେ ଜୀବନ ଓ ଜୀବିକାର ଆରମ୍ଭ ବୋଲି ବିଚାରିବା ଅନୁଚିତ । ମନୁଷ୍ୟ ସମାଜର ପ୍ରାଣୀ ଓ ସେ ସାମାଜିକ । ନିଜର ବିକାଶ ସ୍ତର ଅନୁସାରେ ସେ ସମାଜର ସମସ୍ୟାକୁ ଅନୁଧ୍ୟାନ କରିବ, ଅଧ୍ୟୟନ କରିବ, ସଂଶ୍ଳିଷ୍ଟ ହେବ ଓ ସମାଧାନର ଦକ୍ଷତା ଅର୍ଜନ କରିବ । କୌଣସି ସ୍ତରରେ ସମାଜକୁ ଛାଡ଼ି ଶିକ୍ଷାର ଗତି, ପ୍ରକୃତି ଓ ମୁକ୍ତି କାହିଁ ? ସମାଜର କୋଳରେ ମନୁଷ୍ୟର ଜନ୍ମ, ଜୀବନଧାରଣ ଓ ପରିଶେଷରେ ବିଲୟ । ଜନ୍ମରୁ ସେ ସାମାଜିକ । ସମାଜ ପ୍ରତି ଉତ୍ତର ଦାୟିତ୍ୱ କ୍ରମେ ବୃଦ୍ଧି ପାଏ, ନିର୍ଦ୍ଦିଷ୍ଟ ହୁଏ ଓ ବାସ୍ତବ ହୁଏ । କିନ୍ତୁ ସମାଜ ସହିତ ଅଙ୍ଗାଙ୍ଗୀ ଜଡ଼ିତ ରହି ସମାଜର କୋଳରେ ପଲ୍ଲବିତ ହୁଏ ।

ଏହି ଚିନ୍ତାର ବାସ୍ତବ ରୂପାୟନ କରାଯାଏ ଗାନ୍ଧୀ ପରିକଳ୍ପିତ ବୁନିୟାଦୀ ଶିକ୍ଷାରେ । ଜୀବନଯାପନ ମାଧ୍ୟମରେ ଜୀବନ ପାଇଁ ଜୀବନବ୍ୟାପୀ ଶିକ୍ଷାର ଯୋଜନା କରାଯାଇଛି । ତେଣୁ ଏହି ଶିକ୍ଷାକୁ କର୍ମକୈନ୍ଦ୍ରିକ ଶିକ୍ଷା କୁହାଯାଏ । ସତ୍ୟ ଓ ଅହିଂସା ଆଧାରିତ ସମନ୍ୱିତ ବ୍ୟକ୍ତି ଓ ସମାଜର ବିକାଶ ହେଉଛି ଏହି ଶିକ୍ଷାର ଲକ୍ଷ୍ୟ । ଏହି ଶିକ୍ଷାର ସଫଳତା ପାଇଁ ବିନୋବାଜୀ କାର୍ଯ୍ୟକାରୀ ସୂତ୍ର ଭାବରେ କହନ୍ତି ଯେ ଗୁରୁ ଶିଷ୍ୟପରାୟଣ ହେବେ, ଶିଷ୍ୟ ଗୁରୁପରାୟଣ ହେବେ, ଉଭୟ ବିଦ୍ୟାପରାୟଣ ହେବେ, ଏବଂ ବିଦ୍ୟା ସେବାପରାୟଣ ହେବ । ଏହାକୁ ଲକ୍ଷ୍ୟ ରଖି କାର୍ଯ୍ୟ କରାଗଲେ ଶିକ୍ଷା ଓ ଶିକ୍ଷାୟତନ ସମାଜକୈନ୍ଦ୍ରିକ ହୋଇପାରିବ । ଶିକ୍ଷାର୍ଥୀ ଓ ଶିକ୍ଷକ ସମାଜର ସେବା କରୁ କରୁ ପ୍ରତ୍ୟେକ ଶିକ୍ଷା ଲାଭ କରିପାରିବେ ଓ ସମାଜସେବା ସେମାନଙ୍କ ଜୀବନର ଅଙ୍ଗୀଭୂତ ହେବ । ଶିକ୍ଷାୟତନର ପରିସର ମଧ୍ୟରେ ଶିକ୍ଷାର୍ଥୀଙ୍କ ଭିତରେ ସାମାଜିକ ସମ୍ପର୍କ ଦୃଢ଼ୀଭୂତ ହୋଇ ସମାଜର

ସୁରକ୍ଷା କରି ଶିକ୍ଷାର୍ଥୀମାନେ ସୁରକ୍ଷିତ ଜୀବନଯାପନ କରିବେ । ଏହା ସତ୍ତ୍ୱେ ଏହା ଲକ୍ଷ୍ୟ କରାଯାଏ ଯେ ଶିକ୍ଷାର ସକଳ ସ୍ତରରେ ଶିକ୍ଷାୟତନ ବିଚ୍ଛିନ୍ନ ହୋଇ ରହିଛି । ଏହା ସରକାରୀ ଶିକ୍ଷାୟତନ ଏବଂ ଏହା ଭିତରକୁ ଜନସାଧାରଣଙ୍କ ପ୍ରବେଶ ନିଷେଧ ବୋଲି ଦେଖାଯାଉଛି । ଏହି ବିଚ୍ଛିନ୍ନତା ଏକାନ୍ତ ବିପଜ୍ଜନକ । ସମାଜ ଓ ବ୍ୟକ୍ତିର ବିକାଶ ପାଇଁ କ୍ଷତିକାରକ । ଏଥିପାଇଁ ଅନେକ କାରଣ ରହିଛି । ଗ୍ରାମବାସୀ ନିରକ୍ଷର ହୋଇଥିବାରୁ ସେମାନେ ଶିକ୍ଷାର ଅର୍ଥ ଓ ସ୍ୱରୂପ ବୁଝୁନାହାନ୍ତି । ତେଣୁ ସେମାନଙ୍କ ଠାରୁ ଶିକ୍ଷାୟତନ ଦୂରେଇ ଯାଉଛି, ଯଦିଓ ସେମାନଙ୍କୁ ସାକ୍ଷର କରି ଶିକ୍ଷାର ବିକାଶରେ ସେମାନଙ୍କ ଆଗ୍ରହ ଓ ସହଯୋଗ ଆକର୍ଷଣ କରିବା ଶିକ୍ଷାୟତନର କର୍ତ୍ତବ୍ୟ । ଆହୁରି ମଧ୍ୟ ଏହା ହୋଇପାରେ ଯେ, କଳୁଷିତ ତଥା ସ୍ୱାର୍ଥସର୍ବସ୍ୱ ରାଜନୀତି ଚାଲିଥିବାରୁ ଶିକ୍ଷାୟତନ ସଙ୍କୁଚିତ୍ ହୋଇଛି ଓ ପୂରାପୂରି ବିଚ୍ଛିନ୍ନ ହୋଇଯାଇଛି । ଏହାଛଡ଼ା ଅନେକ ସମୟରେ ଶିକ୍ଷାୟତନ ରାଜନୈତିକ ଓ ସାମାଜିକ କନ୍ଦଳର କେନ୍ଦ୍ର ହୋଇଛି । ଦୁଷ୍ପ୍ରଭାବିତ ହୋଇ ବହୁଧା ବିଭକ୍ତ ହୋଇଛି ଓ ନିଜର ଏକୀଭୂତ ଆଭିମୁଖ୍ୟ ହରାଇ ଆପଣାଛାଏଁ ସମାଜରୁ ପୃଥକ ହୋଇଛି । ଶିକ୍ଷାୟତନ ଓ ସମାଜ ମଧ୍ୟରେ କିପରି ଯଥାର୍ଥ ସମ୍ପର୍କ ପ୍ରତିଷ୍ଠିତ ହୋଇ ପରସ୍ପର ପ୍ରତି ଅଭିବୃଦ୍ଧି ସହାୟକ ହେବ-- ଏହାହିଁ ଘୋର ଚିନ୍ତାର ବିଷୟ । ପ୍ରତ୍ୟେକ ଶିକ୍ଷାୟତନ ସ୍ତରରେ ଅଭିଭାବକ, ଶିକ୍ଷାର୍ଥୀ ଓ ଶିକ୍ଷକଙ୍କ ମିଳିତ ମସୁଧାରେ କାର୍ଯ୍ୟପନ୍ଥା ଗ୍ରହଣ କରିବା ଉଚିତ୍ ।

ଏହି ପ୍ରସଙ୍ଗରେ ଶିକ୍ଷା ଯେ ଏକମାତ୍ର ସାଧନ ଓ ଶିକ୍ଷାୟତନ ଆଭ୍ୟନ୍ତରୀଣ କଥା ବହିଃଜଗତର ଦୁର୍ନୀତି, ଅପସଂସ୍କୃତି, ଅନ୍ଧବିଶ୍ୱାସ ଆଦିକୁ ଦୂର କରି ସର୍ବବିଧ କଲ୍ୟାଣ ସାଧନ କରିପାରିବ ଏହା ବିଚାର୍ଯ୍ୟ । ଶ୍ରେଣୀକୋଠରୀର ପରିସର ମଧ୍ୟରେ ଦେଶବାସୀଙ୍କ ଭାଗ୍ୟନିର୍ମାଣ କରାଯାଏ ବୋଲି ଶିକ୍ଷାକୁ ସ୍ୱୀକୃତି ଦିଆଯାଇଛି । ଐତିହାସିକ କୋଠାରୀ କମିଶନ ମଧ୍ୟ ଏହାକୁ ସାବ୍ୟସ୍ତ କରିଛନ୍ତି । ଏହା ଜାଣିବାର କଥା ଯେ ଶିକ୍ଷାୟତନ ପରି ଏକାଧିକ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସଂଗଠନ ସମାଜକୁ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ସମାଜ ଦ୍ୱାରା ପ୍ରଭାବିତ ହେଉଛନ୍ତି । ଧନ, ଜନ ଓ କ୍ଷମତା ବଳରେ ଏସବୁ ଏପରି ସକ୍ରିୟ ଯେ ଶିକ୍ଷାୟତନକୁ ପ୍ରତିହତ ଓ ପରାଭୂତ କରିବା ଅସମ୍ଭବ ନୁହେଁ । ଅପରପକ୍ଷରେ ପରିବର୍ତ୍ତନର ଏକ ସନ୍ଧିସନ୍ଧିବେଳରେ ସମାଜର ସମସ୍ୟା ବଢ଼ିଛି, ନୂତନ ସମସ୍ୟା ମୁଣ୍ଡ ଟେକୁଛି ଓ ପୁରାତନ ସମସ୍ୟା ଉତ୍କଟ ହେଉଛି ବା ଜୋରଦାର ହେଉଛି । ଅଥଚ ଶିକ୍ଷାୟତନ ଓ ଶିକ୍ଷାର ଏଥିପ୍ରତି ସ୍ପର୍ଶକାତରତା ଶିଥିଳ ହୋଇ ଯାଉଛି । ରକ୍ଷଣଶୀଳତା ଅଧିକରୁ ଅଧିକ ଗ୍ରାସ କରିଛି । ଶିକ୍ଷାର ସଂସ୍କାର କେବଳ ନାମରେ

ରହିଛି । କାର୍ଯ୍ୟରେ ଆଗିଠାର ମରାଯାଉଛି । ଗତାନୁଗତିକ ପ୍ରଶାସନିକ ବ୍ୟବସ୍ଥା ଶିକ୍ଷାର୍ଥୀଙ୍କ ସଂଖ୍ୟାରେ ଆଧିକ୍ୟ ହେତୁରୁ ଜଟିଳ ହେଉଛି ଓ ସେଥିରେ ସବୁ ସମୟ ଅତିବାହିତ । ତଳରୁ ତାଳୁପା ପର୍ଯ୍ୟନ୍ତ ସବୁ ସ୍ତରରେ ବିଶେଷ କରି ଉଚ୍ଚତର ଶିକ୍ଷାୟତନରେ ପରୀକ୍ଷା ପରିଚାଳନା ଗୁରୁତର ସମସ୍ୟା ସୃଷ୍ଟି କରିଛି । ଏଥିସହିତ ଶ୍ରେଣୀପରିଚାଳନା ଶିକ୍ଷକମାନଙ୍କ ପାଇଁ ଏକ ଅଭିନବ ଓ ଆଧୁନିକ ସଂକଟର ରୂପ ନେଇଛି । ଶସ୍ତା ଜନପ୍ରିୟତା ଲୋଭୀ ତଥା ଉଦାସୀନ ଶିକ୍ଷକମାନେ ଯେପରି ନୀତିପରାୟଣ କର୍ତ୍ତବ୍ୟନିଷ୍ଠ ଶିକ୍ଷକ ମଧ୍ୟ ସେହିପରି ସଙ୍କଟଗ୍ରସ୍ତ । ଏପରି ଅବସ୍ଥାରେ ଅନ୍ତତଃପକ୍ଷେ ଏତିକି ଆଶା କରାଯାଏ ଯେ ଉଲ୍ଲିଖିତ ବିଭିନ୍ନ ସଂଗଠନଗୁଡ଼ିକ ଶିକ୍ଷାୟତନ ସହିତ ତାଳମେଳ ରଖି ଚଳିବା ଉଚିତ ଓ ଶିକ୍ଷାକୁ ସଂକୀର୍ଣ୍ଣ ରାଜନୈତିକ ବିଚାରର ଊର୍ଦ୍ଧ୍ୱରେ ରଖିବା ଦରକାର ।

ଏହା ବ୍ୟତୀତ ସମାଜର ପରିବର୍ତ୍ତନ ଦ୍ରୁତ ହୋଇଛି । ଜ୍ଞାନର ବିସ୍ଫୋରଣ ଅତ୍ୟଧିକ ବୃଦ୍ଧି ପାଇଛି । ଲୋକମାନଙ୍କ ଆଶା ଓ ଆକାଂକ୍ଷାର ବିସ୍ଫୋରଣ ଘଟିଛି । ଏସବୁ ହେତୁ କେତେକ ବର୍ଷ ପୂର୍ବରୁ ପରିବେଶର ସୀମିତତା ଯୋଗୁଁ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ଯେପରି କର୍ମକ୍ଷମ ଥିଲା ଆଜି ସେପରି ନାହିଁ । ଆଜି ଏସବୁ ପଙ୍ଗୁ, ନିଷ୍କ୍ରିୟ ଓ ନିସ୍ତେଜ ଜଣାପଡ଼େ । ଏସବୁ ସମ୍ବନ୍ଧରେ ଶିକ୍ଷାଶାସ୍ତ୍ରୀମାନେ ଯେଉଁ ଆଶା ପୋଷଣ କରୁଛନ୍ତି ତାହା କାର୍ଯ୍ୟକାରୀ ହେଉନାହିଁ । ଅନ୍ୟାନ୍ୟ ସଂଗଠନଗୁଡ଼ିକର ବିନା ସହାୟତାରେ ଶିକ୍ଷାୟତନ ସତେ ଯେପରି ଦୁର୍ବଳ କିମ୍ବା ଶିକ୍ଷାୟତନର ସାଂପ୍ରତିକ କର୍ମକ୍ଷମତାରେ ସମାଜର ଆଶା ଓ ଆକାଂକ୍ଷା ଅତ୍ୟଧିକ ହୋଇଯାଉଛି । ଶିକ୍ଷା ପଦ୍ଧତିର ଆମୂଳଚୂଳ ପରିବର୍ତ୍ତନ ଆବଶ୍ୟକ ପଡୁଛି । ଆହୁରି ମଧ୍ୟ ସଂସ୍କାରଗତ ପ୍ରସ୍ତାବନା କେବଳ କାଗଜ କଲମରେ ରହିଯାଉଛି । ଯେଉଁ ଅଳ୍ପ କେତେଜଣ ଏହାର ବାହକ ହୋଇ ଶିକ୍ଷାୟତନ, ଶିକ୍ଷାର୍ଥୀ, ଶିକ୍ଷକ ଓ ଅଭିଭାବକମାନଙ୍କ ସମୀପସ୍ଥ ହେଉଛନ୍ତି ସେମାନଙ୍କର ବିଶ୍ୱାସ, ଆନ୍ତରିକତା ଓ ଉତ୍ସର୍ଗପଣିଆ ନାହିଁ । ଦେଶଭକ୍ତି ଓ ବିଶ୍ୱପ୍ରୀତିରେ ସମସ୍ତେ ମଜ୍ଜିଯାଉ ନାହାନ୍ତି । ସ୍ଥିତି ଏକାନ୍ତ ଜଟିଳ ହେଲେହେଁ ଆଶା ଓ ସମ୍ଭାବନା ଉଜ୍ଜ୍ୱଳ ରହିଛି । ଅତଏବ ରାଜନୈତିକ ବିଚାର, ସାମାଜିକ ଅବସ୍ଥା ଓ ଅର୍ଥନୈତିକ ତଥା ଉନ୍ନୟନ କାର୍ଯ୍ୟକ୍ରମ ଶିକ୍ଷା ସହିତ ତାଳ ମିଳାଇ ଚଳିବା ଉଚିତ । ସେସବୁର ସାଧନ ପାଇଁ ଶିକ୍ଷାକୁ ଉଭୟ ଉପାୟ ଓ ଉଦ୍ଦେଶ୍ୟ ଭାବରେ ଗ୍ରହଣ କରିବା ଏକାନ୍ତ ଆବଶ୍ୟକ । ଏକଥା ଅବଶ୍ୟ ସତ୍ୟ ଯେ ବ୍ୟକ୍ତିର ସମନ୍ୱିତ ବିକାଶ କରି ତାହାର ଚରିତ୍ର ନିର୍ମାଣ କରିବାରେ ଶିକ୍ଷା ଓ ଶିକ୍ଷାୟତନର ଦାୟିତ୍ୱ ଅଧିକ ସୁସ୍ପଷ୍ଟ ଓ ସୁନିର୍ଦ୍ଦେଶିତ ।

ଏହି ପ୍ରସଙ୍ଗରେ ମୋ ବେଳର ଶିକ୍ଷା, ଶିକ୍ଷକ ଓ ସ୍କୁଲର ପ୍ରଭାବ କିପରି ପଡ଼ିଛି ତାହା ଏଠାରେ ସ୍ମରଣୀୟ । ଦେଶ ପରାଧୀନ ଥିଲା । ଆମକୁ ପ୍ରାୟ ଷାଠିଏ ବର୍ଷରୁ

ଅଧିକ ହେଲାଣି । ନାରାୟଣ ଚନ୍ଦ୍ର ମିːଇː ସ୍କୁଲର ପାଠପଢ଼ା । ସେ ସମୟ ଓ ଏହାର ପ୍ରଭାବ ସେବେଳର ପୂଜନୀୟ ଗୁରୁଜୀମାନଙ୍କ ଶିକ୍ଷା ଯୋଗୁଁ ଅଭୁଲା ହୋଇ ରହିଛି ଏବଂ ଏବେ ବି ଏହାର ପ୍ରାସଙ୍ଗିକତା କେଡ଼େ ଉଜ୍ଜ୍ୱଳ ଏହା ସହଜରେ ଅନୁମେୟ। ପୂଜନୀୟ ଉଦୟ ନାରାୟଣ ମହାନ୍ତି ପ୍ରଧାନ ଶିକ୍ଷକ ଥା'ନ୍ତି ଓ ତାଙ୍କର ସହକର୍ମୀ ଭାବରେ ସର୍ବପୂଜନୀୟ ରାଧାକୃଷ୍ଣ ପଣ୍ଡା, ଯଦୁମଣି ବାରିକ ଓ ଭଗବାନ ତ୍ରିପାଠୀ କାମ କରୁଥାନ୍ତି । ଏହି ଚତୁର୍ମୂର୍ତ୍ତି ଭିତରେ ଓ ବାହାରେ ଏକ ଓ ଅଭିନ୍ନ । ଖଡମ୍ ମାଡ଼ନ୍ତି । ଭିନ୍ନ ଭିନ୍ନ କୋଠରୀରେ ରହନ୍ତି । ଏକକାଳୀନ ପ୍ରାର୍ଥନା କରନ୍ତି । ଭୋଜନ ଏକତ୍ର ଏକ ରୋଷେଇରେ କରାଯାଏ । ସେତେବେଳେ ଆମ୍ଭମାନଙ୍କ ମଧ୍ୟରେ ଏହି ଧାରଣା ଜନ୍ମିଥିଲା ଯେ ଆମ୍ଭମାନଙ୍କର ସେହ ଶିକ୍ଷକ ଚାରିମୂର୍ତ୍ତି ସାନ୍ଧ୍ୟ ପ୍ରାର୍ଥନା କାଳରେ ପ୍ରାଣାୟାମ କରୁ କରୁ ଏକସମୟରେ ଭୂମିରୁ ଭୂମିଛାଡ଼ି ଉଠିଯାଉଥିଲେ। ସେମାନଙ୍କ ଶିକ୍ଷା, ଜନ୍ମ, ବୟସ, ଜାତି, ସ୍କୁଲରେ ପଦପଦବୀ ଆଦି ପୃଥକ ହେଲେହେଁ ସେମାନଙ୍କ ଆଚାର ଓ ବିଚାର ଅଭିନ୍ନ ଥିଲା । ଏହାହିଁ ଆଜିର ଶିକ୍ଷକ ସମାଜ ପ୍ରତି ସଂପୂର୍ଣ୍ଣ ନୂତନ ଉଦାହରଣ ଓ ଆଦର୍ଶ ସପ୍ତମ ଶ୍ରେଣୀ ଶେଷ ପୂର୍ବରୁ ଆମେ କେତେଜଣ ଛାତ୍ର ବୃତ୍ତିପରୀକ୍ଷା ପାଇଁ ନିର୍ବାଚିତ ହୋଇଥାଉଁ। ସେକେଣ୍ଡ ମାଷ୍ଟ୍ରେ ପୂଜନୀୟ ରାଧାକୃଷ୍ଣ ବାବୁ ଆମର ସ୍ୱତନ୍ତ୍ର ଦୃଷ୍ଟି ନିଅନ୍ତି । ଛାତ୍ରାବାସରେ ତାଙ୍କ କୋଠରୀରେ ଆମେ ଖାଇ ଶୋଉ ଓ ରାତିପାହାନ୍ତା ଚାରିଟା ବେଳକୁ ସେ ଆମକୁ 'କଳସି', 'କଳସି' (ସ୍କଲାରସିପର ହାସ୍ୟୋପଦୀକ ଡାକ) ବୋଲି କହି ଡାକନ୍ତି । ଏବେ ବି ଏକଥା ମନେ ପଡ଼ିଲେ ହସ ଲାଗେ । ପାହାନ୍ତାରୁ ଆମେ ଉଠି ମୁହଁ, ହାତ ଧୋଇ ପଢ଼ାପଢ଼ି ଆରମ୍ଭ କରିଦେଉଁ। ଅବଶ୍ୟ ଘୋଷବନ୍ତ ବଳବନ୍ତ ସେବେଳର ପଦ୍ଧତି ଥିଲା । ସନ୍ଧ୍ୟାରେ ବଖତେ ଆମେ ଶିକ୍ଷକମାନଙ୍କ ମେସରେ ବିନା ପଇସାରେ ଖାଉଁ। ବଡ଼ ଘରର ପିଲାମାନେ ଘରୁ ଚାଉଳ, ଡାଲି ଆଦି ଯୋଗାନ୍ତି ।

ଆଜିକାଲି ଶିକ୍ଷାୟତନର ପ୍ରାୟ ପ୍ରତ୍ୟେକ ସ୍ତରରେ ଟିଉସନ ଶିକ୍ଷାୟତନ ଏକ ବିକଳ୍ପ ସଂସ୍ଥା ଭାବରେ ଗଢ଼ିଉଠୁଥିବା ବେଳେ ସେବେଳରେ ଏସବୁ ଜଣା ନଥିଲା । ଇରମ, ଚାନ୍ଦବାଲି ଆଦି ଭଦ୍ରକ ସବଡିଭିଜନର ଦୂରଦୂରାନ୍ତ ସ୍ଥାନରୁ ଅଭିଭାବକମାନେ ସେମାନଙ୍କ ପିଲାଙ୍କୁ ନାରାୟଣ ଚନ୍ଦ୍ର ମିːଇː ସ୍କୁଲକୁ ପଠାନ୍ତି। ଉଲ୍ଲିଖିତ ଶିକ୍ଷକମାନେ ବିଶେଷ କରି ହେଡ଼ମାଷ୍ଟ୍ରେ ପୂଜନୀୟ ଉଦୟ ବାବୁ ଆଖପାଖ ଗାଁର କଳିତକରାଳ ମୀମାଂସା, ମନ୍ଦିର ନିର୍ମାଣ, ସ୍କୁଲ ପ୍ରତିଷ୍ଠା, ରାସ୍ତା ତିଆରି, ପୂଜାଅର୍ଚ୍ଚନା, ଜମିବାଡ଼ି ମାପ ଓ କାମ ଆଦି ସହିତ ସଂପୃକ୍ତ ରହୁଥାନ୍ତି । ଦେଶ ପରାଧୀନ ଥାଏ। ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇ ନଥାଏ। ସେତେବେଳେ ସୁଦ୍ଧା ଶିକ୍ଷାୟତନ ଓ ଶିକ୍ଷକ ସମାଜଅଭିମୁଖୀ କାର୍ଯ୍ୟରେ ପ୍ରତ୍ୟକ୍ଷ

ସଂଶ୍ଳିଷ୍ଟ ରଖିଥାନ୍ତି । ସେମାନଙ୍କ ନିରପେକ୍ଷ ବିଚାର ଗୃହୀତ ହେଉଥାଏ ଏବଂ ଲୋକଙ୍କର ଆସ୍ଥା ଥାଏ । ଆମ ଗାଁ ପାଖ ମଉଦା ଗାଁରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପୁରସ୍କାର ବିତରଣୀ ସଭା ହେଉଥାଏ । ପୂଜ୍ୟ ଉଦୟ୍ ବାବୁ ସଭାପତି ଥାନ୍ତି । ସକାଳବେଳା ସଭା ହେଉଥାଏ । "ଆଜି ଏଗାଁର ରଜ ଉତ୍ସବ ହେଉଛି" ବୋଲି ସଭାପତି କହିଲେ । ତାଙ୍କ ସ୍ପଷ୍ଟ, ମୃଦୁ ଓ ମିତ ଗାଉଁଲି ଭାଷା ସମସ୍ତଙ୍କୁ ପ୍ରଭାବିତ କରେ । ଉପରକୁ ସେ ବଜ୍ର ଗମ୍ଭୀର, ପଥର ପରି ଟାଣ, କିନ୍ତୁ ସେ ସ୍ନେହର ପ୍ରତିମା । ତାଙ୍କ ହସ୍ତାକ୍ଷର ଓ ଲେଖାଲେଖି ମୋ ଜୀବନର ମୋଡ଼ ବଦଳାଇ ଦେଇଛି । ଫୁଲଚାଂଗୁଡ଼ି, ଶ୍ୱେତଦୀପବୀଣା ଆଦି ବହି ସେ ରଚନା କରିଥିଲେ । ସେତେବେଳେ ରାଜନୀତି ପ୍ରତି ଭକ୍ତି ଥାଏ । ଏହା ସତ୍ତ୍ୱେ ଏହି ଲେଖାଲେଖିରେ ସେ ସମ୍ଭବତଃ ତାଙ୍କ ବାଲ୍ୟବନ୍ଧୁ ଓ ଗ୍ରାମବାସୀ ମହତାବ ବାବୁଙ୍କ ଦ୍ୱାରା ପ୍ରଭାବିତ ହୋଇଥିବାର ଅନୁମାନ କରାଯାଏ । ତାଙ୍କୁ ସେ 'ମହତ' ବୋଲି ଡାକନ୍ତି ଓ ଛାତ୍ରଙ୍କ ଉଚ୍ଚଶିକ୍ଷା କିମ୍ବା ଚାକିରୀରେ ତାଙ୍କ ସାହାଯ୍ୟ ଲୋଡ଼ିବାର ମୁଁ ଜାଣେ । ମାଇନର ସ୍କୁଲର କାନ୍ଥ ଚାରିଆଡ଼େ ଚମତ୍କାର ଅକ୍ଷରରେ ନୀତିବାଣୀ ଲେଖାଥାଏ । ଛାତ୍ରମାନଙ୍କ ଜୀବନ ଗଠନରେ ଏହା ସାହାଯ୍ୟ କରେ ଓ ଏହି ପରମ୍ପରା ସେ ସ୍କୁଲ ଓ ପ୍ରତିବେଶୀ ଶିକ୍ଷାୟତନରେ ଆଜି ବି ଅତୁଟ ରହିଛି ।

ସେକାଳର ଶିକ୍ଷକମାନଙ୍କୁ ଆମର ଭାରି ଭୟ । କିନ୍ତୁ ସେମାନେ କେବଳ ଶ୍ରେଣୀକୋଠରୀର ଓ ପାଠପଢ଼ା ବେଳର ଶିକ୍ଷକ ନଥିଲେ । ଆମ ଜୀବନକୁ ଜଗିଥିଲେ । ବିଭିନ୍ନ ସ୍ଥିତିରେ ସେ ସାହାଯ୍ୟ, ସମର୍ଥନ ଓ ମାର୍ଗଦର୍ଶନ ଦେଉଥିଲେ । ମୁଁ ଭଦ୍ରକ କଲେଜରେ ଅଧ୍ୟକ୍ଷକତା କରୁଥିବାବେଳେ ଏହା ମୋ ପାଇଁ ପରୀକ୍ଷାର ସମୟଥାଏ । ଭଦ୍ରକରେ ତଥା ସାଧାରଣତଃ ଆମ ରାଜ୍ୟରେ ଅନାଇ ରହିଥାନ୍ତି । ପୂଜ୍ୟ ଉଦୟବାବୁ ସେତେବେଳେ ଅବସର ନେଇ ନିଜ ବାସଗୃହ କୁଆଁସରେ ରହୁଥାନ୍ତି । ମୁଁ ତାଙ୍କ ଘରେ ଖାଇବି ବୋଲି ନିମନ୍ତ୍ରଣ କରିଥାନ୍ତି । ନିଜ ହାତରନ୍ଧା ଖାଦ୍ୟ ଯେତେ ଖୁଆଇଛନ୍ତି ତା'ଠାରୁ ଅଧିକ କଲେଜ ପରିସ୍ଥିତିର ବିଶ୍ଳେଷଣ କରି ମୋ ମନରେ ସାହସ ଦେଇଛନ୍ତି ।

ଏହି ଏକ ଭିନ୍ନ ସମୟର ଶିକ୍ଷକ ଶିକ୍ଷାର୍ଥୀ ସମ୍ପର୍କ । ଶିକ୍ଷା ଓ ଶିକ୍ଷାୟତନର ଭିନ୍ନ ସ୍ୱାଦର ଭୂମିକା । ଆଜି ଲକ୍ଷ୍ୟହୀନ ଓ ପଙ୍ଗୁତାକୁ ଦୂର କରିବା ପାଇଁ ଏହି ଅଭିଜ୍ଞତା କିଞ୍ଚିତ ସାହାଯ୍ୟ କରିପାରେ ।

□□□

*"ସ୍ମରଣିକା", ସୁବର୍ଣ୍ଣ ଜୟନ୍ତୀ (ନାରାୟଣ ଚନ୍ଦ୍ର ହାଇସ୍କୁଲ), ଭଦ୍ରକ, ମାର୍ଚ୍ଚ- ୧୯୯୩*

# ଶିକ୍ଷା-ସମସ୍ତଙ୍କ ଦାନା ଓ କନା

୧୯୪୩ ମସିହାରେ ଗାନ୍ଧିଜୀ ଶିକ୍ଷାର ସ୍ୱରୂପ ଏପରି ସ୍ଥିର କରିଯାଇଛନ୍ତି। ତାହା ଗରିବଙ୍କର ଦାନା ଓ କନା। ଭୋକ ମରିବ ଓ ଲଙ୍ଗଳା ହୋଇ କେହି ରହିବେ ନାହିଁ। ଦାନା ଓ କନା ସଭିଙ୍କୁ ମିଳିବ। ଶିକ୍ଷା ଦେବ ଗରିବଙ୍କୁ ଅନ୍ନବସ୍ତ୍ର। ତେବେ ଜୀବନ ସହିତ ଶିକ୍ଷା ଜଡ଼ିତ ହେବ। ଶିକ୍ଷା ଓ ଜୀବନ ଏକ ଓ ଅଭିନ୍ନ ହେବ।

ଏକଥା ସତ୍ୟ ଯେ ଆମ ଗାଁଗଣ୍ଡାରେ ଅନେକ ଲୋକ ବାସ କରନ୍ତି। ସମଗ୍ର ଜନସଂଖ୍ୟାର ଶତକଡ଼ା ୮୦ ଭାଗରୁ ଅଧିକ ଲୋକ ଗାଁରେ ରହନ୍ତି। ସେମାନଙ୍କ ମଧ୍ୟରୁ ଅଧିକାଂଶ ବଡ଼ ହିନସ୍ତାରେ ଚଳନ୍ତି। ଅନେକଙ୍କ ଘରେ ଦୁଇଓଳି ଚୁଲ୍ଲି ଜଳେ ନାହିଁ। କେତେକଙ୍କର ଘର ବି ନ ଥାଏ। ଗଛ ମୂଳରେ ଓ ଡିପ ଥାନରେ ସେମାନେ କାଳ କାଟନ୍ତି। କେତେକଙ୍କର ବକଟେ ବକଟେ ଘର, ଖଣ୍ଡିଏ ଖଣ୍ଡିଏ ପଲା ପରି। ଫାଳେ ଛପର ତ ଫାଳେ ମୁକୁଳା। ଜାମାପଟା ଛାଡ଼ନ୍ତୁ, ଲାଜ ଲୁଚାଇବାକୁ ସାମାନ୍ୟ ଖଣ୍ଡେ କପଡ଼ା ଅନେକଙ୍କର ନ ଥାଏ। ପେଟପୂରା ମୁଠେ ଖାଇବାକୁ ମିଳେ ନାହିଁ। ଅଧା ପେଟ ବା ଖାଲି ପେଟରେ ଉପାସର ଅଭିଶାପ ସହିବାକୁ ପଡ଼େ। ବର୍ଷର ସବୁଦିନ କାମ ମିଳେ ନାହିଁ। ବେମାରରେ ସେମାନେ କଲବଲ ହେଉଥାନ୍ତି। ସେମାନଙ୍କ ଅଭାବ, ଅସୁବିଧା କଥା କହିଲେ ନ ସରେ। ସବୁ ଦିଗରୁ ସେମାନଙ୍କର ସର୍ବବିଧ ଉନ୍ନତି କରାଯିବ। ସେଥିପାଇଁ ଭାଳେଣି ପଡ଼ିଛି। ଦୁରି ପଡ଼ିଛି। ଯୋଜନା ହେଉଛି।

ଏହାହିଁ ହେଉଛି ସମୂହ ପଲ୍ଲୀ ବିକାଶ ଯୋଜନା। ଲୋକମାନେ ସୁଖରେ ରହିବେ। ଶାନ୍ତିରେ ବସବାସ କରିବେ। ପିଠିକୁ କନା ଓ ପେଟକୁ ଦାନା ମିଳିବ। ମୁଣ୍ଡ ଗୁଞ୍ଜିବାକୁ ଥାନ ରହିବ। ନିରାଶ୍ରୟ ହୋଇ କାହା ପାଖରେ ହାତ ପତାଇବାକୁ ପଡ଼ିବ ନାହିଁ। ଗାଁରେ କାମଧନ୍ଦା ମିଳିବ। ଲୋକଙ୍କ ଶକ୍ତିକୁ ଚାହିଁ କାମଧନ୍ଦା ହେବ। ପ୍ରାକୃତିକ ସମ୍ବଳକୁ ଦେଖି ନୂଆ ନୂଆ କାମ ହେବ। ବିଭିନ୍ନ ଋତୁ ଅନୁସାରେ କାମଧନ୍ଦା ଅଲଗା ଅଲଗା ହେବ। କାମିକା ଲୋକମାନେ ନିକିମା ହୋଇ ବସିବେ ନାହିଁ। ବିଲବାଡ଼ି, ଖେତଖଳା ଓ କାମଧନ୍ଦାରେ ଉତ୍ପାଦନ ବଢ଼ିବ। ଲୋକମାନେ ଅଧିକ ରୋଜଗାର କରିବେ। କେବଳ ସେତିକି ନୁହେଁ, ଉତ୍ପାଦନର ବିନିଯୋଗ ଭଲ ହେବ। ସେମାନେ ସୁଷମ ଖାଦ୍ୟ ଖାଇ ସୁସ୍ଥ ସବଳ ହେବେ। ଉତ୍ପାଦନରୁ ଯାହା ବଳିବ ବିକ୍ରୟ କରାଯାଇ ଲୋକମାନଙ୍କର ଅନ୍ୟାନ୍ୟ ଅଭାବ ମେଣ୍ଟାଇବାର ବ୍ୟବସ୍ଥା ରହିବ। ଶୋଷଣ ରହିବ ନାହିଁ। ସମସ୍ତେ ପରସ୍ପରକୁ ସାହାଯ୍ୟ କରି ସହଯୋଗୀ ଜୀବନ ଯାପନ କରିବେ। ଗାଁର ବିକାଶ କାର୍ଯ୍ୟକ୍ରମରେ ଗ୍ରାମବାସୀ

ସହଯୋଗ କରିବେ। ଗଠନମୂଳକ ରୀତିରେ ଗାଁ ପରିସ୍ଥିତିର ପରିବର୍ତ୍ତନ ଗାଁଲୋକେ କରିବେ। ସେମାନେ ପରିପୂର୍ଣ୍ଣ ଜୀବନ ଯାପନ କରିବେ। ସେମାନଙ୍କର ସମଗ୍ର ଦୃଷ୍ଟିକୋଣ ଓ ଜୀବନଧାରା ବଦଳିଯିବ। ଗାଁକୁ ଗାଁ ରାସ୍ତାଘାଟ ପଡ଼ିଯିବ। ଗୋ ସମ୍ପଦ ଉନ୍ନତ ହେବ। ଆତ୍ମବଳ ପ୍ରକାଶ ପାଇବ। ଏପରି ଭାବରେ, ଏଇ ହେଲା ସମୂହ ପଲ୍ଲୀବିକାଶ ଯୋଜନା। ପ୍ରୌଢ଼ଶିକ୍ଷା ହିଁ ଏହାର ମାଧ୍ୟମ ହେବ। ସଙ୍ଗେ ସଙ୍ଗେ ଏହାର ଅଙ୍ଗୀଭୂତ ହୋଇ ରହିବ। ମୁକ୍ତି ଓ ପ୍ରଗତିର ବାର୍ତ୍ତାବହ ରୂପେ ପ୍ରୌଢ଼ଶିକ୍ଷାର ସ୍ୱରୂପ ନିର୍ଣ୍ଣୟ କରାଯିବ।

ଏପରି କଲେ ଏହି ସମଗ୍ର ବିକାଶ କାର୍ଯ୍ୟକ୍ରମରେ ଲୋକମାନେ ଝାସ ଦେବେ। ଏଠି ମନଯୋଗ ଓ ମୋଟିଭେସନ ମନକୁ ମନ ସ୍ୱାଭାବିକ ରୀତିରେ ଆସିଯିବ। ଫଳରେ ପ୍ରୌଢ଼ଶିକ୍ଷା ସାର୍ଥକ ହେବ। ତେବେ ପ୍ରୌଢ଼ଶିକ୍ଷାକୁ ଏକ ଧରାବନ୍ଧା ଗତରେ ପକାଇବା ଉଚିତ ନୁହେଁ। ଏହା ଏକ ମାମୁଲି ପାଠପଢ଼ା କାମ ନୁହେଁ। ଲୋକମାନଙ୍କ ଦାନାକନା ଅଭାବର ଦୂରୀକରଣ ପାଇଁ ଖିଅ ବାହାରି ପଡ଼ିବ। ଲୋକମାନେ ନିଜ ଚିନ୍ତା ନିଜ ଢଙ୍ଗରେ କରିବେ। ନିଜ ଗୋଡ଼ରେ ଠିଆ ହେବେ। ବସ୍ତୁତଃ ଆମ ଗାଁର ବ୍ୟକ୍ତି ଓ ସମାଜର ପରିବର୍ତ୍ତନ ହୋଇପାରିବ।

ଗୋଟିଏ ଗାଁରେ ଜଣେ ବାବୁ ଅନେକ ପାଠ ପଢ଼ିଥାନ୍ତି। ବାବୁ ବୋଲି ତାଙ୍କ ନାଆଁ ଡାକ। ସେ ତାଙ୍କ ଦୁଆର କାନ୍ଥରେ ନିଜ ନାମ ଲେଖି ଦେଇଥାନ୍ତି। ପାଠପଢ଼ାର ସବୁ ସାର୍ଟିଫିକେଟ୍‌କୁ ନାଁ ପାଖରେ ଝୁଲାଇ ଦେଇଥାନ୍ତି। ଗାଁଲୋକେ ଏହାକୁ ଦେଖନ୍ତି ଓ ଆବାକାବା ହୁଅନ୍ତି। ପୁଅର ପାଠପଢ଼ା ପାଇଁ ବାବୁଙ୍କ ବାପା ଜମିବାଡ଼ି ବିକିଛନ୍ତି। ସେ ଆଜି ଗରିବ। ପିଣ୍ଡାରୁ ଗୋଡ଼ ତଳକୁ ପଡୁନାହିଁ। କୁଟାଖଣ୍ଡିକ ଦି'ଖଣ୍ଡ ହେଉନାହିଁ। ମୁଣ୍ଡରେ ପାଠସିନା ପଶିଛି, କିନ୍ତୁ ପେଟକୁ ଦାନା ନାହିଁ। ବାବୁ ମଧ୍ୟ ଗରିବ। ସେ ଭୋକ ଉପାସରେ ଶୋଇଛନ୍ତି। ଦାରିଦ୍ର୍ୟ ଛିଡ଼ି ନାହିଁ ବରଂ ବଢ଼ିଛି। ସାକ୍ଷରତା ବନାମ ପ୍ରମାଣପତ୍ର ସର୍ବସ୍ୱ ପ୍ରୌଢ଼ଶିକ୍ଷା ବିଫଳ ହୋଇଯିବ। ଏହା ଗାଁ ଲୋକଙ୍କ ପାଇଁ ଅନାବଶ୍ୟକ।

ଆମର ଧୋଇଆ ଗାଁ ଅଛି। ମରୁଡ଼ି ଅଞ୍ଚଳରେ, ବଣଜଙ୍ଗଲରେ ଗାଁ ବି ଅଛି। ଏପରି ଗାଁ ଅଛି ଯୋଉଠି ମାଟି ବରାବର ଧୋଇଯାଉଛି। ସେଥିରେ କୁଶ ଜଅଁନ୍ତୁ ନାହିଁ। ଏହିପରି ପ୍ରକାର ପ୍ରକାରର ଗାଁ। ପ୍ରତି ଗାଁର ଅଭାବ ମେଣ୍ଟିବ କିପରି ? ବିକାଶର କାର୍ଯ୍ୟକ୍ରମ ଗାଁକୁ ଆଖିରେ ରଖି ଅଲଗା ଅଲଗା ହେବ। ମରୁଡ଼ି ଅଞ୍ଚଳରେ ଗାଁରେ ନିପାଣିଆ ଫସଲ କରାଯିବ। ଧୋଇଆ ଗାଁର ପାଣିଲଡୁଆ ଧାନ ହେବ। ମୃତ୍ତିକାକ୍ଷୟକୁ ବନ୍ଦ କରିବା ସେ ଗାଁରେ ପ୍ରଥମ କାମ ହେବ। ଏସବୁ କୌଶଳ, ଜ୍ଞାନ ଓ ବିଜ୍ଞାନ ଗାଁ ଲୋକେ ଜାଣିବେ। ହିତ୍‌ମୁଣ୍ଡରେ ବହି ରହିବ। ଛବିର ବହି, ମୋଟା

କାଗଜରେ ମୋଟା ମଲାଟ। କିପରି ପୋକମରା ଔଷଧ ପକାଯିବ, ଛବି ଦେଖି ଦେଖି ଗାଁ ଲୋକେ କରିଯିବେ। ହାତରେ ହରହୁନ୍ଦର କାମ କରିହେବ। ଗାଁର କାମଧନ୍ଦା ଯେମିତି ପୁରୁଣା ଢଙ୍ଗରେ ଚାଲିଛି। ମାଟିକାମ, ଲୁହାକାମ, ଲୁଗାବୁଣା ଆଦି ଧନ୍ଦା ଯେମିତି ରହିଛି। ନୂଆ ନୂଆ ଢଙ୍ଗ ବାହାର କରିହେବ। ଆମ ମହାରଣା ଭାଇର ମନ, ସେ ବଡ଼ କାରିଗର ହେବ। ସେ ଲାଗିପଡ଼ିଛନ୍ତି। ବହିର ଛବି ଆଣି ସେ କେତେପ୍ରକାରର ନୂଆ ନୂଆ ବଟାଳି, ନିହଣ, ରନ୍ଦାରେ ବଢ଼ିଆ କାମ କରୁଛନ୍ତି। ସଭିଙ୍କ ଦରକାର ଓ ଆଦର ସେଥିପ୍ରତି। ଚାଷୀ ମୋଟା କାଠ ଲଙ୍ଗଳ ଧରି ଚାଷ କରୁଥିଲେ। ଗହୀର ଚାଷ କଲାବେଳକୁ ଭାରି କଷ୍ଟ ଥିଲା। ବଳଦ ଥକି ପଡ଼ନ୍ତି। ଚାଷୀ ହାଲିଆ ହୋଇଯାଆନ୍ତି। ଏବେ ଲୁହା ଲଙ୍ଗଳ ହୋଇଛି। ହଳିଆ ଓ ବଳଦ ଥକୁନାହାନ୍ତି। ମହାରଣା ଭାଇ ଲୁହା ଲଙ୍ଗଳ ଲଗାଇ ତିଆରି କରିଥିବା ଲୁହା ଲଙ୍ଗଳ ସବୁ ଚାଷୀଙ୍କ ହାତରେ। ଠେଙ୍ଗ ଜମିରେ ବି ଗହୀର ଚାଷ। ଗାଁ ହସୁଛି। ଅଭାବ ହଟିଯିବ। ଗାଁକୁ ଗାଁ ଦାନାକନାରେ ପୂରିଯିବ। ସେ ପାଠପଢ଼ା ବାବୁ ଭୋକ ଉପାସରେ ମନ ମାରିଥିଲେ। କିନ୍ତୁ ମହାରଣା ଭାଇ ଉତ୍ସାହୀ ଯେ ସେ ବଡ଼ କାରିଗର ହେବେ। ତାଙ୍କର ନିଦ ନାହିଁ। ଅଳସୁଆମି ନାହିଁ। ସେ ଯାହା ଶିଖିଛନ୍ତି, କାମରେ ଲଗାଇ ପାରୁଛନ୍ତି। ପିଲା କୁଟୁମ୍ବ ପୋଷିପାରୁଛନ୍ତି। ଦାନାକନାର ସମସ୍ୟାର ସମାଧାନ ହୋଇଛି।

ବହିଘୋଷା ନୁହେଁ, ଗରିବର ଦାନାକନା, ଏହି ଦୃଷ୍ଟିରୁ ଶିକ୍ଷାକୁ ଗ୍ରହଣ କରି କାର୍ଯ୍ୟକାରୀ କରାଗଲେ ଗାଁ ଗହଳରେ ନିରକ୍ଷର ଲୋକ ସାକ୍ଷର ହେବେ। ଟିପଚିହ୍ନ ଦେବାର ପ୍ରଥା ରହିବ ନାହିଁ। ଲୋକେ ନିଜ ଦସ୍ତଖତ ନିଜେ କରିବେ। ଶାସ୍ତ୍ରପୁରାଣ ଶୁଣିବା ପାଇଁ ଅନ୍ୟ ଜଣକ ଉପରେ ନିର୍ଭର କରିବେ ନାହିଁ। ସୁବିଧାଅନୁସାରେ ସେସବୁ ନିଜେ ପଢ଼ି ହେଜି ପାରିବେ। ସେମାନଙ୍କର ଜ୍ଞାନଗ୍ରହଣ ନିରନ୍ତର ଚାଲିବ। ସେଥିପାଇଁ ଗାଁ ଗହଳରେ ଅଧିକରୁ ଅଧିକ ପୁସ୍ତକାଗାର ପ୍ରତିଷ୍ଠା କରିବା ଉଚିତ୍। ରେଡ଼ିଓ, ଟେଲିଭିଜନ, ସମ୍ବାଦପତ୍ର ପ୍ରଭୃତି ଗଣମାଧ୍ୟମକୁ ଏହି ନିରନ୍ତର ଶିକ୍ଷା କାର୍ଯ୍ୟକ୍ରମରେ ବ୍ୟବହାର କରିବା ଦରକାର। ଦାନାକନାର ପ୍ରଶ୍ନ ଦିନିକିଆ ନୁହେଁ। ଏହା ଜୀବନଯାକ ଚାଲେ। ଦାନାକନା ଯୋଗାଡ଼ କରିବାର ପ୍ରଣାଳୀ ଜାଣିଲେ ଅଭାବ ମେଣ୍ଟିବ।

ବାସ୍ତବ ସମସ୍ୟା ହେଉଛି ଯେ ଦାନାକନାର ଆବଶ୍ୟକତାକୁ ଶିକ୍ଷାକ୍ରମ ଭାବରେ ରୂପ ଦେବାକୁ ପଡ଼ିବ। ଅର୍ଥନୈତିକ ସମସ୍ୟା ଶିକ୍ଷାକ୍ରମରେ ପ୍ରତିଫଳିତ ହେବ। ଏହା ସଫଳ ଭାବରେ ହୋଇ ପାରୁ ନ ଥିବାରୁ ଆଜି ଶିକ୍ଷାର ଜୀବନ ଓ ବାସ୍ତବ ଜୀବନ ମଧ୍ୟରେ ବିରାଟ ବ୍ୟବଧାନ ରହୁଛି। ଉଭୟ ପ୍ରାଣହୀନ

ହୋଇଯାଉଛି । ଉଭୟ ଏକ ସଙ୍ଗରେ ନ ଚାଲି ଶିକ୍ଷା ସମାପନ ପରେ ଜୀବନ ଆରମ୍ଭ ହେଉଛି ଓ ଜୀବନରେ ଶିକ୍ଷାର ଆବଶ୍ୟକତା ଅନୁଭୂତ ହେଉ ନାହିଁ । ଏହି ବିଷମ ପରିସ୍ଥିତିକୁ ସୁଧାରିବା ପାଇଁ ଗାନ୍ଧୀଜୀ ଜୀବନ ପାଇଁ, ଜୀବନ ମାଧ୍ୟମରେ ଜୀବନବ୍ୟାପୀ ଶିକ୍ଷାର ଯୋଜନା କରିଥିଲେ ।

□□□

*ଚେତନା, ଫେବୃଆରୀ, ୧୯୮୦*

# ଚେତନାର ଝାଲେଣି

ଆମେ ସବୁ ବସିଥାଉ, ଛାତ୍ରାବାସ ପିଣ୍ଡାରେ । ମଝିରେ ଖାଇବା ଘର । ସେଠି ବି ସଭା, ସମିତି ହୁଏ । ଏହାର ପଶ୍ଚିମକୁ କନ୍ୟାଶ୍ରମ ଓ ପୂର୍ବକୁ ପୁଅମାନଙ୍କ ରହିବା ଘର । ସେଇ ପିଣ୍ଡାରେ ଗୁରୁଜୀମାନେ ବି ଥାନ୍ତି । କଥା ପଡ଼ିଛି, ବିଜ୍ଞାନ ପଢ଼ାଇବ କିଏ ? ୱାର୍ଦ୍ଧା ହିନ୍ଦୁସ୍ଥାନୀ ତାଲିମ୍ ସଂଘର ସିଲାବସ୍ ବେଶିକ୍ ସ୍କୁଲରେ ଚାଲୁଥାଏ । ପ୍ରଥମ ସୋପାନରୁ ଅଷ୍ଟମ ସୋପାନ । ପ୍ରବେଶିକ ସ୍କୁଲ ବି ଥାଏ । ସାଧାରଣ ବିଜ୍ଞାନ ଓ ସମାଜ ବିଜ୍ଞାନର ପାଠ ହାଇସ୍କୁଲ ସରି ହେବ । ସେବେଳର ନକର ଥିଲା ଯେ ଅଷ୍ଟମ ସୋପାନ ସରିଲେ ପାଠ ହାଇସ୍କୁଲ ପାଠ ସଙ୍ଗେ ସମାନ ହେବ, ଇଂରାଜୀକୁ ବାଦ୍ ଦିଆଯିବ ଓ ଗୋଟିଏ ଧନ୍ଦା ରହିବ । ତେଣୁ ସେବେଳର ବିଜ୍ଞାନର ପାଠ ମାମୁଲି ନଥାଏ । ହାଲୁକା ବି ନୁହେଁ । ପ୍ରଥମ ସୋପାନରୁ ବିଜ୍ଞାନକୁ କାମଧନ୍ଦା କରି ପଢ଼ାଯାଉଥାଏ । ପାଠର ମାନ ଯେପରି ବେଶି, ପଢ଼ାଇବାର ଢଙ୍ଗ ସେପରି ନୂଆ । ଏପରି ବିଜ୍ଞାନ ଶିକ୍ଷକ କାହାନ୍ତି ? କାହାରି କାହାରି ତୁଣ୍ଡରୁ ପ୍ରସ୍ତାବ ହେଲା, ବିଜ୍ଞାପନ ଦିଆଯାଉ । ସେତେବେଳେ ବିଜ୍ଞାନ ଶିକ୍ଷକଙ୍କର ଘୋର ଅଭାବ । ପୁଣି ଅନୁଗୁଳକୁ ଆସିବ କିଏ ? ଖଦଡ଼ ପିନ୍ଧି, ସୂତାକାଟି, ଲୁଗାବୁଣି, ପାଇଖାନା ସଫାକରି, ପିଲାଙ୍କ ସଙ୍ଗେ ପ୍ରାର୍ଥନା କରି, ସମୂହ ଭୋଜନରେ ବସି-କିଏ ଏକାମ ମୁଣ୍ଡାଇବ ? ଚବିଶ୍ ଘଣ୍ଟିଆ ଗୁରୁଜୀ କିଏ ହେବ ? ବିଜ୍ଞାପନ ଦେବାର ପ୍ରସ୍ତାବ କାଟ ଖାଇଗଲା । କିନ୍ତୁ ଅସଲ ପ୍ରଶ୍ନର ସମାଧାନ ରହିଗଲା, ବିଜ୍ଞାନ ପଢ଼ାଇବ କିଏ ? ସବୁ ଚୁପ୍‌ଚାପ୍ । ଯେ ଏ ଯାଏଁ ନୀରବ ଥିଲେ ଓ ନୀରବତାକୁ ଉପଭୋଗ ଉପଭୋଗ କରୁଥିଲେ, ସେ କହି ପକାଇଲେ, ପଢ଼ି ଦେଲେ ହୁଅନ୍ତା ନାହିଁକି ?

କେତେ ଜଣ ଗୁରୁଜୀ ଅଣ୍ଟ ଭିଡ଼ିଲେ। ବହି କିଣା ଗଲା। ଆଲୋଚନା ଚାଲିଲା। ପରାମର୍ଶ ନିଆଗଲା। ବିଜ୍ଞାନ ଉପକରଣ କିଣାଗଲା। ସେଇ ମାଟି, ପାଣି, ପବନରେ ଭଲ ଗୁରୁଜୀ ଉତୁରିଲେ। ପାଠ ଓ ପ୍ରଣାଳୀ ତେଜି ଉଠିଲା।

ଏ ବେଢ଼ଙ୍ଗିଆ ପ୍ରସ୍ତାବ କାହାର ? ବାଜୀ ପରିବାରର ବାପିଙ୍କର। ସେ ନବକୃଷ୍ଣ ଚୌଧୁରୀ। ଏଇ ଏବେ ସଂସାର୍ ଛାଡ଼ିଛନ୍ତି। ସମାଜର ଗଡ଼ାଣି ସୁଅକୁ ଉଜାଣି କରି ଦେଖିଛନ୍ତି। ସମାଜର ପୁରୁଣା ଗଣ୍ଠି ଓ ଗୋଦରା ଚେରକୁ କାଟି ପକାଇଲେ ସିନା ନୂଆ ଚେର ହେବ। ଥୁଣ୍ଟ ଗଛରେ ଡାଆଣୀ ଚିରୁଗୁଣୀ ବି ବସନ୍ତି ନାହିଁ। କଅଁଳ ଗଛ ପ୍ରତି ସମସ୍ତଙ୍କ ଆକର୍ଷଣ। ଏମିତିକା ହେବ ସମାଜ ଓ ସେଥିରେ ମଣିଷ। ପାଠୁଆ ଲୋକ ପଢ଼ା ଛାଡ଼ି ଦେଲେଣି। ପାଠର ହାଟରେ ସେମାନେ ବଡ଼ ବଡ଼ ପେଟୁଆ ମହାଜନ। ଆମେ ବି ପଢ଼େଇବା ଲୋକ ପାଠର ଛାଟ ଧରିଛୁ। ପାଠଘରର ଚାଟ ନୋହୁଁ। ଛାଟ ପିଟି ପାଠକୁ ସାବାଡ଼ କରି ଦେଉଛି। ପାଠ ଯେ ବଢ଼ିଛି, ଆମର ମୋଟେ ନଜର ନାହିଁ। ପାଠର ସ୍ପୃହା ମରି ମରି ଯାଉଛି। କଢ଼ଗୁଡ଼ାକ ମଉଳି ଯାଉଛି। ଆମେ ସମସ୍ତେ ଧରି ନେଇଛୁ, କାଦୁଅରେ ପଶିବା ନାହିଁ, କି ଗୋଡ଼ ଧୋଇବା ନାହିଁ। ଏହା ଫଳରେ ସରି ଯାଉଛି ମଣିଷ ଓ ତା଼ର ସମାଜ। ଥରେ ନବବାବୁ ମୌଳିକ ସ୍କୁଲ ଦେଖିଥିଲେ। ଏହା ସମ୍ଭବତଃ ଅନୁଗୋଳ ସଘନ ଅଞ୍ଚଳର ବେଶିକ୍ ସ୍କୁଲ ହେବ। ସେତେବେଳେ ସେ ଥାନ୍ତି ମୌଳିକ ଶିକ୍ଷାର ସଙ୍ଗଠକ। ମୁଖ୍ୟମନ୍ତ୍ରୀ ହେବାର ଅଳ୍ପକେତେ ଦିନ ପୂର୍ବରୁ। ପ୍ରିବେଶିକ୍ ସ୍କୁଲରେ ନିସ୍ଥୁକ ପ୍ରହାରର ଜବର କାରବାର ଚାଲିଥାଏ। ଛୋଟ ଛୋଟ ପିଲେ କାକୁସ୍ଥତର ହୋଇ କରପତ୍ର ଯୋଡ଼ି ବହି ଘୋଷୁଥାନ୍ତି। ସଂଗଠକଙ୍କ ଦେହ କି ସହେ ? ସେ ଜଳିପୋଡ଼ି ଯାଇଛନ୍ତି। ପଦଟିଏ ତାଙ୍କ ମନ୍ତବ୍ୟ, "ଏସବୁ ନିକମା।"

ଆଉ ଗୋଟିଏ ଘଟଣା। ବିନୋବାଙ୍କ ପଦଯାତ୍ରା ଚାଲିଥାଏ। କୋରାପୁଟର ଜିଲ୍ଲାଦାନ ହେବ। ଭୂଦାନ, ଗ୍ରାମଦାନ, ଜିଲ୍ଲାଦାନ ଆଦି କ୍ରମାନ୍ୱୟରେ ବଢ଼ି ବଢ଼ି ଚାଲିବ। ଏହା ସଙ୍ଗରେ ଜ୍ଞାନଦାନ, ସ୍ନେହଦାନ, ସମ୍ପତ୍ତିଦାନ ପ୍ରଭୃତି ଅଭିଯାନ ଚାଲିଥାଏ। ଏହି ପରିପ୍ରେକ୍ଷୀରେ ପଦଯାତ୍ରାର ଶିକ୍ଷା, ନୈତିକତା, ବିଚାରର ଆଦାନପ୍ରଦାନ, ମାନସିକ ବିକାଶ, ଅର୍ଥନୈତିକ ଅଭିବୃଦ୍ଧି ପ୍ରଭୃତିର ସଙ୍କେତ ଥାଏ। ପଦଯାତ୍ରାର ଆରମ୍ଭ ହୁଏ ପାହାନ୍ତାରେ ଓ ସୂର୍ଯ୍ୟୋଦୟ ବେଳେ ସାମୟିକ ବିଶ୍ରାମ ଓ ସ୍ୱାଧ୍ୟାୟ କରାଯାଏ। ଯାତ୍ରୀମାନେ ନିଜ ନିଜର ଆବଶ୍ୟକ ସାମଗ୍ରୀ ଛଡ଼ା ଚଟେଇ ଖଣ୍ଡେ ଓ ଜଗନ୍ନାଥ ଦାସଙ୍କ ଏକାଦଶସ୍କନ୍ଦ ସଂଗରେ ନେଇଥାନ୍ତି। ଭାଗବତର ସ୍ୱାଧ୍ୟାୟ କରାଯାଏ। ସେ ବେଳର ମୁଖ୍ୟମନ୍ତ୍ରୀ ଯୋଗ ଦିଅନ୍ତି। ଆନନ୍ଦର ସୀମା ନାହିଁ। ମଉଜ ଓ ମଜା। ଦେଖିବା, ଚାଲିବା ଓ ବୁଲିବା। ଏକ

ହାଲୁକା ମନରେ ଆଗେଇ ଆସନ୍ତି ନବବାବୁ । ନିଜ ଭିତରର ସୁଅ ସ୍ୱଚ୍ଛନ୍ଦରେ ପ୍ରକାଶ ପାଉଥାଏ । କେତେ କଉତୁକିଆ ପ୍ରଶ୍ନ, ଆଗ୍ରହର ଡାଳ ମେଲି ଯାଉଥାଏ ।

ଏ ଯାଏ ଭୁଲିବାର ନୁହେଁ । କୋଠାରୀ କମିଶନ ତାଙ୍କ ରିପୋର୍ଟ୍ ଭାରତ ସରକାରଙ୍କୁ ଦିଅନ୍ତି, ଜୁନ୍ ୨୯ ତାରିଖ ୧୯୬୬ ମସିହାରେ ଜୁଲାଇ ମାସ ଶେଷ ବେଳକୁ । ବାଟରେ ମୋତେ ପଚାରୁଛନ୍ତି, ରିପୋର୍ଟ ପଢ଼ିଛନ୍ତି କି ? ଏକା ଶିକ୍ଷାରେ କାହିଁକି ଅର୍ଥନୀତି, ସମାଜତତ୍ତ୍ୱ, ବିଜ୍ଞାନ, ରାଜନୀତି ଆଦି ସବୁ ବିଷୟରେ ଆଗ୍ରହ ମାମୁଲି ବିଚାରରେ ଅଟକି ଯାଇନାହିଁ । ଧରାବନ୍ଧା କଥାରେ ଆଖିମିଟିକା ନମାରି ତଳୁ ଦେଖିଛନ୍ତି ଓ ହସି ହସି ତାଳି ମାରିଛନ୍ତି । ଅନୁଗୁଳ ଚନ୍ଦ୍ରବାହାଳ ମୌଳିକ ସ୍କୁଲରେ ବିନୋବା ଜୟନ୍ତୀ ପାଳନ କରା ଯାଉଥାଏ । ସେ ସଘନ ଅଞ୍ଚଳର ସବୁ ଗୁରୁଜୀ, ଗାଁବାଲା ଭାଇଭଉଣୀ ଆସିଛନ୍ତି । ଶୋଭାଯାତ୍ରା ଗାଁକୁ ଗାଁ ଚାଲିଛି । ଧ୍ୱନି ଦିଆଯାଉଛି । ହାତରେ ଅଙ୍କା ବିନୋବାଙ୍କ ଚିତ୍ର ପିଲେ ଧରିଛନ୍ତି । ଶୋଭାଯାତ୍ରାର ପଛରେ ରହି ପିଲାଙ୍କୁ ପଚାରିଛନ୍ତି, ଏ ଚିତ୍ର କାହାର ? ଉତ୍ତର ଆସିଛି, ଗାନ୍ଧୀଙ୍କର । ମୌଳିକ ସ୍କୁଲରେ ନିତିଦିନିଆ ଚିହ୍ନା ଗାନ୍ଧୀ । କିନ୍ତୁ ବିନୋବା ଜୟନ୍ତୀ କାହିଁକି ? ଚିତ୍ରରୁ ପିଲେ ବିନୋବାଙ୍କୁ ଚିହ୍ନନ୍ତୁ । ନଈତାଲିମ୍ ପୁରୁଣା ତାଲିମ୍‌ଠାରୁ ଭିନ୍ନ । ସେତିକି ନୁହେଁ, ଏହା ନିତ୍ୟ ନୂତନ ନଈତାଲିମ୍ । ସବୁବେଳେ ଏହି ଶିକ୍ଷାର ରୂପ ନୂଆ ନୂଆ ପ୍ରକାରର । ସେଠି ମାନ୍ଧାତିଆ କଥା ଚଳେ ନାହିଁ । ବିନୋବା ଗାନ୍ଧୀ ହେବେ କିପରି ? ଏକଥା ବାପିଙ୍କ ମନକୁ ପାଇଥିଲା । ନୂଆକୁ ଜାଣିବା ପାଇଁ ସେ ଅଜଣା ଭିତରକୁ ଡେଇଁ ପଡ଼ନ୍ତି । ଚଟ୍‌କରି ଫଟାଫଟ୍ କଥା କହି ଦିଅନ୍ତି । ଭିତରର ସାହସ, ବଳ ଓ ନିର୍ଭୀକତା, ଏଇ ଶିକ୍ଷା ଗାନ୍ଧୀ ଓ ଗୁରୁଦେବଙ୍କର । ଖାଲି ଶିକ୍ଷା ବି ନୁହେଁ, ଏଇ ଦୀକ୍ଷା ମଧ୍ୟ ।

ଶୁଣାଯାଏ, ସକ୍ରେଟିସ୍ ମଣିଷଙ୍କୁ ଖୋଜି ଖୋଜି ବୁଲିଥିଲେ । ହାତରେ ଲଣ୍ଠନ ବତୀଥିଲା । ସମସ୍ତଙ୍କ ମୁହଁକୁ ଆଲୁଅ ପକାଉଥିଲେ । ବ୍ୟକ୍ତିର ସ୍ୱାତନ୍ତ୍ର୍ୟକୁ ଚିହ୍ନୁଥିଲେ । ଆଚାର୍ଯ୍ୟ ହରିହର ବି ଗାଁଗଣ୍ଡାରେ ବୁଲିଛନ୍ତି । ଘରକୁ ଘର ଯାଇଛନ୍ତି । ଭଲ ମଣିଷ ହେବାକୁ କହିଛନ୍ତି । ଭଲ ମଣିଷକୁ ଚିହ୍ନିଛନ୍ତି । ଏପରି ଖୋଜା ଚାଲିଛି ସର୍ବତ୍ର ଓ ସବୁ ଯୁଗରେ । ବାପି ବି ଖୋଜିଛନ୍ତି ଜୀବନଟାଯାକ । ଥକି ନାହାନ୍ତି, ବେଳେବେଳେ ନିରାଶ ହୋଇଛନ୍ତି । କାହାକୁ ଖୋଜିଛନ୍ତି ? ଯାହାଙ୍କ ପାଟିରୁ କଥା ବାହାରୁ ନାହିଁ, ପେଟର ବ୍ୟଥା ତଳି ପେଟକୁ କଣା କରି ଦେଲାଣି । ସେଇ ତଳିଆ ଓ ତଳିତଳାନ୍ତ ମଣିଷଙ୍କୁ । ସେମାନଙ୍କ ପାଇଁ ପଦପଦବୀ ହସି ହସି ହାତରୁ ଫିଙ୍ଗି ଦେଇଛନ୍ତି । ଭେକ ଓ ଭିକ୍ଷା ସେମାନଙ୍କ ଭଳି । ମୌଳିକ ଶିକ୍ଷା ସଙ୍ଗଠକ ଭାବରେ ରାଜସୁନାଖଳା ମୌଳିକ ତାଲିମ୍ ଭବନକୁ ଯାଇଛନ୍ତି । ଦିନେ ମନ୍ତ୍ରୀ ଥିଲେ । ଆଜି

ସେ ସଙ୍ଗଠକ ଓ ତାଙ୍କୁ ଦେଖିବାକୁ ଗୁରୁଜୀମାନେ ଅନାଇଥାନ୍ତି । ସେମାନଙ୍କ ଭିତରୁ ଜଣେ ଗୁରୁଜୀ କହନ୍ତି, ଆଣ୍ଟୁ ବି ଲୁଚି ନଥାଏ, ଦୋମୁହାଁ ଖଦଡ଼ ଖଣ୍ଡେ ଓ ଯାଇତାଇ କୁରୁତାଟିଏ । ଖାଇବା ମୁଠାକ ବି ସେଇପରି । ଖାଇବା ଘରେ ପିଲାଙ୍କ ସଙ୍ଗେ ଭୋଜନ । ଅଇଁଠା ପତ୍ର ବା ପାତ୍ରଟିକୁ ନିଜ ହାତରେ ଧରି ହାତଧୁଆ ଥାନକୁ ଯାଆନ୍ତି । ଏସବୁ ଦେଖିବାର କଥା । କି ଆନନ୍ଦ କି ଶାନ୍ତି । ପରିବାରର ବାଜୀମାନଙ୍କ ଗହଣରେ ସମଭାଗୀ ସହଭୋଗୀ ହୋଇଛନ୍ତି । ସନ୍ଧ୍ୟାବେଳେ ପ୍ରାର୍ଥନା ପରେ ଛାତ୍ରାବାସରେ ଉପସ୍ଥାନ ନିଆଯାଏ । ଖଣ୍ଡିଏ ଡେସ୍କ ଉପରେ ଖାତାଟି ପକାଇ ସଂସ୍କୃତିମନ୍ତ୍ରୀ ନାମ ଡାକନ୍ତି । ଉପସ୍ଥିତ ବା ଅନୁପସ୍ଥିତ ଆଦି ମାମୁଲି ଉତ୍ତର ନ ଦେଇ ଉପସ୍ଥିତ ଭାଇ ବା ଭଉଣୀ ଦିନସାରା କାଟିଥିବା ସୂତାର ତାରସଂଖ୍ୟା କହନ୍ତି । କ୍ରମାନ୍ୱୟରେ ଗଡ଼ି ଆସି ବାପିଙ୍କ ପାଳିପଡ଼େ । ଏହା ଉତ୍ତରରେ ହାତକଟା ସୂତାର ସଂଖ୍ୟା କହି ସେ ନିଜ ଉପସ୍ଥାନ ପକାନ୍ତି । ନିଜେ ସେ ସେମାନଙ୍କ ମେଳରେ ହଜାଇ ଦେଇଛନ୍ତି ଓ ଭସାଇ ଦେଇଛନ୍ତି । ନିଜେ ନିଜକୁ ଫେରିପାଆନ୍ତୁ । ପାଟି ଫିଟାନ୍ତୁ । ମଣିଷ ଭାବରେ ନିଜ ଅଧିକାର କାହିର କରନ୍ତୁ । ଅନ୍ତରର ସୁଅ ଅବାରିତ ହେଉ । ସେହି ସୁଅ ମରିଗଲେ ମଣିଷର ମୃତ୍ୟୁ । ତାହାହିଁ ଘଟିଛି ନବବାବୁଙ୍କ ଜୀବନରେ । ଜେଲଖାନାରୁ ଫେରିବାର ୨/୩ ବର୍ଷ ପରେ ଛାତ୍ରାବାସରେ ଅସୁସ୍ଥ ହୋଇ କାଳ କଟାଉଥାନ୍ତି । ପଚାରିଛି, ଆପଣ କିପରି ଅଛନ୍ତି ? ଉତ୍ତର ଆସିଛି- ପଢ଼ିପାରୁ ନାହିଁ, ଚିନ୍ତା କରିପାରୁ ନାହିଁ, ଜୀବନର ବାକି ସବୁରେ କି ଲାଭ ?

ସେ ଚେତନା ଆଉ ନାହିଁ । ଲୋକ ଅଛନ୍ତି । ସେମାନଙ୍କ ସଂଖ୍ୟା ବଢ଼ୁଛି ସତ । କିନ୍ତୁ ଚେତନା କାହିଁ ? ଚେତନାଶୀଳ ଲୋକଙ୍କ ସଂଖ୍ୟା କମିଛି ଓ କମୁଛି ।

□□□

*ଚେତନା*

# ସାମ୍ପ୍ରତିକ କାଳରେ ଶିକ୍ଷା ସଂସ୍କାର ଆବଶ୍ୟକ କି ?

ସାଧାରଣ ହୁଏ ଅସାଧାରଣ । ସଂସ୍କାରାତ୍ ଦ୍ୱିଜ ଉଚ୍ୟତେ । ଏହି ପ୍ରକ୍ରିୟା ହେଉଛି ଶିକ୍ଷା । ଏହା ଉଭୟ ସାଧନ ଓ ସାଧ୍ୟ । ଅଧିକରୁ ଅଧିକ ଶିକ୍ଷା ଆବଶ୍ୟକ । ସେଥିପାଇଁ ଏହା ମଧ୍ୟ ସାଧନ ହୁଏ । ଉଭୟଦିଗରୁ ଶିକ୍ଷାର ସଂସ୍କାର ହେବା ଉଚିତ୍ । ଏହା ନିତ୍ୟ ନୂତନ ହେଉଥିବ । ସାମ୍ପ୍ରତିକ କାଳରେ ଏହାହିଁ ଆମ ବିପତ୍ତି । ସଂସ୍କାର ନିରନ୍ତର ନ ହେଉ ଥିବାରୁ ଶିକ୍ଷା ଶଗଡ଼ଗୁଳାରେ ଚାଲିଛି । ଶିକ୍ଷକ

ଶଗଡ଼ ଚାଳକ ହେଉଛନ୍ତି ଆଜିର ଦ୍ରୁତ ପରିବର୍ତ୍ତନଶୀଳ ପରିସ୍ଥିତିରେ ବ୍ୟକ୍ତି ଓ ସମାଜ ପାଇଁ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ଅନାବଶ୍ୟକ ହୋଇ ପଡୁଛି ।

ଶିକ୍ଷା ତେଣୁ ବିପର୍ଯ୍ୟସ୍ତ, ଛିନ୍ନଛତ୍ର, ଏହାର ବେଗ ନାହିଁ, ଦିଗ ମଧ୍ୟ ନାହିଁ ? ଏହା ସୁପରିକଳ୍ପିତ ଓ ଶୃଙ୍ଖଳିତ କାର୍ଯ୍ୟକ୍ରମ ହେଉନାହିଁ । ଏକନିଷ୍ଠ କ୍ରିୟାନ୍ୱୟନ ଓ ନିରନ୍ତର ମୂଲ୍ୟାୟନ ଅଭାବରୁ ଅନିଶ୍ଚିତତାର ଘେରିବନ୍ଧ ଅବରୁଦ୍ଧ କରୁଛି ।

ଏଠି କହି ରଖେ; ସୃଜନଶୀଳ ଶିକ୍ଷକ, ଉଚ୍ଚକୋଟୀର ଶିକ୍ଷାୟତନ ଓ ଉନ୍ନତ କର୍ମପନ୍ଥା ଯେ ନାହିଁ, ଏହା ନୁହେଁ, ବରଂ ଅଡୁଆ ସୂତା ପେଣ୍ଡା ଭିତରୁ ସେସବୁ ବାହାରି ପାରୁନାହାନ୍ତି । ଉତ୍ସାହିତ କରିବା ପାଇଁ କିଏ ଅଛିକି ?

ଫୁଟିଲା ଭାତ ହାଣ୍ଡିରୁ ଗୋଟିଏ ଚିପିଲା ପରି ପରୀକ୍ଷା କଥା ଦେଖାଯାଉ । ପ୍ରାୟ ପଚାଶ ବର୍ଷ ହେବ ଆମେ ଏହାକୁ ନିଶ୍ଚିତ କରି ସାରିଛୁଁ । ଭସ୍ମାସୁର ପରି ଏହା ଆମ ଚୁଟି ଧରିଛି । ପ୍ରତି ପରୀକ୍ଷାରେ ପ୍ରାୟ ଅଧେ ଅଧେ ସଫଳ ହେଉଛନ୍ତି । ବିଫଳମାନେ ଜୀବନରେ ପରାଜିତ ଓ ପଳାତକ ହେଉଛନ୍ତି । ସଫଳମାନେ ଆଣ୍ଠୁଗଣ୍ଠି ଛିଣ୍ଡାଇ ବସି ପଡୁଛନ୍ତି, କି ଲାଭ ? ଏ ପିଢୀ ଓ ଆଗାମୀରେ ପୁଞ୍ଜି ଲଗାଣ ହେଉଛି କି ? ପ୍ରମାଣପତ୍ର ସର୍ବସ୍ୱ ହୋଇ ମାନବ ସମ୍ବଳର ବିକାଶ ହେଇଛି କି ? ଶିକ୍ଷା ମନୁଷ୍ୟ ତିଆରି, ରାଷ୍ଟ୍ରନିର୍ମାଣକାରୀ ଓ ଚରିତ୍ର ଗଠନକାରୀ ହେଉନାହିଁ । ମୂଲ୍ୟାୟନକୁ ନିରବଚ୍ଛିନ୍ନ ଓ ବ୍ୟାପକ କରିପାରିଲୁ ନାହିଁ । ଶିକ୍ଷକଙ୍କ ଉପରେ ଆସ୍ଥା ଓ ଆତ୍ମବିଶ୍ୱାସ ରଖିପାରିଥିଲେ ଘୋଷାଘୋଷି, ଧରାଧରି, ଚୋରି, ଦୁର୍ନୀତି ଛାଡ଼ି ସା ବିଦ୍ୟା ଯା ବିମୁକ୍ତୟେ ଦିଗରେ ଆଗେଇ ପାରିଥାନ୍ତୁ । ପାଠ, ଉଦ୍ଦେଶ୍ୟ ଓ ମୂଲ୍ୟାୟନ ମଧ୍ୟରେ ସକ୍ରିୟ ସମ୍ପର୍କ ଦେଖିଥାନ୍ତୁ । କୌଣସିଠାରେ ପ୍ରତ୍ୟନୁଭବର ବିଚାର କରୁଛି କି ? ତେଣୁ ଆମେ ଦିଗଭ୍ରାନ୍ତ । ସଂସ୍କାର ବିଚାର ପୋଥିରେ ବନ୍ଧା ।

Tution, Coaching, Tutorials ବ୍ୟାଧିଗ୍ରସ୍ତ ଶିକ୍ଷା ବ୍ୟବହାର ଲକ୍ଷଣ । ଯିଏ ଡାଆଣୀ ସେ ଗୁଣିଆ ପରି ଲାଗେ । ଏପରି ଚାଲିଲେ ମନୁଷ୍ୟ ଓ ରାଷ୍ଟ୍ରନିର୍ମାଣର ଶିକ୍ଷା ଅନୁଷ୍ଠାନଗୁଡ଼ିକ ଉଠିଯିବ । ପରୀକ୍ଷାର ଫଳ ଆଜି ସନ୍ଦେହଯୁକ୍ତ । କେଉଁକାମରେ ଲାଗୁଛି କି ? ନାଁ ଚାକିରୀ ପାଇଁ, ନାଁ ଉଚ୍ଚତର ଶିକ୍ଷାପାଇଁ । ତେବେ ପରୀକ୍ଷାକୁ ପୂରା ଫୋପାଡ଼ି ଦେଇ Record Card ଦେଲେ ତ ହୁଅନ୍ତା । ତାହାହେଲେ ଆଶା, ଆମେ ଆମ ଦାୟିତ୍ୱ ମୁଣ୍ଡାନ୍ତୁ । ଶିକ୍ଷକ, ଶିକ୍ଷାର୍ଥୀ, ଅଭିଭାବକ, ସମସ୍ତେ ନିଜ ନିଜ ଠାରେ ଓ ପରସ୍ପର ପ୍ରତି ଉତ୍ତରଦାୟୀ ରହନ୍ତେ ।

ଶିକ୍ଷକ ସଂଘ ଓ ଶିକ୍ଷକମାନଙ୍କ ସହିତ ସରକାରଙ୍କ ସମ୍ପର୍କ ସମ୍ବେଦନଶୀଳ ନ ହୋଇ ଏବେ ସୁଦ୍ଧା ପୂର୍ବପରି ମୁହାଁମୁହିଁ ରହୁଛି । ଫଳରେ ଶିକ୍ଷାଳୟ ବନ୍ଦ, ପରୀକ୍ଷା ଘୁଞ୍ଚୁଛି, ଖାତାଦେଖା ଡେରି ଓ ଫଳ ପ୍ରକାଶନ ଘୁଞ୍ଚିଯାଉଛି ବିକାଶର ବୃତ୍ତ କାମ କରୁନାହିଁ ।

ଚିନ୍ତାର ଅଭାବ ନାହିଁ, ଅଭାବ ହେଉଛି ସମର୍ପିତ, କର୍ତ୍ତବ୍ୟନିଷ୍ଠ ଓ କୁଶଳୀ କାର୍ଯ୍ୟପନ୍ଥା । ୧୦+୨+୩ ଢାଞ୍ଚା ସବୁ ରାଜ୍ୟରେ ପ୍ରବର୍ତ୍ତନ କଲାବେଳେ ମୁଖ୍ୟ କେତୋଟି ଲକ୍ଷ୍ୟ ଥିଲା, ଦଶ ଓ ଯୁକ୍ତ ଦୁଇ ଶ୍ରେଣୀ ପରେ ଶତକଡ଼ା କେତେ ଭାଗ ପିଲା କର୍ମର ଜୀବନ ଗ୍ରହଣ କରିବେ ଓ ବିଭିନ୍ନ ରାଜ୍ୟ ଓ ଦେଶର ଶିକ୍ଷାମାନ ଆନ୍ତର୍ଜାତିକ ସ୍ତର ସହିତ ତୁଳନୀୟ ହେବ । ହେଲା କଅଣ ? କଞ୍ଚାମାଲ ସଦୁପଯୋଗ କରି ବିଭିନ୍ନ କାମଧନ୍ଦା ସୃଷ୍ଟି କରାଯାଇ ପାରିଲା ନାହିଁ । ଫଳରେ +୨ ବୈଷୟିକ ସ୍କୁଲ ନାମକୁ ମାତ୍ର ରହିଲା ।

ଜ୍ଞାନ ବିସ୍ଫୋରଣ ଓ ପ୍ରତିଭା ବିସ୍ଫୋରଣ ବହୁଦିନରୁ ଚାଲିଛି । ତାଳିପକାଇ ଚଳିଯାଉଥିଲା । ଏବେ ଦିନେ ଯାହା ଅଜଣା ଭୂଖଣ୍ଡ ଥିଲା ତାହା ଆଜି ଗ୍ରାମ ହୋଇଛି ଓ ପକ୍ଷାନ୍ତରରେ ଯାହା କଣାଶୁଣା ଗାଁ ତାହା ଭୂମଣ୍ଡଳୀୟ ରୂପ ନେଇଛି । ଏହା ଗଣମାଧ୍ୟମର କୃତି । ଏହି ଉଭୟର ତାଳମେଳ ସଚେତନତା ଅନିବାର୍ଯ୍ୟ ହେଉଛି । ନୋହିଲେ ଯାହାକୁ ଭୌତିକ ଜ୍ଞାନ କହନ୍ତି ଅର୍ଥାତ୍ ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରଚଣ୍ଡ ବିସ୍ଫୋରଣ ଘଟୁଛି । ପ୍ରତିଭାର ବିସ୍ଫୋରଣ ସେପରି ନାହିଁ ନଥିବା ହେବାକୁ ଯାଉଛି । ଏଥିସହିତ ସମସ୍ତଙ୍କ ଆଶା ଓ ଲାଳସାରେ ବିସ୍ଫୋରଣ ଘଟୁଛି । କିନ୍ତୁ ସେହି ଅନୁସାରେ ଛାତ୍ରମାନଙ୍କ କୃତି ତଦନୁରୂପ ହେଉନାହିଁ । ସାମ୍ପ୍ରତିକ କାଳରେ ଏହା ପ୍ରଚଣ୍ଡ ଆହ୍ୱାନ । ବୃତ୍ତିର ସ୍ତର କ୍ରମେ ବଢ଼ାଇବାକୁ ପଡ଼ିବ । ମାଟି ଉପରେ ଗୋଡ଼ ଦୃଢ଼ ହେଲେ ଆକାଶକୁ ଅନାଇ ଉପରକୁ ଉଠିପାରିବା । ସମାଜର ସ୍ଥିରତା ରକ୍ଷା କରି ଏହାର ପରିବର୍ତ୍ତନ କରିବା ଶିକ୍ଷାସଂସ୍କାରର କର୍ତ୍ତବ୍ୟ ।

ସୂଚନା ବିସ୍ଫୋରଣ ଆଜିର ସମାଜରେ ଅନ୍ୟତମ ଚିନ୍ତାର ବିଷୟ । ସୂଚନା ପ୍ରଯୁକ୍ତି ବିଦ୍ୟା (Information Technology) ଶିକ୍ଷାର ଉନ୍ନତି କରିବ । କମ୍ପ୍ୟୁଟର ଶିକ୍ଷା ଓ ଇଣ୍ଟରନେଟ୍‌ର ସଦୁପଯୋଗ କରାଯିବ । ଏଥିପାଇଁ ଆତ୍ମଶିକ୍ଷଣ ଆବଶ୍ୟକ । ଶ୍ରେଣୀ ନୋଟ, ମାନେ ବହି, ପ୍ରଶ୍ନୋତ୍ତର ଉପରେ ଶିକ୍ଷକ ଓ ଶିକ୍ଷାର୍ଥୀ ନିର୍ଭରଶୀଳ । ଗ୍ରନ୍ଥସୂଚୀ, ବିଷୟସୂଚୀକୁ ଦେଖି ଆମେ ଅଧ୍ୟୟନରେ ସ୍ୱାବଲମ୍ବନଶୀଳ ନୋହୁଁ । ତେଣୁ ପାଠକ, ପାଠନ ସାମଗ୍ରୀ ଓ ପ୍ରଣାଳୀର ବୈପ୍ଳବିକ ସଂସ୍କାର ଆବଶ୍ୟକ ।

ଉଦାରୀକରଣ ଓ ଜଗତୀକରଣ ଫଳରେ ବିଦେଶୀ ପୁଞ୍ଜି ସୁଲଭ ହୋଇଛି । ଦାରିଦ୍ର୍ୟ ଦୂରୀକରଣ ପାଇଁ ସହଜ ପନ୍ଥା ଭାବରେ ଏହାକୁ ଗ୍ରହଣ କରି ନେଉଛୁଁ ଅବିଚାରିତ ଭାବରେ । ସମ୍ବଳ ଓ ପ୍ରଯୁକ୍ତିବିଦ୍ୟା ବିଦେଶରୁ ଆସିଯାଉଛି । କିନ୍ତୁ ଆମ ନିଜସ୍ୱ କଞ୍ଚାମାଲ ପଡ଼ି ରହୁଛି । ଆମ ପରୀକ୍ଷିତ କୌଶଳ ଓ ପ୍ରଯୁକ୍ତିବିଦ୍ୟା ଅନାବଶ୍ୟକ ମନେକରୁଁ । ଖାଦ୍ୟ ଉତ୍ପାଦନ ପର୍ଯ୍ୟାପ୍ତ ହେଉ ନାହିଁ, ବସ୍ତ୍ର ଓ ବାସଗୃହର

ଅଭାବ ରହିଛି। ଏପରି ଅବସ୍ଥାରେ ବିଦେଶୀ ସଂସ୍କୃତି ଆମ ଉପରେ ଲଦି ପଡୁଛି। କାମଧନ୍ଦାର ପ୍ରଲୋଭିତ ଯୁବଶକ୍ତିକୁ ଟାଣି ନେଉଛି। କଠିନ ପରିଶ୍ରମ, ବିଜ୍ଞାନଶିକ୍ଷା, ଉନ୍ନତ ମାନର ନହେବାରୁ ଆମେ ନିର୍ଣ୍ଣୟାତ୍ମକ ପଦପଦବୀରେ ରହିପାରୁ ନାହିଁ। ଆମ ସଂସ୍କୃତି, ଭାଷା, ସ୍ୱାଭିମାନ ସେମାନଙ୍କ ଉପଦେଶାଣିଆ ଚକଚକିଆ ସଂସ୍କୃତି ଦ୍ୱାରା କବଳିତ ହୋଇଯାଉଛି। ଏହାଫଳରେ ମୂଲ୍ୟବୋଧର ଅବକ୍ଷୟ ଦ୍ରୁତତର ହେଉଛି। ଏହା ସାଙ୍ଗକୁ ଉପଭୋକ୍ତାପଣିଆ, ବସ୍ତୁବାଦ ଓ ବଡ଼ିମା ବଢ଼ି ବଢ଼ି ଚାଲିଛି। ଦୁର୍ନୀତି, ଦୁରାଚାର, ଅପରାଧୀକରଣ, ଉଗ୍ରବାଦ, ଶୋଷଣ, କଷଣ, ଧର୍ଷଣ, ପ୍ରଦୂଷଣ ଆମ ବଳିଷ୍ଠ ସାମାଜିକ ଓ ସାଂସ୍କୃତିକ ଚେତନାର ନିୟନ୍ତ୍ରଣ ରେଖା ଟପିଯାଇଛି। ନିରକ୍ଷରତା ସମୂଳ ଉତ୍ପାଟିତ ହୋଇନାହିଁ। ଯେଉଁମାନଙ୍କୁ ଆମେ ସାକ୍ଷର, ପାଠୁଆ, ଶିକ୍ଷିତ ବୋଲି କହୁଛୁ ସେମାନଙ୍କ ଜୀବନରେ ମୂଲ୍ୟବୋଧ ସମ୍ବନ୍ଧୀୟ ଗଭୀର ଜ୍ଞାନ, ଆତ୍ମପ୍ରତ୍ୟୟ, କର୍ତ୍ତବ୍ୟନିଷ୍ଠା ପ୍ରଶ୍ନବାଚୀ ହୋଇ ରହିଛି। ମହାନ୍ ଦାର୍ଶନିକ ପୂର୍ବତନ ରାଷ୍ଟ୍ରପତି ଡଃ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ନେତୃତ୍ୱରେ ଗଠିତ ବିଶ୍ୱବିଦ୍ୟାଳୟ ଶିକ୍ଷା ଆୟୋଗ ବିଦ୍ୟାର୍ଥୀମାନଙ୍କୁ ମନ୍ତ୍ରବତ୍, ପଲ୍ଲବଗ୍ରାହୀ, ନକରି ଆତ୍ମବତ୍ ଗଭୀରଜ୍ଞାନ ସମ୍ପନ୍ନ ଓ ସମର୍ଥ ପୁରୁଷ ଭାବରେ ଗଢ଼ିବା ପାଇଁ ପରାମର୍ଶ ଦେଇଥିଲେ। ଶିକ୍ଷାର ଆମୂଳଚୂଳ ସଂସ୍କାର ଓ ପରିବର୍ତ୍ତନ ଅନିବାର୍ଯ୍ୟ। କେବଳ ଶିକ୍ଷା କାହିଁକି ସମାଜର ପ୍ରତ୍ୟେକ ସ୍ତରରେ ଏଥିପାଇଁ ବିପ୍ଳବ ଆବଶ୍ୟକ। ଶିକ୍ଷାନୁକୂଳ ସମାଜ ଓ ସମାଜ ଅଭିମୁଖୀ ଶିକ୍ଷା ଏହା ଦେଇ ପାରିବେ। ଅଧ୍ୟୟନ, ଅଧ୍ୟାପନା, ଶିକ୍ଷକ ଶିକ୍ଷା, ପରିଦର୍ଶକମାନଙ୍କ ଶିକ୍ଷା ଓ ସାକ୍ଷରତା ପରବର୍ତ୍ତୀ ଶିକ୍ଷା ସ୍ୱାବଲମ୍ବନଶୀଳତା ରହିବ। ସଂସ୍କାରର ପରିସର ଶିକ୍ଷା ଓ ସମାଜରେ ପରିବ୍ୟାପ୍ତ ହେବା ଉଚିତ୍।

ପରିଶେଷରେ ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ଦେଶପ୍ରତି ପରମ ଓ ଚରମ ଦାନ ହେଉଛି ତାଙ୍କ ଶିକ୍ଷା ଦର୍ଶନ। ସମନ୍ୱିତ ସମାଜ ଓ ସମନ୍ୱିତ ବ୍ୟକ୍ତିତ୍ୱର ଗଠନ। ଶିକ୍ଷାକୁ ଆୟୁଧ କରି ସେ ନୀରବ ସାମାଜିକ ବିପ୍ଳବ କରିବାକୁ ଚାହିଁଥିଲେ। କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ, ଯେଉଁଠି ଉତ୍ପୀଡ଼ନ ଥିବ ସେଠି, କେବଳ ଶିକ୍ଷାରେ ନୁହେଁ ସମଗ୍ରଭାବରେ ସମାଜର ପ୍ରତ୍ୟେକ ସ୍ତରରେ। କଷଣ ହୋଇଛି, ଆମେ ଅଙ୍ଗେ ନିଭାଇଛୁ। ତଥାପି ସଂସ୍କାର ଦିଗ ମୋଡ଼ିଦେବା ପାଇଁ ସମୟ ଅଛି।

□□□

# ମାଧ୍ୟମିକ ଶିକ୍ଷା

ଏବେ ଆମ ଦେଶରେ ଦଶ ଯୁକ୍ତ ଦୁଇ ଯୁକ୍ତ ତିନି ଶ୍ରେଣୀର ସ୍କୁଲ ଓ କଲେଜ ଶିକ୍ଷା ଚାଲିଛି । ଆମ ରାଜ୍ୟରେ ଏହାହିଁ ଅନୁସୃତ ହେଉଛି । ଆମ ଦେଶ ବହୁ ବିଭିନ୍ନତାରେ ମଞ୍ଜୁଳ ଓ ମହାନ । ଏହାର ସଂସ୍କୃତି ବହୁ ଧାରାରେ ଚିତ୍ରିତ ଓ ଅନନ୍ୟଭାବରେ ବିଚିତ୍ର । ଏହାର ପଟାନ୍ତର ବିଶ୍ୱବକ୍ଷରେ ନାହିଁ । ଏହାର ସୁରକ୍ଷା ଓ ସମୃଦ୍ଧି ସାଧନ କରି ଜାତୀୟ ସଂହତି ତଥା ଅଖଣ୍ଡତା ରକ୍ଷା କରିବାରେ ଗୋଟିଏ ପ୍ରକାର ଶିକ୍ଷାର ଡାଞ୍ଚା ସହାୟକ ହେବା ଉଦ୍ଦେଶ୍ୟରେ ଉଲ୍ଲିଖିତ ଡାଞ୍ଚାର ପ୍ରବର୍ତ୍ତନ କରାଯାଇଛି । ବିଭିନ୍ନ ବୃତ୍ତିର ଜନସାଧାରଣ ଓ ଆଗ୍ରହ ତଥା ସଂଭାବନାର ଶିକ୍ଷାର୍ଥୀମାନେ ଗୋଟିଏ ରାଜ୍ୟରୁ ରାଜ୍ୟାନ୍ତରକୁ ଅବାଧରେ ଯାଇପାରିବେ । ଶିକ୍ଷା ସହିତ ପ୍ରତିଭାର ବିକାଶ ଘଟିବ । ଶିକ୍ଷାର ଉତ୍କର୍ଷ ଓ ଦେଶର ସମୃଦ୍ଧି ସାଧିତ ହେବ । ପାଠ୍ୟପୁସ୍ତକ, ପ୍ରଣାଳୀ ଓ ପ୍ରଶାସନରେ ନବପ୍ରବର୍ତ୍ତନର ଏକ ସ୍ଥାନରୁ ସହଜରେ ସ୍ଥାନାନ୍ତରିତ ହୋଇ ପାରିବ । ଆମେ ମଧ୍ୟ ଆନ୍ତର୍ଜାତିକ ମାନ ଓ ଉତ୍କର୍ଷ ସହିତ ତୁଳନୀୟ ହୋଇପାରିବା ।

ଏହି ପରିପ୍ରେକ୍ଷୀରେ ମାଧ୍ୟମିକ ଶିକ୍ଷାର ସ୍ତର ନବମ ଶ୍ରେଣୀରୁ ଦ୍ୱାଦଶ ଶ୍ରେଣୀ ଯାଏଁ ପରିବ୍ୟାପ୍ତ । ପ୍ରାୟ ପନ୍ଦର ବର୍ଷରୁ ଅଠର ବର୍ଷ ବୟସର ଶିକ୍ଷାର୍ଥୀଙ୍କ ପାଇଁ ଏହା ଅଭିପ୍ରେତ । ବୟସ ଓ ଶ୍ରେଣୀକୁ କଡ଼ାକଡ଼ି ଭାବରେ ଧରି ଏହି ସ୍ତରଟିକୁ ଓ ସେହିପରି ଅନ୍ୟ ସ୍ତର ଦୁଇଟିକୁ ନିର୍ଦ୍ଧାରିତ ଓ ପୃଥକ୍ କରାଯାଇ ନ ପାରେ । ଶିକ୍ଷାର୍ଥୀମାନେ ନିଜ ନିଜର ଜ୍ଞାନାର୍ଜନ ଦକ୍ଷତା ଓ ଶିକ୍ଷାସୁଯୋଗର ସୁଲଭତା ଅନୁସାରେ ଉଲ୍ଲିଖିତ ଡାଞ୍ଚାରେ ଗୋଟିଏ ସ୍ତରରୁ ଅନ୍ୟସ୍ତରକୁ ଗତି କରିପାରିବେ । ଏହାର ଅର୍ଥ ହେଉଛି ଯେ ଶିକ୍ଷାର ବିଭିନ୍ନ ସ୍ତର ନିରବଚ୍ଛିନ୍ନ ଭାବରେ ଗୋଟିକ ପରେ ଗୋଟିଏ ରହିଛି । ଏହା ଛଡ଼ା ଉଲ୍ଲିଖିତ ଚାରୋଟି ଶ୍ରେଣୀ ମଧ୍ୟରୁ ଏକାଦଶ ଓ ଦ୍ୱାଦଶ ଶ୍ରେଣୀଦ୍ୱୟ ଉଚ୍ଚତର ମାଧ୍ୟମିକ ସ୍ତରଭାବରେ ଅଭିହିତ ଏବଂ ଉଚ୍ଚତର ମାଧ୍ୟମିକ ପରିଷଦ ଦ୍ୱାରା ପରିଚାଳିତ, ଅଥଚ ନବମ ଓ ଦଶମ ଶ୍ରେଣୀ ଦ୍ୱୟ ନିମ୍ନ ମାଧ୍ୟମିକ ସ୍ତର ଭାବରେ ଅଭିହିତ ଏବଂ ମାଧ୍ୟମିକ ଶିକ୍ଷା ପରିଷଦ ଦ୍ୱାରା ପରିଚାଳିତ ।

ଅଧିକନ୍ତୁ ସ୍କୁଲ (ପ୍ରାଥମିକ ଓ ମାଧ୍ୟମିକ) ଏବଂ କଲେଜ ଶିକ୍ଷା ମଧ୍ୟରେ ତତ୍ତ୍ୱ ଦୃଷ୍ଟିରୁ ଉଲ୍ଲିଖିତ ନିରବଚ୍ଛିନ୍ନ ସଂପର୍କ ରହିଥିଲେ ହେଁ କାର୍ଯ୍ୟତଃ ଲୋକମୁଖରେ ଦୋଷ ଦର୍ଶିତାର ସଂପର୍କ ହିଁ ପରିଲକ୍ଷିତ ହୁଏ । କୌଣସି କଲେଜର ଯଦି ପରୀକ୍ଷା ଫଳ ଏବଂ ପିଲାଙ୍କ ଆଚରଣ ଭଲ ନ ହେଲା ତେବେ ଏହି ଦୋଷ ବିନା ବିଚାରରେ

ମାଧ୍ୟମିକ ସ୍ତର ଉପରେ ଲଦି ଦିଆଯାଏ । ମାଧ୍ୟମିକ ସ୍କୁଲ ସେହି ପ୍ରକାର ପରିସ୍ଥିତିରେ ନିଜ ମୁଣ୍ଡରୁ ଦୋଷପସରା ହଟାଇ ଦେଇ ଆରାମରେ ତଳ ପାହାଚରେ ଥିବା ପ୍ରାଥମିକ ସ୍କୁଲ ଉପରେ କଚାଡ଼ି ଦିଏ । ଉପରୁ ଗଡ଼ି ଆସିଥିବା ଦୋଷର ବୋଝ ତଳସ୍ତରରେ ଲଦି ହେଲେ ସୁଦ୍ଧା ଏହା କଚାଡ଼ି ହୋଇଯାଏ । ଆହୁରି ମଧ୍ୟ ତଳସ୍ତରକୁ ଯେତେ ଯିବ କଚଡ଼ାଟା ସେତେ ଜବରଦସ୍ତ ହେବା ସ୍ୱାଭାବିକ । ଏଥିରେ ପ୍ରାଥମିକ ସ୍କୁଲ ନାଚାର । ସେ କାହା ଉପରେ ଦୋଷ ଦେବେ ? ଗାଁ ବାଲା ବିଶେଷ କରି ପିତାମାତାଙ୍କୁ ଛାଡ଼ିବେ କାହିଁକି ? ପକ୍ଷାନ୍ତରରେ ପିତାମାତା ବର୍ଷକ ଯାକ ସ୍କୁଲ ସହିତ ସଂପର୍କ ନରଖି ଯଦି ପିଲାଙ୍କ ପରୀକ୍ଷାଫଳ ଭଲ ନହେଲା ସେ ପ୍ରାଥମିକ ସ୍କୁଲ ଉପରେ ଦୋଷ ଦିଅନ୍ତି, ତଳର ତ୍ରୁଟି ବିଚ୍ୟୁତି ପାଇଁ ଉପରକୁ ଦାୟୀ କରିବାର ହୀନ ଚକ୍ରାନ୍ତ ମଧ୍ୟ ଚାଲିଥାଏ । ପ୍ରାଥମିକ ସ୍କୁଲରେ କାମ ଭଲ ନହେବାର କାରଣ ହେଉଛି ମାଧ୍ୟମିକ ସ୍କୁଲରୁ ବାହାରୁଥିବା ପିଲାମାନେ ନିଜର ଦୁର୍ବଳତା ହେତୁ ଭଲ ଶିକ୍ଷକ ହେଉନାହାନ୍ତି । ଠିକ୍ ସେହିପରି କୁହାଯାଏ ଯେ ମାଧ୍ୟମିକ ସ୍କୁଲରେ ଫଳ ଭଲ ନହେବାର କାରଣ ହେଉଛି କଲେଜ ପାସ୍ ପିଲାମାନଙ୍କର ବହୁ ତ୍ରୁଟି ରହିଯାଇଛି । ତେଣୁ ସେମାନେ ମାଧ୍ୟମିକ ସ୍କୁଲରେ ସଫଳ ଶିକ୍ଷକ ହୋଇପାରୁ ନାହାନ୍ତି । ଏଇ ହେଉଛି ଦୋଷଦର୍ଶିତାର ସିଡ଼ୀ, ଉପରୁ ତଳକୁ ଓ ତଳୁ ଉପରକୁ ଦୋଷ ଖସିଯାଉଛି ଓ ବଢ଼ି ଯାଉଛି । ଯେମିତି ବୁଝାଇଲେ ସେମିତି ହେବ । ମାଧ୍ୟମିକ ଶିକ୍ଷାର ସ୍ତରଟି ମଝିରେ ରହି ଦାୟିତ୍ୱକୁ ତଳକୁ ଖସାଇ ନେଉଛି ବା ଉପରକୁ ବଢ଼ାଇ ଦେଉଛି । ଏହି ଯୁକ୍ତିରୁ ମାଧ୍ୟମିକ ଶିକ୍ଷାରସ୍ତର କିଛି ଦାୟିତ୍ୱ ନିଜେ ନେଉ ନାହିଁ ବୋଲି ଜଣାପଡ଼େ । କଥା ହେଉଛି, ପ୍ରତ୍ୟେକ ସ୍ତରୀୟ ଶିକ୍ଷାର ଆଭିମୁଖ୍ୟ ରହୁଛି । ଏଥିରେ ବିଭିନ୍ନ ବିଷୟରେ ଶିକ୍ଷା ଉଲ୍ଲିଖିତ ଆଭିମୁଖ୍ୟର ପରିସର ମଧ୍ୟରେ ସହାୟକ ତଥା ପରିପୂରକ ହୋଇ ଉଦ୍ଦେଶ୍ୟ ଆଧାରିତ ହୋଇଥାଏ । ପ୍ରତ୍ୟେକ ଶିକ୍ଷକ ପ୍ରତି ପିରିଅର୍ଡରେ ଉଲ୍ଲିଖିତ ଉଦ୍ଦେଶ୍ୟଦ୍ୱୟକୁ ସ୍ତରୀୟ ଶିକ୍ଷା ଓ ସ୍ତର ଅନ୍ତର୍ଗତ (ବିଷୟ ଶିକ୍ଷା) ଧ୍ୟାନ ଦେଇ ନିଜ ଶିକ୍ଷାଦାନକୁ ଉଦ୍ଦେଶ୍ୟ ଆଧାରିତ କରିଥାନ୍ତି । ମୋଟ ଉପରେ ଶିକ୍ଷା ହେଉଛି ଆଭିମୁଖ୍ୟ ଭିତ୍ତିକ ସଂଗଠିତ କାର୍ଯ୍ୟକ୍ରମ । ଏପରି କଲେ ଆମ କାର୍ଯ୍ୟକ୍ରମ ଫଳପ୍ରଦ ହୁଏ ।

ପିଲାଙ୍କ ଦୁର୍ବଳତା ପାଇଁ ଆମେ ଔଷଧ ରାଗରେ ତାଟିଆ ଫିଙ୍ଗିଲା ପରି ଯ୍ୟ ମୁଣ୍ଡ ବା ତାମୁଣ୍ଡ ଉପରେ ଦୋଷ ଦେଉଛୁଁ । ଯେଉଁ ସ୍ତରରେ ଯେଉଁ ଶ୍ରେଣୀରେ ବିଶେଷ କରି ପ୍ରାରମ୍ଭିକ ଶ୍ରେଣୀରେ ଛାତ୍ର ଗ୍ରହଣ କରୁଁ ପଛକେ ଶିକ୍ଷାର୍ଥୀଙ୍କୁ ପ୍ରଥମେ ଅଧ୍ୟୟନ କରିବା । ନାମଲେଖା ପ୍ରତ୍ୟେକ ଶିକ୍ଷାର୍ଥୀଙ୍କର ଦୁର୍ବଳତା ରହୁଛି । ଗୁଣ ମଧ୍ୟ ଅଛି । ଏହାକୁ ଠାବ କରିବା । ଦୋଷର ନିରାକରଣ କରି ଗୁଣର ପରିସୀମାକୁ

ପ୍ରସାରିତ କରିବା । ପୁରୁଣାକାଳର କଥାଟିଏ କହୁଛି । କଟକ ସହରର ନାମକରା ଗୋଟିଏ ପ୍ରତିଷ୍ଠିତ ବିଦ୍ୟାଳୟରେ ସହରିଆ ପିଲାଙ୍କ ସମେତ ମଫସଲିଆ ପିଲା ବି ନାମ ଲେଖାଇଥାନ୍ତି । ପକାଘର, ପ୍ୟାଣ୍ଟ ଟାଇ ପିନ୍ଧି ବଡ଼ ବଡ଼ ସାର୍, ସବୁ ଇଂରାଜୀରେ କାରବାର୍-ଗାଁ ପିଲା ଯାକ ବାଟ ପାଆନ୍ତି ନାହିଁ । ସବୁ ଅନ୍ଧାର, ଦେଖନ୍ତି କେବଳ ନିଜ ଅଜ୍ଞତା ଓ ହୀନମନ୍ୟତା । ଏଠି ଶିକ୍ଷକ କରିବେ କଅଣ ? ଏଇ ପିଲାଙ୍କ ପାଇଁ କିଛି ଗୋଟେ କରାଯିବ ନାହିଁକି ? ପାଠରେ ତ୍ରୁଟି ଓ ଆଚରଣରେ ବିଚ୍ୟୁତି । ତ୍ରୁଟି ପାଇଁ Detention Class, ଅଭିଭାବକଙ୍କ ସହିତ ସହଯୋଗ । ବିଚ୍ୟୁତି ପାଇଁ ନିଦାନ Diagnosis ଓ ପ୍ରତିକାର ତଥା ସଂଶୋଧନ । Guidance and Counselling । ଟ୍ରେନିଂ କଲେଜରେ ପଢ଼ାଯାଏ । ପ୍ରଶ୍ନ ପତ୍ରରେ ଉତ୍ତର ଦିଅନ୍ତି । ପ୍ରୟୋଗ କାହିଁ ? Cumulative Record card କଥା କୁହାଯାଏ । ଏବେ ଚାଲିଛି କି ? ପିଲାଙ୍କୁ ଅଧ୍ୟୟନ କରିବା, ଯଥା ସମୟରେ ଓ ଯଥା ସ୍ଥାନରେ ସାହାଯ୍ୟ କରିବାର ଏହା ଏକ ସାଧନା । ଏହାର ବ୍ୟବହାର ଆଉ ନାହିଁ । State Bureau of Educational and Vocational Guidance ବଞ୍ଚିଛି । ମାଧ୍ୟମିକ ଶିକ୍ଷାଳୟରେ ବେଶ୍ ଭଲକାମ ହୋଇପାରନ୍ତା । ବଛା ବଛା ପିଲାଙ୍କୁ ବାଛି ଆଣୁଛୁ । କିନ୍ତୁ ତାପରେ-- ? ଏତ କିଛି ସୂଚନା, ଶିକ୍ଷାୟତନର ଅପାରଗତା ପାଇଁ ଅନ୍ୟମାନଙ୍କୁ ଦାୟୀ ନ କରିବାର ଉପାୟ ସେଠୁ ମିଳେ ।

ଅନ୍ୟ ସୂଚନାଟିଏ, ବିଦ୍ୟାଳୟଗୁଚ୍ଛ ବା ସଂଗମ (School Complex) ମାଧ୍ୟମିକ ସ୍କୁଲକୁ କେନ୍ଦ୍ରକରି ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକର ସଂଗମ ଗଠନ କରାଯିବ । ଏବେ ତ କଲେଜ ପ୍ରାୟ ପ୍ରତି ବ୍ଲକ୍‌ରେ ହେଲାଣି । ଏହାର ନିକଟବର୍ତ୍ତୀ ମାଧ୍ୟମିକ ଓ ପ୍ରାଥମିକ ସ୍କୁଲକୁ କେନ୍ଦ୍ରକରି ଶୈକ୍ଷିକ ଓ ବୌଦ୍ଧିକ କାର୍ଯ୍ୟକ୍ରମ ଚାଲୁ କରାଯାନ୍ତା । ଅଭିଭାବକମାନେ ସଂପୃକ୍ତ ହୁଅନ୍ତେ । ପଞ୍ଚାୟତ ସମିତି ଏ ସବୁର ପରିଚାଳନା କରନ୍ତେ । ପାଣ୍ଠି ଦରକାର ନାହିଁ । ଶିକ୍ଷାର ବିକାଶ ସହଜ ସମ୍ଭବ ହୁଅନ୍ତା । ଗୋଟିଏ ଗୋଟିଏ ଅଂଚଳର ବିକାଶ କରିହୁଅନ୍ତା । ଉନ୍ନୟନ ଅଧିକାରୀମାନେ ସଂଶ୍ଳିଷ୍ଟ ହୁଅନ୍ତେ, ଯେଉଁଠି ପାଇଁ କୋଡ଼ି କୋଦାଳ ଦରକାର ସେ ସବୁକୁ ନଖରେ ଛିଡ଼ାଇ ହୁଅନ୍ତା । ଆପଣା ଭିତରେ କାଦୁଅ ଫିଙ୍ଗାଫିଙ୍ଗି ନକରି ଆମେ ଚନ୍ଦନ ଲିପି ହୁଅନ୍ତେ । ସବୁ କଥାରେ ସରକାରୀ ଆଦେଶକୁ ଅପେକ୍ଷା ନକରି ଆମେ ଆଗେଇ ଯାଆନ୍ତେ । ବିଦ୍ୟାଳୟ ସଂଗମ ପାଇଁ କୋଠାରି କମିଶନ ସୁପାରିଶ୍ କରିଥିଲେ । ପଚିଶ ବର୍ଷରୁ ଅଧିକ ହେଲାଣି । ଗୋଟେ ହେଲେ ସକ୍ରିୟ ସଂଗମ କରିଛୁଁ କି ?

ଏଣେ ପରିଦର୍ଶକ ଓ ଶିକ୍ଷକ ପ୍ରଶିକ୍ଷକମାନେ ଅଛନ୍ତି । ଏମାନେ କାଛଡ଼ା

ଉପରେ ବସି ନାଟ ଦେଖିଲା ପରି ବିଚାରିବାର ଜଣାଯାଏ । ସରକାରୀ ଆଦେଶ ଆସି ନାହିଁ । ମନକୁ ଆମେ ଏଥିରେ ହାତ ଦେଲେ ଆମ ପିଠିରେ ପଡ଼ିବ କିଏ । ଏମିତି ନାନା କଥା । ମୂଳ କଥା ହେଲା ଏମାନଙ୍କର ସ୍ୱାଧୀନତା ନାହିଁ । ଭଲକାମ କରି ପୁରସ୍କୃତ ହେଉ ନାହାନ୍ତି । କେହି ପିଠି ଥାପୁଡୁ ନାହାନ୍ତି । ସେଇ ଦୋଷଦର୍ଶିତାର ବ୍ୟାଧି । ମଉଷଧି କେଉଁଠୁ ଆଣିବା ?

ମାଧ୍ୟମିକ ବିଦ୍ୟାଳୟର ଅଣ୍ଟା ଭାଙ୍ଗି ଯାଇଛି । ଏହାର କାରଣ ବିଷୟରେ କିଛି ଆଲୋଚନା କରାଗଲାଣି । ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ପରିଦର୍ଶନ, ପରିଦର୍ଶକ ଓ ମାର୍ଗଦର୍ଶନ । ଏକଥା ସତ ଯେ ସ୍କୁଲର ସଂଖ୍ୟା ବଢୁଛି । ଶିକ୍ଷାମଣ୍ଡଳାଧୀଶଙ୍କ ସଂଖ୍ୟା ତଦନୁପାତିକ ନ ହେଲେ ହେଁ କେତେକାଂଶରେ ବଢ଼ିଛି । ପରିଦର୍ଶନ ବ୍ୟତୀତ ଅନ୍ୟ କାମ ବଢ଼ିଛି । ମାଲିମକଦମା, କୋର୍ଟକଚେରୀ, ଉପର ହାକିମଙ୍କ ଡାକରା ଆଦି ବେଶୀ ହୋଇଛି, ଯାହାଫଳରେ ଯେ ପରିଦର୍ଶନ ନକରନ୍ତି ସେ ପରିଦର୍ଶକ ହେବାର କଉତୁକ ଆଜି ବାସ୍ତବ ହେବାର ଜଣାପଡ଼େ । ଏହା ଫଳରେ ପରିଦର୍ଶନର ସଂଖ୍ୟା ବର୍ଷକ ଭିତରେ ବିଦ୍ୟାଳୟ ପିଛା ଯାହାଥିଲା ତାହା କମିଯାଉଛି । ଯେଉଁ ପରିଦର୍ଶନଟି ହେଉଛି, ଏହାର ମନ୍ତବ୍ୟ ଦିଆଯାଉ ନାହିଁ । ଯେଉଁ ମନ୍ତବ୍ୟ ଦିଆଯାଉଛି ତାହା ସ୍କୁଲର ସର୍ବାଙ୍ଗୀନ ଦୃଷ୍ଟିରୁ ତନ୍ନତନ୍ନ ଓ ପୁଙ୍ଖାନୁପୁଙ୍ଖ ହେଉନାହିଁ । ଏ ବିଷୟରେ ଶିକ୍ଷକଗଣ ଓ ଗ୍ରାମବାସୀଙ୍କ ସହିତ ସାଧାରଣ ତ୍ରୁଟି ଓ ପ୍ରତ୍ୟେକଙ୍କ ଭୂମିକା ଆଲୋଚନା କରାଯାଉ ନାହିଁ । ସାଧାରଣ ପରିଦର୍ଶନ ବ୍ୟବସ୍ଥା ଓ ପରିଦର୍ଶକଙ୍କ ନିଜର ବା ସରକାରୀ ଗାଡ଼ିର ସୁବିଧା ହେତୁ ପରିଦର୍ଶନ ତରବରିଆ ହେଉଛି ଓ ବିଶେଷ କରି ଗ୍ରାମବାସୀଙ୍କ ସହିତ ପରିଦର୍ଶକଙ୍କ ଆଲୋଚନା ପ୍ରାୟ ହୋଇ ପାରୁନାହିଁ । ଗ୍ରାମରେ ରାତ୍ରିଯାପନ କରିବାର ପରଂପରା କ୍ରମେ ତୁଟି ଗଲାଣି । ଏଠି ନିଜ ଅଭିଜ୍ଞତାର ବର୍ଣ୍ଣନା କରିବା ପ୍ରାସଂଗିକ । ମିଷ୍ଟର, ଏସ୍. ରାୟ ଭଦ୍ରକ ହାଇସ୍କୁଲ ପରିଦର୍ଶନ କରୁଥାନ୍ତି । ପ୍ରଥମ ଦିନଟି ପିଲାଙ୍କ ଖାତା ପତ୍ର ଯଥା ରଚନା, ପ୍ରଶ୍ନୋତ୍ତର, ଅଙ୍କ, ମାନଚିତ୍ର, ନକ୍ସାଙ୍କନ, ଗୃହକାର୍ଯ୍ୟ ଆଦି ଗୋଟି ଗୋଟି କରି ଦେଖନ୍ତି । ଦ୍ୱିତୀୟ ଦିନ ବିଭିନ୍ନ ଶ୍ରେଣୀରେ ବିଭିନ୍ନ ଶିକ୍ଷକଙ୍କ ଶିକ୍ଷାଦାନ ନିରୀକ୍ଷଣ କରନ୍ତି ଓ ଆବଶ୍ୟକ ସ୍ଥଳେ ଶିକ୍ଷାଦାନରେ ଯୋଗ ଦିଅନ୍ତି । ତୃତୀୟ ଦିନ ସ୍କୁଲ ରେକର୍ଡ ପତ୍ର ଦେଖି ଉପରବେଳା ଶିକ୍ଷକମଣ୍ଡଳୀଙ୍କ ସହିତ ଆଲୋଚନା କରନ୍ତି । ସ୍ଥାନୀୟ ଲୋକଙ୍କ ସହିତ ମଧ୍ୟ କଥାବାର୍ତ୍ତା କରନ୍ତି । ଭଦ୍ରକ ଛାଡ଼ିବା ପୂର୍ବରୁ ରାତି ପାହାନ୍ତାରୁ ଉଠି ନିଜ ହାତରେ ମନ୍ତବ୍ୟ ଟାଇପ୍ କରି ଦେଇଯାନ୍ତି । ଏହା ୧୯୪୦-୪୧ ମସିହା କଥା । କହିଲାବେଳେ ସତ୍ୟଯୁଗ କଥା ପରି ଲାଗୁଛି । କିନ୍ତୁ ମୁଁ ଏହାଦ୍ୱାରା ପ୍ରଭାବିତ

ହୋଇଛି। ମନ୍ତବ୍ୟ ବାବଦରେ ଯେଉଁ ଦି ଧାଡ଼ି ଲେଖି ଦିଆଯାଉଛି, ଏହାର କାର୍ଯ୍ୟାନୁଷ୍ଠାନ ପାଇଁ ଆଖିଠାର ଦିଆଯାଉଛି। ଶିକ୍ଷାମଣ୍ଡଳାଧୀଶଙ୍କ ଉପରିସ୍ଥ ହାକିମ ଅର୍ଥାତ୍ ଶିକ୍ଷାନିର୍ଦ୍ଦେଶକ ଏହାର ପର୍ଯ୍ୟାଲୋଚନା କରି ପରିଦର୍ଶକଙ୍କ କାର୍ଯ୍ୟ ମୂଲ୍ୟାୟନ କରୁନାହାନ୍ତି। ଏସବୁ ନକରିବାର ଅନେକ କାରଣ ଅଛି। କିନ୍ତୁ ସ୍କୁଲର ବିପର୍ଯ୍ୟୟ ପାଇଁ କିଏ ଦାୟୀ ? ଶିକ୍ଷକମାନଙ୍କ ଉତ୍ତରଦାୟିତ୍ୱ ରହୁଛି କି ?

ଜାତୀୟ ଓ ଆନ୍ତର୍ଜାତିକ ସ୍ତର ସହିତ ଆମକୁ ପ୍ରତିଦ୍ୱନ୍ଦିତା କରିବା ଦୃଷ୍ଟିରୁ ଶିକ୍ଷାର ଆଦର୍ଶ ଓ ବିଷୟବସ୍ତୁକୁ ଅଧିକ ପ୍ରସାରିତ ଓ ଗଭୀର କରିବାକୁ ପଡୁଛି। ତେଣୁ ପୂର୍ବକାଳର ପରିଦର୍ଶନକୁ ପରିବର୍ତ୍ତିତ କରାଯିବା ଉଚିତ। ଜଣେ ପରିଦର୍ଶକଙ୍କ ପକ୍ଷରେ ମାଧ୍ୟମିକ ବିଦ୍ୟାଳୟର ପାଠ୍ୟକ୍ରମ କିପରି କାର୍ଯ୍ୟକାରୀ କରାଯାଉଛି ଏହାର ମୂଲ୍ୟାୟନ କରିବା ସମ୍ଭବ ନୁହେଁ। ଅବଶ୍ୟ ପରିଦର୍ଶକଙ୍କ ପାଇଁ ଉନ୍ନତ ପାଠ୍ୟକ୍ରମର ଆୟୋଜନ କରିବା ଉଚିତ। ଏହାଛଡ଼ା ଏକାଧିକ ବିଷୟ ବିଶାରଦଙ୍କ ସହାୟତାରେ ଗଠିତ ଗୋଷ୍ଠୀ (Panel Inspection)ଙ୍କ ଦ୍ୱାରା ପରିଦର୍ଶନ କରିବା ଉଚିତ।

ମାଧ୍ୟମିକ ଶିକ୍ଷାଳୟର ପ୍ରଧାନ ଗୁରୁଜୀଙ୍କ ବାର୍ଷିକ ସମ୍ମିଳନୀ ହୁଏ ପ୍ରତି ଶିକ୍ଷାମଣ୍ଡଳରେ। ଏସବୁ ପ୍ରତିବର୍ଷ ହେଉ ନାହିଁ। କାରଣ ସ୍ୱରୂପ କୁହାଯାଉଛି ଯେ ଗୋଟିଏ ଗୋଟିଏ ସମ୍ମିଳନୀ ଏତେ ବ୍ୟୟ ବହୁଳ ହେଉଛି ଯେ, ପ୍ରତିବର୍ଷ ସମ୍ମିଳନୀ କରିବା ସଂଭବ ନୁହେଁ। ଠିକ୍ ସେହିପରି ପ୍ରତିବର୍ଷ ନିୟମିତ ଭାବରେ ପିଲାମାନଙ୍କୁ ପୁରସ୍କୃତ କରିବା ଓ ଗ୍ରାମବାସୀ ତଥା ପିତାମାତାଙ୍କ ସହିତ ସଂପର୍କ ରଖିବାର ପରଂପରା ବୁଡ଼ି ଯିବାରେ ବସିଲାଣି। ଶିକ୍ଷକ, ଶିକ୍ଷାର୍ଥୀ ଓ ପ୍ରଧାନ ଶିକ୍ଷକ କେଉଁଠୁ ଉତ୍ସାହ ପାଇବେ ? କେତେବେଳେ କେମିତି ଯେଉଁ ସମ୍ମିଳନୀ ହେଉଛି ତାହା ମନ୍ତ୍ରୀ, ନେତା, ନିର୍ଦ୍ଦେଶକ ଓ ଶିକ୍ଷାବିତଙ୍କ ବକ୍ତୃତା ଶୁଣିବାରେ ଯାଉଛି, ଥରେ ଶୁଣାଗଲା ଯେ କୌଣସି ବଡ଼ ମନ୍ତ୍ରୀଙ୍କ ଜରୁରୀ ଆହ୍ୱାନ ପାଇ ସମ୍ମିଳନୀର ଅଧ୍ୟକ୍ଷ ଅର୍ଥାତ୍ ମଣ୍ଡଳାଧୀଶ ଗୋଟିଏ ଅଧିବେଶନରେ ଅନୁପସ୍ଥିତ ରହିବାକୁ ବାଧ୍ୟ ହେଲେ। ପାଠ, ପାଠଦାନ, ମୂଲ୍ୟାୟନ, ପ୍ରତ୍ୟନୁଭବ, ପାଠ୍ୟକ୍ରମ, ସାମାଜିକ ପରିବର୍ତ୍ତନ, ଶିକ୍ଷାର ଗୁଣାତ୍ମକ ବିକାଶ, ଶିକ୍ଷା ସାମାଜିକ ପରିବର୍ତ୍ତନ ଓ ଅର୍ଥନୈତିକ ବିକାଶ ଆଦି ସଂଭବତଃ ସୁସ୍ପଷ୍ଟ ହୁଏ ନାହିଁ, ଆଲୋଚନାରେ ଏଜେଣ୍ଡାରେ। ଶିକ୍ଷକତାର ମୂଲ୍ୟାଙ୍କନ Appraisal of Teachers, Performance Self Evaluation, ଅନୁଷ୍ଠାନର ବିକାଶ ଯୋଜନା Institutional Planning, ଗୋଷ୍ଠୀ ସମ୍ପର୍କ, ବିଦ୍ୟାଳୟର ପ୍ରଶାସନ, ଶିକ୍ଷାଦାନ, ସ୍ଥିତି, ଭିତ୍ତିଭୂମି, ଉପକରଣ ଓ ସଦୁପଯୋଗ ଆଦି ଅନେକ କଥା ରହିଛି। ଦୁଇଦିନିଆ ସମ୍ମିଳନୀର ଚାରୋଟି ଅଧିବେଶନ

ମଧ୍ୟରୁ ପ୍ରଥମ ଦିନର ପ୍ରଥମ ଓ ଦ୍ୱିତୀୟ ଦିନର ଦ୍ୱିତୀୟ ଅର୍ଥାତ୍ ଗୋଟିଏ ଦିନ ଉଦ୍‌ଘାଟନ ଏବଂ ଉଦ୍‌ଯାପନରେ କଟିଯାଏ। ଏପରି ସ୍ଥଳରେ ମାଧ୍ୟମିକ ଶିକ୍ଷାଳୟର ପ୍ରେରଣାର ଉତ୍ସ କିଏ ? ମାନବ ପୁଞ୍ଜି ରଚନା କରୁଛି କିଏ, ମାନବିକ ମୂଲ୍ୟବୋଧ ଓ ଆଧ୍ୟାତ୍ମିକ ଚେତନା ବୋଧହୁଏ ଅରଣ୍ୟରୋଦନ ହୋଇଯାଉଛି। ସମାଜ ଓ ବାହାରର ଶିକ୍ଷଣ ପ୍ରଭାବ ତଥା ଉତ୍ସଟିକୁ ସ୍କୁଲରେ ଉପଯୋଗ କରାଯାଇ ପାରୁନାହିଁ ଏବଂ ସ୍କୁଲ ମଧ୍ୟ ନିଜ ନିଜ ଅଞ୍ଚଳ ପାଇଁ ଦୀପସ୍ତମ୍ଭ ହେଉନାହିଁ, ଅଞ୍ଚଳର ବିକାଶ ପ୍ରତି ଧ୍ୟାନ ଦେଇପାରୁନାହିଁ। ଜ୍ଞାନର ଆଲୋକରେ ସମାଜ ଆଲୋକିତ ହେଉନାହିଁ। ବରଂ ସମାଜଠାରୁ ବିଚ୍ଛିନ୍ନ ହୋଇ ଗତାନୁଗତିକତାରେ ମଣ୍ଡିତ ହେଉଛି। ତେଣୁ ଉଦ୍ଦେଶ୍ୟ ସଚେତନ ନହେବା ସ୍ୱାଭାବିକ। ଦୁଃଖର କଥା ବେଳେ ବେଳେ ରାଜନୀତିର କ୍ରୀଡ଼ା ପୁତ୍ତଳିକା ହୋଇଯାଉଛି। କଳୁଷପଙ୍କରେ ପଦ୍ମ ଫୁଟିପାରୁ ନାହିଁ। ରାଜନୀତିକୁ ଡରି କୌଣସି କୌଣସି ଅନୁଷ୍ଠାନ ସକ୍ରିୟ ହୋଇପାରୁନାହିଁ। ଯାହାହିଁ ଥିଲା ସେହିପରି ଅତୁଟ ରହିବା ସତେ ଯେପରି ମାଧ୍ୟମିକ ଶିକ୍ଷାୟତନର ଧର୍ମ ହୋଇଯାଉଛି।

ପରୀକ୍ଷା ପରିଚାଳନା ଏପରି ଏକ ରାକ୍ଷସ ହୋଇଛି ଯେ ସାଧାରଣ ଶିକ୍ଷକ ପ୍ରମାଦ ଗଣୁଛନ୍ତି। ଏହା ଏକ ଶିକ୍ଷକ ସଂକଟରେ ପରିଣତ ହୋଇଛି। ଆଜି ଦ୍ରୌପଦୀ, ସୀତାଙ୍କ ପରୀକ୍ଷାଠାରୁ ଅଧିକ ସଂକଟଜନକ ହୋଇଛି ପରୀକ୍ଷା ପରିଚାଳନା। ନ୍ୟାୟ ନିକିତିକୁ ଧରି ଥିବାରୁ ପ୍ରତିଶ୍ରୁତିବଦ୍ଧ ପରୀକ୍ଷା କେନ୍ଦ୍ର କ୍ରମେ କ୍ରମେ ଦୁର୍ନୀତିଗ୍ରସ୍ତ ହୋଇଯାଉଛି। କେନ୍ଦ୍ର ମୂଲ୍ୟାୟନ ଅନେକ ସ୍ଥଳରେ ପ୍ରହସନରେ ପରିଣତ ହୋଇଯାଉଛି। ଆରକ୍ଷୀଙ୍କ ସହାୟତାରେ ଯେତେ କବାଟ କିଳିଲେ ସୁଦ୍ଧା ଚିରିକୁଟ ସହଜରେ ଯିବା ଆସିବା କରୁଛି। ପରୀକ୍ଷାର୍ଥୀମାନେ ଅନେକ ସ୍ଥଳରେ ନାନା କାରଣରୁ ନ୍ୟାୟ ନପାଇ ନ୍ୟାୟାଳୟ ଆଶ୍ରୟ ନେଉଛନ୍ତି। କ୍ଷୋଭର କଥା ଏହି ଯେ ସମାଜ, ଛାତ୍ର ଓ ଯୁବକଗୋଷ୍ଠୀ ପ୍ରଚଳିତ ପରୀକ୍ଷା ପଦ୍ଧତିରେ ଆସ୍ଥା ହରାଇଥିଲେ ହେଁ ଏହାକୁ ଯାବୁଡ଼ି ଧରାଯାଉଛି। ଏଥି ମଧ୍ୟରେ ପରୀକ୍ଷା ପଦ୍ଧତିରେ ସଂସ୍କାର ପାଇଁ ନାନା ଉଦ୍ୟମ କରାଯାଉଛି। ସତ, ଏସବୁ କିଛି କାମ୍ଟୁ କରୁନାହିଁ। ଯେଉଁମାନେ ଏହି ସଂସ୍କାରର ପ୍ରବର୍ତ୍ତକ, ସେମାନେ ଅନେକ ସ୍ଥଳରେ ପ୍ରତିବନ୍ଧକ ହୋଇଯାଉଛନ୍ତି। ଏପରି ଅସଂସ୍କାରୀୟ ପଦ୍ଧତିଟିକୁ ଛାଡ଼ିଦେଲେ କଅଣ ହୁଅନ୍ତା ? ପଠନ-ପାଠନ କଡ଼ାକଡ଼ି ଭାବରେ ଚାଲୁ। Cumulative Record Card ରହୁ। ଶିକ୍ଷକ ଅଭିଭାବକ ସ୍କୁଲର ପରୀକ୍ଷା ନିରୀକ୍ଷା କରନ୍ତୁ। ପରିଦର୍ଶନ ଯଥାର୍ଥ ହେଉ। ଶିକ୍ଷକମାନେ ଉତ୍ତରଦାୟୀ ହୁଅନ୍ତୁ ନିଜ ନିକଟରେ ଜ୍ଞାନପ୍ରଦାନରେ ଓ ସମାଜଠାରେ। ଦଶବର୍ଷର ଶିକ୍ଷାପରେ ଏହା ପ୍ରଥମ ବାହ୍ୟ ପରୀକ୍ଷା।

ଯଦି କୌଣସି ମାଧ୍ୟମିକ ବିଦ୍ୟାଳୟ ଆଦର୍ଶ ସ୍ଥାନୀୟ ହେବାର ପ୍ରତିଶ୍ରୁତି ଦିଅନ୍ତି ଏହାର ବିଚାର କରିବା ଉଚିତ । ବିନା ନୀରିକ୍ଷକରେ ପରୀକ୍ଷା ଓ ବିନା ପରୀକ୍ଷାରେ ବିଦ୍ୟାଳୟର ଏକ୍ସପେରୀମେଣ୍ଟ କରାଯିବା ଆବଶ୍ୟକ । ସ୍ୱାଧୀନତା ସହିତ ଆଙ୍କୁଶର ସୁପରିକଳ୍ପନା ଆମ ବିଚାର୍ଯ୍ୟ ହେବା ଉଚିତ ।

ଦୁଃଖର କଥା, ଆମ ଶିକ୍ଷାର ବହୁ ଆକାଙ୍କ୍ଷିତ S.U.P.W. Vocationalisation of education ଆଜି ବିଡ଼ମ୍ବନାରେ ପରିଣତ ହୋଇଛି । ମୌଳିକ ଶିକ୍ଷା ଆମ ହାତରେ ହେଲା ନାହିଁ । ଗାନ୍ଧୀ ଶିକ୍ଷାଦର୍ଶନ ପ୍ରତି ଆନୁଗତ୍ୟ ଦେଖାଇବାରେ ଉଲ୍ଲେଖ କରି ଆମେ ଏହି ଦୁଇଟିକୁ ସ୍ଥାନ ଦେଇଥିଲୁ । ଈଶ୍ୱରଭାଇ ପଟେଲ ଓ ଆଦିଶେଷାୟ୍ୟ କମିଟି ଦୁଇଟି ସୁପାରିଶ କରିଥିଲେ । କିଛି କାଗଜଚାଷ କରାଗଲା । ଅର୍ଥବ୍ୟୟ ମଧ୍ୟ ହେଲା । ଦେଶବାସୀଙ୍କୁ ପ୍ରତିଶ୍ରୁତି ଦିଆଗଲା । ଛାତ୍ର ସମାଜକୁ ଲୋଭ ଦେଖାଗଲା । ହେଲା କଅଣ ? ଆମେ ସେଇ ପୋଥିବାଇଗଣ ଫଳେଇଲୁଁ । ପୁସ୍ତକକୀଟ ହେଲେ ଆମପିଲାଏ । ଶୁଆ ପାଲଟି ଗଲେ । ପୁଣି ଦଶ ଓ ବାର ବର୍ଷର ଶିକ୍ଷାପରେ ଛାତ୍ରମାନେ କେତେକାଂଶରେ ଶ୍ରମିକ ଶ୍ରେଣୀରେ Labour Force ଯୋଗଦେବାର କଥା ତାହା ହୋଇପାରିଲା ନାହିଁ । ଧୂଆମୂଳା ଓ ଅଧୂଆମୂଳାର ବିଚାର ରହିଲା ନାହିଁ । ବିଶ୍ୱବିଦ୍ୟାଳୟ ଦ୍ୱାରରେ ନାହିଁନଥିବା ଭିଡ଼ । ଅଧିକନ୍ତୁ ପିଲାମାନେ ଯେ ଶ୍ରମିକଶ୍ରେଣୀରେ ଯୋଗଦିଅନ୍ତେ ତଦନୁସାରେ ସମାଜରେ କର୍ମନିଯୁକ୍ତିର ବ୍ୟବସ୍ଥା ହେଲା ନାହିଁ । ନିଯୁକ୍ତି ଓ ନିଯୁକ୍ତିଦାତାଙ୍କ ଆବଶ୍ୟକତା ବା ବରାଦ ଅନୁସାରେ ପାଠ୍ୟକ୍ରମ କାର୍ଯ୍ୟକାରୀ କରାଗଲା ନାହିଁ । ଏହି ବିଷୟରେ ଗ୍ରାମାଭିମୁଖୀ କରିବାର ଶିକ୍ଷା ବ୍ୟବସ୍ଥା ରହିଲା ନାହିଁ ।

ଶିକ୍ଷା ବ୍ୟବସ୍ଥାରେ ଶ୍ରେଣୀ ଏକରୁ ଶ୍ରେଣୀ ବାର ଓ ଶ୍ରେଣୀ ଦଶ ଯାଏ ଗୋଟିଏ ଗୋଟିଏ ଶିକ୍ଷାୟତନ ନାହିଁ କହିଲେ ଚଳେ । ଯୁକ୍ତ ଦୁଇ ଶ୍ରେଣୀ ବିଦ୍ୟାଳୟ, ବିଦ୍ୟାଳୟ ପର୍ଯ୍ୟାୟରେ ନରହି ମହାବିଦ୍ୟାଳୟ ପ୍ରବେଶର ପ୍ରଥମ ସୋପାନ ହୋଇଯାଉଛି । ଦଶ ଓ ବାରବର୍ଷିଆ ଶିକ୍ଷାୟତନରେ ସମନ୍ୱିତ ପାଠ୍ୟକ୍ରମ କେବଳ କଥାରେ ରହିଯାଉଛି । ଜ୍ଞାନବିଜ୍ଞାନରେ ବିସ୍ଫୋରଣ, ସମାଜର ପରିବର୍ତ୍ତିତ ଆବଶ୍ୟକତା ଆଦି ଯୋଗୁଁ ପାଠ୍ୟକ୍ରମ ଏବଂ ପାଠ୍ୟପୁସ୍ତକର ନିରନ୍ତର ପୁନର୍ଗଠନ କରାଯାଇପାରୁନାହିଁ । ବ୍ୟକ୍ତି, ଦେଶ ଓ ବିଶ୍ୱର ସମସ୍ୟାକୁ ପାଠ୍ୟକ୍ରମରେ ଖୁନ୍ଦି ଦେବାର ସ୍ୱାଧୀନତା ଶିକ୍ଷକଙ୍କର ନାହିଁ । ଯାହା ପରୀକ୍ଷାର ଅନ୍ତର୍ଭୁକ୍ତ ନୁହେଁ । ତାହା ଯେତେ ଆବଶ୍ୟକ ମନେ ହେଲେ ହେଁ ସେଥିରୁ ପଦଟିଏ କଥା ଶ୍ରେଣୀରେ ପଢ଼ାଇବାକୁ ଶିକ୍ଷକଙ୍କର ବେଳ ନଥାଏ, କିମ୍ବା ସେ ଏହାକୁ ନିୟମବହିର୍ଭୂତ ମନେ କରନ୍ତି ।

ମୁଦାଲିଅର କମିଶନ ମାଧ୍ୟମିକ ଶିକ୍ଷାର ସ୍ତରକୁ ଦୁର୍ବଳତା ବୋଲି ବର୍ଣ୍ଣନା କରିଥିଲେ । ଏଥିମଧ୍ୟରେ କୋଠାରୀ କମିଶନ ସମସ୍ତ ଶିକ୍ଷାପରେ ବିଶ୍ଳେଷଣ କରି ବହୁ ସୁପାରିଶ କରିଛନ୍ତି । ଜାତୀୟ ଶିକ୍ଷାନୀତି ୧୯୮୬ରେ ଘୋଷିତ ହୋଇଛି । ସମଗ୍ର ଶିକ୍ଷା ଓ ବିଶେଷ କରି ମାଧ୍ୟମିକ ଶିକ୍ଷା କେତେଦୂର ନିଜ ଉଦ୍ଦେଶ୍ୟ ପୂର୍ଣ୍ଣ କରି ପାରିଛନ୍ତି ଏହା ବିଚାର୍ଯ୍ୟ । ପ୍ରାଥମିକ ଶିକ୍ଷାର ସାର୍ବଜନୀନୀ କରଣ ଏବେ ବି ଅପୂର୍ଣ୍ଣ ରହିଛି । ସମସ୍ତଙ୍କ ପାଇଁ ଶିକ୍ଷାର (EFA) ଆହ୍ୱାନ ଦଣ୍ଡାୟମାନ ଦୁଇ ହଜାର ମସିହାରେ ସମାପ୍ତି ଯାଏଁ । ଆଜିର ନାଗରିକ ପାଇଁ ସର୍ବନିମ୍ନ ଶିକ୍ଷାର ସ୍ତର ଆଉ ଚଉଦ ବର୍ଷ ବୟସ ଯାଏ ସୀମିତ ହୋଇନାହିଁ । ଶିକ୍ଷାର ଗୁଣାତ୍ମକ ବିକାଶ ଆମ ପାଇଁ ବହୁ ଦୂରରେ ଥିବାର ଅନୁମାନ କରାଯାଏ । ଏହି ପରିପ୍ରେକ୍ଷୀରେ ମାଧ୍ୟମିକ ଶିକ୍ଷାୟତନର ନେତୃତ୍ୱ ସମାଜପାଇଁ ଏକାନ୍ତ ଆବଶ୍ୟକ ପଡୁଛି । ରାଷ୍ଟ୍ରୀୟ ଅଖଣ୍ଡତା, ଦେଶଭକ୍ତି, ଜନସଂଖ୍ୟା ବିସ୍ଫୋରଣ, ପରିବେଶର ସୁରକ୍ଷା, ସାକ୍ଷରତା, ଜାତୀୟ ଚରିତ୍ର ନିର୍ମାଣ, ନାରୀଜୀବନର ସମସ୍ୟା ଆଦି ପାଇଁ ଜାତୀୟ ସ୍ତରରେ ନୀତି ଘୋଷିତ ହୋଇଛି । ଆମ ପାଠ୍ୟପୁସ୍ତକରେ ଏସବୁ ଭଣାଅଧିକେ ସ୍ଥାନ ପାଇଛି । ମାଧ୍ୟମିକ ଶିକ୍ଷାୟତନ ମଧ୍ୟମରେ ରହି ନୀରବ ରହିବ କି ? କୃତ ସଂକଳ୍ପ ରହି କର୍ତ୍ତବ୍ୟନିଷ୍ଠ ହେବ । ଏକ ପକ୍ଷରେ ପ୍ରାଥମିକ ଶିକ୍ଷାର ବିକାଶ ପାଇଁ ନେତୃତ୍ୱ ନେବ ଏବଂ ଅପରପକ୍ଷରେ ଉଚ୍ଚତର ଶିକ୍ଷାର ମାନୋନ୍ନତି ପାଇଁ ବିକଶିତ ଶିକ୍ଷାର୍ଥୀ ପ୍ରସ୍ତୁତ କରିବା । ଦୁଇ ଆଡ଼କୁ ଉତ୍କଣ୍ଠାର ଆହ୍ୱାନ, ଏକ ଦିଗରେ ସଂପ୍ରସାରଣ ଓ ଅନ୍ୟ ଦିଗରେ ଗ୍ରହଣୀୟତାର ପ୍ରମାଣ । ଫଳରେ ତଳରୁ ତାଳୁ ପର୍ଯ୍ୟନ୍ତ ଛାତ୍ରବତ୍ସଳତା, ସତ୍ୟନିଷ୍ଠା, ସମାଜ ସେବା ଓ କର୍ତ୍ତବ୍ୟ ପରାୟଣତା ଜଣେ ଶିକ୍ଷାର୍ଥୀ, ଶିକ୍ଷାୟତନ, ଶିକ୍ଷକ, ଶିକ୍ଷାର ସ୍ତର ଓ ଅଞ୍ଚଳରେ ସୀମିତ ନରହି ସର୍ବବ୍ୟାପୀ ହେବ ।

□□□

## ଜଣେ ସାକ୍ଷରତା କର୍ମୀର କଲମରୁ

ସେପ୍‌ଟେମ୍ବର ଆଠ ତାରିଖ ହେଉଛି ବିଶ୍ୱ ସାକ୍ଷରତା ଦିବସ । ସାରା ବିଶ୍ୱର ସବୁ ଦେଶରେ ଏହା ପାଳନ କରାଯାଏ । ଛୋଟ ବଡ଼ ସବୁ ଦେଶ ପ୍ରତିଜ୍ଞା କରନ୍ତି । ନୂଆ ନୂଆ ଯୋଜନା ହାତକୁ ନିଅନ୍ତି । ବର୍ଷସାରା ଏହି ଅନୁସାରେ କାର୍ଯ୍ୟ କରନ୍ତି । ପୁଣି ସେପ୍‌ଟେମ୍ବର ଆଠ ତାରିଖ ଆସେ । ଯୋଜନାର ସଫଳତାକୁ ବିଚାର

କରାଯାଏ। ସାକ୍ଷରତାର ଅଗ୍ରଗତିକୁ ପରୀକ୍ଷା କରାଯାଏ। ଏହିପରି ଚାଲିଛି। କଥାହେଲା, ସମସ୍ତ ବିଶ୍ୱରୁ ନିରକ୍ଷରତା ହଟିଯିବ। ସବୁ ଲୋକ ସାକ୍ଷର ହେବେ। ବିଭିନ୍ନ ଦେଶର କଥା ସମସ୍ତେ ଜାଣିବେ। ଉନ୍ନୟନର ପ୍ରକ୍ରିୟା ଜୋର ଚାଲିବ। ସମସ୍ତେ ସେଥିରେ ମାତିବେ। ସମସ୍ତଙ୍କ ସହଯୋଗ ଏଥିରେ ରହିବ। ସବୁ ଦେଶ ଉନ୍ନତ ହେବ। ସୁଖ, ସମୃଦ୍ଧି ଓ ଶାନ୍ତି ସମସ୍ତେ ହାସଲ କରିବେ।

ଆଜିକୁ ୨୭ ବର୍ଷ ହେଲାଣି। ୧୯୬୫ ମସିହାରେ ଇରାନର ତେହେରାନଠାରେ ସବୁ ଦେଶର ଶିକ୍ଷାମନ୍ତ୍ରୀମାନେ ଏକତ୍ର ହୋଇଥିଲେ। ମିଳିତ ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ସଂଘ (ଇଉନେସ୍କୋ) ଏହାର ଆୟୋଜନ କରିଥିଲେ। ସେ ବର୍ଷ ସେପ୍‌ଟେମ୍ବର ମାସର ଆଠ ତାରିଖ ଦିନଟିକୁ ବିଶ୍ୱ ସାକ୍ଷରତା ଦିବସ ଭାବରେ ପାଳନ କରିବାକୁ ପ୍ରସ୍ତାବ ନେଲେ। ତଦନୁଯାୟୀ ୧୯୯୬ ମସିହାଠାରୁ ବିଶ୍ୱ ସାକ୍ଷରତା ଦିବସ ପାଳନ କରାଯାଉଛି। ନିରକ୍ଷରତା ଏକ ଭୟାବହ ଶତ୍ରୁ। ମାନବ ସମାଜକୁ କାବୁ କରିଛି। ଅଭାବ ଅନାଟନରେ ବିଶ୍ୱର ବହୁଲୋକ ସଢୁଛନ୍ତି। ସେମାନେ ତ ନିରକ୍ଷର, ତେଣୁ ସେମାନଙ୍କୁ ବାଟ ଦିଶୁନାହିଁ। ଆଲୋକ ପାଉନାହାନ୍ତି। ଅନ୍ଧାରରେ ପଡ଼ିଛନ୍ତି। ଭାଗ୍ୟବାଦୀ ହେଉଛନ୍ତି। ନିରାଶ ହୋଇ କାଳ କଟାଉଛନ୍ତି। ଶୋଷଣ କଷଣର ଶୀକାର ହୋଇ ରହିଛନ୍ତି। ମୁଣ୍ଡ ଗୁଞ୍ଜିବାକୁ ଚାଳ ନାହିଁ। ପେଟପୂରା ଖାଦ୍ୟ ମିଳୁନାହିଁ। ଦେହ ଢାଙ୍କିବାକୁ ଖଣ୍ଡେ କପଡ଼ା ନାହିଁ। ଅକ୍ଷର ଦିଇଟା କଥା କିଏ ପଚାରେ ? ତେଣୁ ଏଥିପାଇଁ ବିଶ୍ୱ ସଂଗଠନ ବିବ୍ରତ। ଇଉନେସ୍କୋର ଚିନ୍ତା ପ୍ରକାଶ ପାଇଛି। ୧୯୪୯ ମସିହାରେ ଡେନ୍‌ମାର୍କର ଏଲ୍‌ସିନୋରଠାରେ, ୧୯୬୦ ମସିହାରେ କାନାଡ଼ାର ମଣ୍ଟ୍ରିଲ୍‌ଠାରେ, ୧୯୬୫ ମସିହାରେ ତେହେରାନଠାରେ ଓ ୧୯୭୨ ମସିହାରେ ଜାପାନର ଟୋକିଓଠାରେ ଇଉନେସ୍କୋ ଏ ଦିଗରେ ବିଚାର କରିଛନ୍ତି। ବିଭିନ୍ନ ପନ୍ଥା ଓ ଯୋଜନା ସ୍ଥିର କରାଯାଇଛି। ଏବେସୁଦ୍ଧା ବହୁ ବିଶେଷଜ୍ଞଙ୍କୁ ନେଇ ଆଲୋଚନା ଚାଲିଛି। ବିଭିନ୍ନ ଦେଶରେ ଚର୍ଚ୍ଚା ହେଉଛି। ନିରକ୍ଷରତା ଏକ ବ୍ୟାଧି। ଏହା ଏକ କଳଙ୍କ। ଏହାର ମୂଳଚେର ଉପାଡ଼ି ଦେବା ସହଜ ହେଉନାହିଁ। ଗରିବ ଲୋକ ଅଧିକରୁ ଅଧିକ ଗରିବ ହେଉଛନ୍ତି। ତଳକୁ ତଳକୁ ଖସିଯାଉଛନ୍ତି। ବିଭିନ୍ନ ଦେଶର ମନିଷୀମାନେ ଏଥିପାଇଁ ଚିନ୍ତିତ। ଆମ ଦେଶର ବାପୁ ମହାତ୍ମାଜୀ ବିବ୍ରତ ହୋଇ କାର୍ଯ୍ୟକ୍ରମମାନ ହାତକୁ ନେଇଥିଲେ। ଏହାସତ୍ତ୍ୱେ ଜନସଂଖ୍ୟା ହୁ ହୁ ବଢୁଛି। ଏହା ଫଳରେ ନିରକ୍ଷର ଲୋକଙ୍କ ସଂଖ୍ୟା ବଢ଼ିବାରେ ଚାଲିଛି। ଲୋକଙ୍କ ହେତୁ-ଚେତା ଆସିଲେ ସିନା ସେମାନେ ସଚେତନ ହୁଅନ୍ତେ। ଏହାଫଳରେ ସେମାନେ ବଡ଼ ସଂସାର କରୁଛନ୍ତି। ପିଲାଛୁଆ ଅଧିକ ହେବାରୁ ଅଧିକ ଦରିଦ୍ର ହେବାକୁ ପଡୁଛି।

ଯାହା ଉନ୍ନୟନ କାମ ହେଉଛି ନିରକ୍ଷରତା ହେତୁ ଏହାର ଉପକାର ଲୋକମାନେ ପାଇ ପାରୁନାହାନ୍ତି । ତେଣୁ ସାକ୍ଷରତାକୁ ଉନ୍ନୟନର ସାଧନ ଓ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଛି । ଅର୍ଥାତ୍ ସାକ୍ଷରତାର ପ୍ରସାର କରାଗଲେ ଉନ୍ନୟନ ଅଧିକ ହେବ ଓ କ୍ଷିପ୍ରତର ହେବ । ବିକାଶ ପ୍ରକ୍ରିୟା ବଢ଼ିଲେ ଲୋକମାନେ ସ୍ୱଚ୍ଛଳ ଓ ସାକ୍ଷର ହେବେ ।

ଏହି ଦୃଷ୍ଟିରୁ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ ଆମ ଦେଶରେ ଆରମ୍ଭ କରାଗଲା । ସେଥିରେ ସାମାଜିକ ଶିକ୍ଷାର ଅଙ୍ଗ ଭାବରେ ପ୍ରୌଢ଼ ଶିକ୍ଷା ଚାଲୁ କରାଗଲା । କୃଷକ ସାକ୍ଷରତା କାର୍ଯ୍ୟକ୍ରମ ହାତକୁ ନିଆଗଲା । ଏହା ଫଳରେ ପ୍ରୌଢ଼ଶିକ୍ଷାକୁ କ୍ରିୟାନ୍ୱୟୀ (Functional) କରାଗଲା । ୧୯୭୮ ମସିହାଠାରୁ ଗାନ୍ଧୀ ଜୟନ୍ତୀ ଦିନରୁ ସାକ୍ଷରତା ଯୋଜନାକୁ ବିଧିବଦ୍ଧ ରୂପ ଦିଆଯାଏ । ୧୯୮୬ରେ ଜାତୀୟ ଶିକ୍ଷାନୀତି ପ୍ରଣୟନ କରାଯାଇ ପ୍ରୌଢ଼ ଶିକ୍ଷାକୁ ଜନଜୀବନ ସହିତ ସଂଶ୍ଳିଷ୍ଟ କରାଯାଇଛି । ରାଜନୈତିକ ସମର୍ଥନ ମିଳିଛି । ଜାତୀୟ ଓ ରାଜ୍ୟ ସ୍ତରରେ ସାକ୍ଷରତା ମିଶନ ପ୍ରାଧିକରଣ ସୃଷ୍ଟି କରି ଦେଶବ୍ୟାପୀ ସମୟ ନିର୍ଦ୍ଧିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ବର୍ତ୍ତମାନ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ ଭାବରେ ଏକ ବଳିଷ୍ଠ ଜନ ଆନ୍ଦୋଳନର ରୂପ ନେଇଛି ।

ଏବେ ଆମେ ବିଶ୍ୱ ସାକ୍ଷରତା ଦିବସ ପାଳନର ଅବସରରେ ଏହା ସ୍ମରଣ କରିବାର କଥା ଯେ ଗତ ଅଗଷ୍ଟ ୯ ଠାରୁ ଆମ ଦେଶରେ ଭାରତ ଛାଡ଼ ଆନ୍ଦୋଳନର ଏକ ବର୍ଷବ୍ୟାପୀ ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛୁଁ । ଦେଶକୁ ସ୍ୱାଧୀନ କରିବା ପାଇଁ ସଂଗ୍ରାମୀମାନଙ୍କ ଆପ୍ରାଣ ସଂଗ୍ରାମ ସ୍ମରଣ କରିବା ଆମ ପାଇଁ ଗର୍ବ ଓ ଗୌରବର କଥା । ସେମାନଙ୍କ ତ୍ୟାଗ ଓ ବଳିଦାନ ଆମ ଇତିହାସର ଗୌରବମୟ ଅଧ୍ୟାୟ । ଭାରତ ଛାଡ଼ ଡାକରା ଦିଆଯାଇଛି । ଏଥିପାଇଁ "କର ବା ମର" ଶପଥ ମହାତ୍ମା ଗାନ୍ଧୀ ନିଜେ ନେଇଛନ୍ତି ଓ ଦେଶବାସୀଙ୍କୁ ଦେଇଛନ୍ତି । ଏପରି ପ୍ରାଣମୂର୍ଚ୍ଛା ସଂଗ୍ରାମ ଫଳରେ ଦେଶ ପରାଧୀନତାର ଶୃଙ୍ଖଳରୁ ମୁକ୍ତ ହୋଇଛି । ଆମେ ଆଜି ସ୍ୱାଧୀନ ଦେଶର ନାଗରିକ । ଆମେ ଏକ ମହାନ୍ ଦେଶର ଦାୟାଦ । ଏପରି ଗର୍ବ ଆସୁଛି, କାରଣ ଆମେ ଆମ ଦେଶର ଶାସକ ଓ ଶାସିତ । ସେପରି ସ୍ଥଳରେ ନିରକ୍ଷରତାରୁ ଦେଶବାସୀ ମୁକ୍ତ ହେବେ, ଆଜି ଏହି ସଂଗ୍ରାମର ଆମେ ସମ୍ମୁଖୀନ । ଏହା ହିଁ ଦେଶର ସାଂସ୍କୃତିକ ଓ ଅର୍ଥନୈତିକ ସ୍ୱାଧୀନତା ସଂଗ୍ରାମ । ନିରକ୍ଷରତା ବିରୁଦ୍ଧରେ ସଂଗ୍ରାମ । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳରେ ଯେଉଁ ଉତ୍ସର୍ଗ ପଣିଆ ଆମ କଥା, କାମ ଓ ଚିନ୍ତାରେ ପ୍ରକାଶ ପାଇଥିଲା ଆଜି ତାହା ହିଁ ଏକାନ୍ତ ଆବଶ୍ୟକ । ଆମେ ଓ ଆମ ଦେଶବାସୀ ସାକ୍ଷର ହୋଇପାରିଲେ ଆମେ

ଅର୍ଥନୈତିକ ଓ ସାଂସ୍କୃତିକ ସଂଗ୍ରାମରେ ବିଜୟୀ ହେବା। ନିରକ୍ଷରତା ହେତୁ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ଆମକୁ ଗ୍ରାସ କରିଅଛି। ବିଜ୍ଞାନ ସମ୍ମତ ଦୃଷ୍ଟିକୋଣ ଆମର ନାହିଁ। ଆମ ଅର୍ଥନୀତି ମାନ୍ଦା ହୋଇଛି। ଆମେ ଆତ୍ମନିର୍ଭରଶୀଳ ହେବା। ଗଣତାନ୍ତ୍ରିକ ଜୀବନ ଯାପନ କରିବା। ଏସବୁ ଆଚରଣଗତ ଓ କୌଶଳଗତ ପରିବର୍ତ୍ତନ ଆମେ ହାସଲ କରିବା। ଏହା ଏକ ବିପ୍ଳବ। ଯୁଦ୍ଧ ଭିତ୍ତିରେ ଲଢ଼ି ନିରକ୍ଷରତାର ମୂଳୋତ୍ପାଟନ କରିବା। ସାକ୍ଷରତା ଆଣିଦେବ ମାନସିକ ତଥା ଆତ୍ମିକ ବିପ୍ଳବ।

ଆଉ ଗୋଟିଏ କଥା। ସୁଖର ସମ୍ବାଦ ଓ ଶୁଭଦାୟକ ସନ୍ଦେଶ। ଆନ୍ତର୍ଜାତିକ ସାକ୍ଷରତା ଦିବସର ମାତ୍ର ଦୁଇଦିନ ପୂର୍ବରୁ ଗୁରୁ ଦିବସ, ୧୯୯୨ ପାଳନ କରାଯାଇଥିଲା। ଏହି ଦିନ ଆମ ରାଜ୍ୟର ସମସ୍ତ ଶିକ୍ଷକ ସଂଗଠନ ଓ ଶିକ୍ଷକ ଏକତ୍ର ହୋଇଥିଲେ। ପ୍ରାଥମିକ ଶିକ୍ଷାଠାରୁ ମହାବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ସବୁ ସ୍ତରର ସରକାରୀ ଓ ଅଣ ସରକାରୀ ଶିକ୍ଷକ ସଂଗଠନ ଯୋଗ ଦେଇଥିଲେ। କଟକର ଐତିହାସିକ ବାରବାଟୀ ଷ୍ଟାଡ଼ିଅମ୍‌ଠାରେ ଏହି ଐତିହାସିକ ସଭା ହୋଇଥିଲା। ଶିକ୍ଷାରେ ଏକ ବୈପ୍ଳବିକ ପଦକ୍ଷେପ ପାଇଁ ସବୁ ଶ୍ରେଣୀ ଶିକ୍ଷକ ପ୍ରତିଜ୍ଞାବଦ୍ଧ ହୋଇଥିଲେ। ସେ ଦିନ ଅପରାହ୍ନରେ ରାଜ୍ୟର ମୁଖ୍ୟମନ୍ତ୍ରୀ ମହୋଦୟଙ୍କ ଉପସ୍ଥିତିରେ ଶିକ୍ଷାକୁ ପ୍ରାଥମିକ ସ୍ତରରେ ସାର୍ବଜନୀନ କରିବା ପାଇଁ ଶିକ୍ଷକମାନେ ସଂକଳ୍ପ ନେଇଥିଲେ ଓ ମୁଖ୍ୟମନ୍ତ୍ରୀ ମହୋଦୟଙ୍କ ହାତରୁ ଜ୍ଞାନଦୀପ ଗ୍ରହଣ କରିଥିଲେ। ଦୁଇ ହଜାର ମସିହା ସୁଦ୍ଧା ରାଜ୍ୟର ଚଉଦ ବର୍ଷ ବୟସର ସମସ୍ତ ଛାତ୍ରଛାତ୍ରୀଙ୍କୁ ଶିକ୍ଷାର ପରିସରଭୁକ୍ତ କରିବା, ପାଠ ତ୍ୟାଗୀ ପିଲାଙ୍କୁ ଛାଡ଼ି ନଦେବା ଓ ସର୍ବନିମ୍ନ ଜ୍ଞାନ ସ୍ତର ଯେପରି କାର୍ଯ୍ୟକାରୀ ହୁଏ- ଏହି ତିନୋଟି ଦିଗରେ ଶିକ୍ଷାର ବିକାଶ କରିବା। ଏହା ଏକ ଜାତୀୟ ସମସ୍ୟା ଓ ଆମ ସମ୍ବିଧାନର ଅସଂପୂର୍ଣ୍ଣ କାର୍ଯ୍ୟ। ଏଥିପାଇଁ ଅନେକ କମିଟି, କମିଶନ, ଯୋଜନା, ଆଲୋଚନା ଆଦି କରାଯାଇଛି। କିନ୍ତୁ ଏହି ଦାୟିତ୍ୱକୁ ଶିକ୍ଷକ ସଂଗଠନ ଓ ଶିକ୍ଷକମାନେ ମୁଣ୍ଡାଇବା ସଂପୂର୍ଣ୍ଣ ଅଭିନବ। ଏଥିପାଇଁ ରାଜ୍ୟସାରା ପଦଯାତ୍ରା କରାଯାଇ ଜନଜାଗରଣ କରାଯିବ। ଏଥିପାଇଁ "ସମସ୍ତଙ୍କ ପାଇଁ ଶିକ୍ଷା"ର ଆନ୍ତର୍ଜାତିକ ଡାକରା ଦିଆଯାଇଛି। ଆଜି ଏହି ବିଶ୍ୱ ସାକ୍ଷରତା ଦିବସ ପାଳନ ଅବସରରେ ଏହା ଶୁଭଦ ଓ ସହାୟକ। ଏହା କାର୍ଯ୍ୟକାରୀ ହେଲେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶ ହେବ ଓ ସବୁ ପିଲା ଚଉଦ ବର୍ଷ ବୟସର ହେବା ଯାଏଁ ଶିକ୍ଷା ଗ୍ରହଣ କରିବେ। ତାହାହେଲେ ପାଠତ୍ୟାଗୀ ଓ ପ୍ରାଥମିକ ସ୍କୁଲକୁ ଆସୁନଥିବା ପିଲା ରହିବେ ନାହିଁ ବା ସେମାନଙ୍କ ଯୋଗୁଁ ପ୍ରତିବର୍ଷ ନିରକ୍ଷର ଲୋକଙ୍କ ସଂଖ୍ୟା

ଯେ ବଢ଼ି ଯାଉଥିଲା ଓ ସାକ୍ଷରତା ଅଭିଯାନର ପ୍ରତିବନ୍ଧକ ହେଉଥିଲା ଏହା ହେବନାହିଁ । ତେଣୁ ନିରକ୍ଷରତାକୁ ଦୂର କରିବାର ପ୍ରୟାସ ସହଜ ହେବ ।

ଏସବୁ ଆମ୍ଭମାନଙ୍କ ପାଇଁ ଆଶା ସଂଚାର କରେ । ସାକ୍ଷରତା ଅଭିଯାନ ଯେ ସଫଳ ହେବ ଏହି ବିଶ୍ୱାସ ଆସେ । "ସମସ୍ତଙ୍କ ପାଇଁ ଶିକ୍ଷା"ର ଅଭିଯାନ ଚାଲିଲେ ଓ ଏଥିପାଇଁ ଜନଚେତନା ବଢ଼ିଲେ ନିରକ୍ଷରତା ଦୂରୀକରଣ ଆୟାସ ସାଧ୍ୟ ହେବ ନାହିଁ ।

ଆମେ ସମସ୍ତେ ସାକ୍ଷରତା କର୍ମୀ । ଆମ ବିଶ୍ୱାସ ଓ ଭରସା ଉଜ୍ଜ୍ୱଳ ହେବା ଉଚିତ୍ । ବଡ଼ କଥା ହେଉଛି ଯେ ଆମ ଭିତରେ ବଡ଼ ସାନର ଭେଦ ରହିବା ଉଚିତ୍ ନୁହେଁ । ଦେଶ ମାତୃକାର ସେବା ପାଇଁ ଆମେ ସକଳ ଭେଦ ଛାଡ଼ି ସଂଗ୍ରାମୀ ମନୋଭାବରେ ଏକଯୋଟ ହୋଇ କାମ କରିଯିବା ।

□□□

# କିତିର କଥା

ନିଜ ଶକ୍ତି ହିଁ ଜାତୀୟ ସମ୍ବଳ । ଏହାର ବିକାଶ ଏକାନ୍ତ ଆବଶ୍ୟକ । ଏଥିପାଇଁ ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ଜନଶିକ୍ଷାକୁ ଅଗ୍ରାଧିକାର ଦିଆଯାଉଛି । ଜନଶିକ୍ଷାର ସଫଳତା ପାଇଁ ଜନ ଜାଗରଣ ଅପରିହାର୍ଯ୍ୟ । ଏହା ଏକ ଆଲୋଚନାର ରୂପ ନେବ । ଫଳତଃ ଜନଶିକ୍ଷା ପାଇଁ ଯାହା କିଛି ବାଧାବିଘ୍ନ ରହିଛି, ସେ ସବୁ ଦୂର କରାଯିବ । ଜନଶିକ୍ଷା ମଧ୍ୟ ଏକ ଆନ୍ଦୋଳନରେ ପରିଣତ ହେବ । ଏହା ଜନଜୀବନର ଯଥାର୍ଥ ବିକାଶ କରି ପାରିବ । ଏଥିଯୋଗୁଁ ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ଜନଜାଗରଣ କ୍ଷିପ୍ରତର ହୋଇ ପାରିବ ।

କଥାଟିଏ ଶୁଣିବା, କିତିର କଥା । ସେ ଆଜି କୁଳ ଭୁଆସୁଣୀ, ବରଷ ଦୁଇ ହେଲାଣି । ସେ ଘର ସଂସାର କରୁଛି । ତାପାଇଁ ସମସ୍ତଙ୍କ ତୁଣ୍ଡରେ ସାବାସ୍ ପଦ । ଭଲ ଝିଅଟା । ବାପଘରେ ଯେପରି, ଶାଶୁଘରେ ସେପରି । ଦୁହିତା ଦୁଇ କୁଳକୁ ହିତା । ସେପରି ଝିଅଟିଏ କିତି । ଗାଁଟା ସାକରେ ଏପରି ନଥିବେ । ବାପଘରେ ଗୋଟିଏ ଝିଅ, ଶାଶୁଘରେ ବି ଗୋଟିଏ ବୋହୂ । ବାପାଙ୍କର ଗେହ୍ଲା ଝିଅ, ଶାଶୁଙ୍କର ଆଗ ଡାକର ବୋହୂ । ଏଠି ଦେଖ ବା ସେଠି ଖୋଜ । ସବୁଠି ଜଣେ, ସେ କିତି । ସବୁ ବୁଝେ, ସବୁ କିଛି ସମ୍ଭାଳି ନିଏ । ସେ ବାପାଙ୍କ ମୁହଁରୁ ଶୁଣିଛି, ଅବଧାନେ ପାଞ୍ଚି

ଦେଖି ଗଣା ପୁଚ୍ଛା କଲେ, ନା ରଖିଲେ କୀର୍ତ୍ତି । କହିଲେ, "ସୁଲକ୍ଷଣୀ ହେବ, ଅଇସୁଲକ୍ଷଣୀ ହୋଇ କାଳ କାଟିବ । ଦାନା କନାରେ ଘର ସଂସାର ପୂରି ଉଠିବ ।" ସମସ୍ତଙ୍କ ମନକୁ ପାଇଲା । ମା ବାପା ଅପାଠୁଆ, ହେଲେ କଣ ହେବ, ସେମାନେ ବି ଭଲିଗଲେ । କିନ୍ତୁ ପାଟିରେ ନାଁଟା କଣ ସହଜରେ ପଶେକି ? କୀର୍ତ୍ତି ବଦଳରେ କିରିତି ଓ ସେଠୁ କିତି ରହିଗଲା । ଶାଶୁଘରେ ସେଇ ନାଁ ଚଳିଲା ।

କିତିର ପୂରା ମନେଅଛି ଆଖିରେ ଜଳ ଜଳ ଦିଶୁଛି । ପିଲା କାଳରେ ସେ ସ୍କୁଲକୁ ଯାଇଛି । ପାଠ ପଢ଼ିଛି । ବହି ବସ୍ତାନୀ ଧରିଛି । ସିଲଟକୁ ହାତରେ ଝୁଲାଇଛି । ଭଜନ ବୋଲୁଛି । କଣ୍ଠ ମଧୁର । ବାଟୋଇଙ୍କ ମନ ଲାଖିଯାଏ । କାନ ଡ଼େରି ଶୁଣନ୍ତି । କିତି ଠାରୁ ଭଜନ ନଶୁଣିଲେ ବାପା ମାଙ୍କୁ ନିଦ ହୁଏ ନାହିଁ । ମାଳିର ଫୁଲ ଊଣା ହୋଇପାରେ, କିନ୍ତୁ କିତିର ସ୍କୁଲଯିବା ଦିନଟିଏ ବି ବନ୍ଦ ହୁଏ ନାହିଁ । ଖରା, ବରଷା, ବତାସ, ବଢ଼ି, ସବୁଦିନେ ଘଣ୍ଟି ବାଜେ ତ, କିତି ହାଜର । ତାର ମନେଅଛି, ଦିନେ କଣେ ସ୍କୁଲ ସାର୍ ଗୋଟିଏ ପୁଅ ପିଲାକୁ ନିର୍ଘୁମ୍ ବାଡ଼େଇଲେ । ବଡ଼୍ ପିଲାଟା, ହେଲେ କଣ ହେବ, ନୋଳା ବସିଗଲା । ଲହୁ ଲୁହାଣ ହୋଇଗଲା । ସେ କୁଆଡ଼େ ଝିଅ ପିଲାଙ୍କୁ ଖଡେଇ ହୁଏ । ଟାଇ ଟାପରା କରେ । ସାରେ କେତେଥର ତାଗିଦ୍ କରିଛନ୍ତି । ଖୋଇ ସହଜରେ ଯାଏ କି ? ଯେତେ ମାଠିବୁ ମାଠ, ସେ ସେହି ଦରପୋଡ଼ା କାଠ । ସେ ପିଲାଟି ଦୁଷ୍ଟାମି ଛାଡୁ ନାହିଁ । ସାର୍ ଥକି ଗଲେ । ବେଞ୍ଚ ଚୌକି କଲେ । ଖରାରେ ଏକ ଗୋଡ଼ିଆ ଠିଆ କରାଇଲେ । ଶେଷରେ ବୁଝିଲେ ଦୁଷ୍ଟାମି ଏମିତି ସେମିତି ନୁହେଁ, ଗୋଟିଏ ଭୂତ । ଏହି ଭୂତ ସେ ପିଲାର ମୁଣ୍ଡରେ ପଶିଛି । କେବଳ ମାଡ଼ ବସିଲେ, ଭୂତ କାହିଁକି, ଭୂତର ଗୋସିବାପ ଛାଡ଼ି ପଳାଇବ । ଏକଥା କିତିର ବାପା ଶୁଣିଲେ । ସେତ ସ୍କୁଲ ମାଡ଼ି ନାହାନ୍ତି । ଖଡ଼ି ଛୁଇଁ ନାହାନ୍ତି । କିନ୍ତୁ ସେ ହସିଲେ, କହିଲେ ଏ କି ଅଜବ କଥା ! ଭୂତ ମୁଣ୍ଡ ଭିତରେ ପଶିଛି । ପୁଣି ଦୁଷ୍ଟାମି କରୁଛି । ମାଡ଼ରେ ଛାଡ଼ି ପଳାଇବା ନୂଆ କଥାଟେ । ଏପରି ସ୍କୁଲକୁ କିତି ଆଉ ଯିବ ନାହିଁ । ତା'ର ପାଠ ପଢ଼ା ବନ୍ଦ । ଝିଅଟା ପୁଣି ପଢ଼ି କଅଣ କରିବ ? ହାକିମ ହେବ, ନାଁ ହୁକୁମ ଦେବ । ପର ହାଣ୍ଡି ପରା ଧୋଇବ, ପେଟ ପୋଷିବ । ଚୁଲି ଫୁଙ୍କିବ ବାସନ ମାଜିବ । ସେଥିପାଇଁ ଏତେ ଧନ୍ଦା କାହିଁକି । କିତି ଶୁଣି ଦୁଃଖ କଲା କିନ୍ତୁ ସାର୍‌ଙ୍କ ମାଡ଼ କଥା ମନେପଡ଼ିଲେ ତା ହୃଲକ ଶୁଖିଯାଏ । ବରଡ଼ା ପତ୍ର ପରି ସେ ଥରେ । ଶେଷରେ ସେ ମନ ମାରିଦେଲା ।

ଏମିତି କେତେଦିନ ଗଡ଼ି ଯାଇଛି । କିତିର ବାହା ପ୍ରଶ୍ନ ପଡ଼ିଛି, କେତେ ଲୋକ ଆସିଛନ୍ତି । ନିରାଶରେ ବାହୁଡ଼ି ଯାଇଛନ୍ତି । ଝିଅ ପାଠ ପଢ଼ିନାହିଁ । ଝିଅ ପାଇଁ ଯଉତୁକ ମିଳୁ ନାହିଁ । ଝିଅଟା ପୁଅ ଲାଖି ଡେଙ୍ଗି ନୁହେଁ, ଏମିତି ସବୁ ବାଗିଲେ ।

ଜଣେ ବୃଦ୍ଧ ଫେରି ଯିବା ଉପରେ । ସବୁ ନାହିଁକୁ ସେ ଚଳାଇ ନେବେ, କିନ୍ତୁ ଯଉତୁକ ରହିବା ଦରକାର ।

ଏମିତି ବିଚାର ଚାଲିଛି । ସଞ୍ଜ ବେଳ । ସବୁ ଦିନେ ଯାହା, ଆଜି ବି କିତିର ସେଇଆ । ସଞ୍ଜ ଦେଇ ସାରି ଭଜନଟିଏ ପଢୁଛି । ଗୋବର ଲିପା ଥାନଟିଏ, ଦୀପଟି ମିଞ୍ଜି ମିଞ୍ଜି ଜଳୁଛି । ସ୍ୱର ମିଳାଇ ଭଜନ ଗାଉଛି । ବୁଢ଼ା କାଖରେ ଛତା ଯାକି ପିଣ୍ଡାରେ ବସିଛନ୍ତି । ଉଠିବା ଉପରେ । ଭଜନ ଆଡ଼କୁ ମନ ଯାଇଛି । ସେ କାନେଇ ନେଇଛନ୍ତି । ମନରେ ଲାଖିଛି କିତିର ଭଜନ । ଦୀପ ଶିଖାର ଝଲକ ତାଙ୍କ ମନରେ ପଡ଼ିଛି । ହଠାତ୍ ବିଚାର ବଦଳି ଆଗକୁ ନଯାଇ ସେ କାଛକୁ ଡ଼େରି ବସି ପଡ଼ିଛନ୍ତି । ଯଉତୁକ ନ ହେଲେ ନାହିଁ, ସେ କିତିକୁ ବୋହୂ କରିବେ । ସବୁ ଭଲ, କିତିକୁ ଖୁଣିବାର କିଛି ନାହିଁ, ସେ ଭଜନ ପଢ଼ିବ । ସଞ୍ଜ ଦେବ । ଗୋବର ଲିପିବ । ଘସି ପାରିବ । ଧନ, ରତନ ପୂରି ଯିବ । ଆଉ କଣ ଦରକାର ? କିତି ହୋଇଛି ବୋହୂ । ଯାଉ ସଞ୍ଜ ବେଳେ ଗାଁ ସ୍କୁଲରେ ପଢ଼ିବ । "ନାଁ, ନାଁ, ମୁଁ ତାକୁ ଛାଡ଼ିବି ନାହିଁ । ବୋହୂଟା ପୁଣି ଗାଁ ଦାଣ୍ଡରେ ଟପ ଟପ ଚାଲିବ । ଗାଁ ଲୋକେ ହସିବେ । ଟୋକା ଟାକ୍‌ଳିଆ ଫୁସୁରୁ ଫାସର ହେବେ । ନ ହେଉ ପାଠ, ରହୁ ଘରର ମହତ । ଏ ପାଠରୁ କଅଣ ମିଳିବ ?" ଶ୍ୱଶୁର କହିଲେ ଓ ବୁଢ଼ା ବୁଢ଼ୀଙ୍କର ଏକ ଏକ କିଦ୍ । କିତି ମନ ମାରିଲା, ସେ କଣ ଶାଶୁ ଶ୍ୱଶୁରଙ୍କ ମୁହଁରେ ଜବାବ ଦେବ ?

ସତରେ ସାହି ପଢ଼ିଶାଳୁ ଯଦି ଝିଅ, ବୋହୂ ଯାଉଥାନ୍ତେ, କିତିର ପଢ଼ା ବନ୍ଦ ହୁଅନ୍ତା କି ? ଶ୍ୱଶୁରେ କେବେହେଲେ ମନା କରିଥାନ୍ତେ କି ? ସୁଅଟିଏ ପଢ଼ି ଯାଇଥାନ୍ତା, ଅପାଠୋଇ ମା ଭଉଣୀଙ୍କ ପାଇଁ ଘରୁ ଗୋଡ଼ ବାହାର କରିବାରେ କୌଣସି ଅସୁବିଧା ହୋଇ ନଥାନ୍ତା । ବାଘ ଭାଲୁ ପରି ହିଂସ୍ରଜନ୍ତୁ ହେଲାପରି କେତେ ଭୟ ମନକୁ ଆସି ଯାଉଛି । ଅଥଚ କିତି କେତେ ନୂଆ ନୂଆ ଭଜନ ଗାଇଥାନ୍ତା, ଭାଗବତ ପଢ଼ିଥାନ୍ତା । ଶ୍ୱଶୁରଙ୍କୁ ଖବର କାଗଜରୁ ଦେଶ ବିଦେଶର କଥା ଶୁଣାଇଥାନ୍ତା । ଚାଷ ବାସର ହିସାବ ରଖିଥାନ୍ତା । ପୁଅ ବୋଲି ଗୋଟିଏ । ସେ ଯାଇ ବହୁ ଦୂରରେ ଚାକିରି କଲା । ବୁଢ଼ାର ଇଚ୍ଛା, ପୁଅ ଠାରୁ ପ୍ରତିଦିନ ଚିଠି ଆସୁଥାନ୍ତା ଓ ସେ ବି ଚିଠି ଦେଉଥାନ୍ତା, କିନ୍ତୁ ଚିଠି ପଢ଼ିବାରେ ହରକତ । ଚିଠି ଲେଖାଇବାରେ ହଇରାଣ । ବୋହୂ ହେଲେ ପଢ଼ି ଲେଖି ଜାଣିଥାନ୍ତା କି ? କିନ୍ତୁ ଆପଣା ହସ୍ତେ ଜିହ୍ୱା ଛେଦି, ସେ ଯେ ନିଜେ କରାଇ ଦେଇ ନାହିଁ ।

ହଁ ଏଥିପାଇଁ ଜନ ଜାଗରଣ ଆବଶ୍ୟକ । ସମସ୍ତେ ବୁଝିବେ, ସାକ୍ଷରତା ଆନ୍ଦୋଳନ କାହିଁକି ଚାଲିଛି ? ସେମାନେ ଏଥିରେ କିପରି ଯୋଗ ଦେବେ ? ଏତକ ହୋଇଥିଲେ କିତି ଓ ତା'ର ପରିବାର ଏତେ ଦୁଃଖ ପାଇଥାନ୍ତେ କି ? କାମ ଦାମ ଓ

ଜୀବନ ଯାତ୍ରାରେ ଝିଅ ଓ ପୁଅ ସମାନ। ଜାତିର ନିର୍ମାଣରେ ସେମାନେ ସମାନ ଭାବରେ ଯୋଗ ଦେଇ ପାରିବେ, ଏ ବିଷୟରେ ଆମ ଦୃଷ୍ଟି ବଦଳୁ ନାହିଁ। ସେଥିପାଇଁ ସାକ୍ଷର ନାରୀଙ୍କ ସଂଖ୍ୟା କମ୍। ଗାଁ ଗହଳରେ ଓ ବଣ ଜଙ୍ଗଲରେ ବାସ କରୁଥିବା ଲୋକଙ୍କ ମଧ୍ୟରେ ସାକ୍ଷର ନାରୀମାନଙ୍କ ସଂଖ୍ୟା ଆହୁରି କମ୍। ଅନ୍ଧାରରେ ପଡ଼ିଛନ୍ତି। ଦୁଃଖରେ ସଡୁଛନ୍ତି। ଅଧିକାର ଜାହିରି କରି ପାରୁନାହାନ୍ତି କି ଆମ ବିକାଶ ଯୋଜନାର ସୁଫଳ ପାଇ ପାରୁ ନାହାନ୍ତି।

ଜନଜାଗରଣ ନଥିବାରୁ ଜନ ସହଯୋଗ ମିଳୁନାହିଁ। ଗଣ ଆନ୍ଦୋଳନ ହୋଇପାରୁ ନାହିଁ। ଜନ ଜାଗରଣ ହେତୁ ଗଣ ଆଲୋଡ଼ନ ହୋଇ ପାରିବ। ଠିକ୍ ସମୟରେ ଏହି କାମ କରିହେବ। ଏହାଛଡ଼ା ଆମ ପଛୁଆମି କାହିଁକି ଏହା ଜାଣି ହୁଅନ୍ତା। କାରଣକୁ ଠିକ୍ ଠାବ କରିପାରିଲେ ପ୍ରତିକାର କରି ହୁଅନ୍ତା।

ଦୁଃଖୀ ନିଜ ଦୁଃଖ ଦୂର କରିବା ପାଇଁ ଉପାୟ ଥୟ କରି ପାରନ୍ତା। ସେହି ଅନୁସାରେ କାମ କରିବ। ଏହି ପ୍ରତିକାର ଜାଟୁ ନ ଜଲେ ଅନ୍ୟ ବାଟ ସେ ଧରିବ। ନୂଆ ଫନ୍ଦା ଚିନ୍ତା କରି ପାରନ୍ତା। ସେ ଅନ୍ୟଙ୍କୁ ଗାଳି ଦେବ ନାହିଁ। ସେ ଅନ୍ୟଙ୍କ ଉପରେ ନିର୍ଭର କରିବ ନାହିଁ। ଲୋକଙ୍କ ହାତରେ ପଇସା ଢ଼ାଳି ଦେଲେ ଠିକ୍ ଉପକାର ମିଳିଯିବ କି ? ସେମାନଙ୍କ ଚିନ୍ତା, ନିଜ ପାଇଁ ନିଜ ଚିନ୍ତା ଆବଶ୍ୟକ।

କିତିର କାହାଣୀରୁ ଜଣାଯାଏ, ଯୌତୁକ ଚାଲିଛି। ବିନା ଯୌତୁକରେ ବାହାଘର ହୋଇ ପାରୁନାହିଁ। ଝିଅକୁ ହୀନିମାନିଆ ଆଖିରେ ଦେଖାଯାଉଛି। ଅନେକ ଘରେ ଝିଅକୁ ଟୋପାଏ କ୍ଷୀର, ଲୁଗାପଟା, ମୁଠାଏ ଭାତ ଭଲ କରି ଖୁସିରେ ଦିଅନ୍ତି ନାହିଁ। ସେ ପର ଘରକୁ ଯିବ। ପରହାଣ୍ଡି ଧୋଇ ଚଳିବ। ସେ କଅଣ ବାପ ମା'ଙ୍କୁ ପୋଷିବ କି ? ଗାଁ ସ୍କୁଲର ପାଠ ସରିଗଲେ ପାଠ ପୋଥିରେ ଡ଼ୋର ବନ୍ଧା ହୋଇଯାଏ। ପୁଅ ପାଇଁ ଯେପରି ଯତ୍ନ କରନ୍ତି, ଝିଅ ପାଇଁ ସେପରି କରାଯାଏ ନାହିଁ, ଜମି ବିକା ଯାଏ, କରଜ କରାଯାଏ, ବେଲା ବାସନ ବନ୍ଧା ପକାଯାଏ। ପୁଅ ପାଇଁ ଏସବୁ କରାଯାଏ ବୋଲି ଚାରିଆଡ଼େ ହୁରି ପଡ଼େ। ମନରେ ଗର୍ବ ଓ ଗୌରବ। ତଳି ତଳାନ୍ତ ହେଲେ ବି ଆଶ୍ୱାସନା ପୁଅ ପଡୁଛି। ତା ମୁଣ୍ଡକୁ ଏସବୁ, ସେ ସୁଝିବ, କିନ୍ତୁ ଝିଅ ? ଏଥିପାଇଁ ଅନେକ ଆଇନ କରାଗଲାଣି। ଝିଅ ହେଉ, ପୁଅ ହେଉ, ପରିବାର, ସମାଜ ଓ ଦେଶର ଗର୍ବ ଉଭୟ। ଦୁହେଁ ମଣିଷ ଓ ଦୁହିଁଙ୍କ ସହଯୋଗରେ ଉନ୍ନତି ଓ ଆନନ୍ଦ। ଆଇନ ହେଲେ କଅଣ ହେବ, ଏହା ଯଥେଷ୍ଟ ନୁହେଁ। ଏଥିପାଇଁ ଜନ ଜାଗରଣ ଆବଶ୍ୟକ। ପ୍ରତ୍ୟେକ ଜାଗିଲେ ସମାଜ ଜାଗିବ। ପୁରୁଣା କାଳିଆ କଥାଟା ଅଚଳ ହୋଇଯିବ। କଳଙ୍କର ଗାର ଧୋଇଯିବ।

ଲାଳନ ପାଳନ, ଶିକ୍ଷାଦୀକ୍ଷା ଓ କାମ ଧନ୍ଦାରେ ପୁଅ ଝିଅଙ୍କ ମଧ୍ୟରେ ପାତର ଅନ୍ତର ରହିବ ନାହିଁ। ଭୀମଭୋଇ କେଡ଼େ ବଢ଼ିଆ କଥା କହିଛନ୍ତି; "ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ, ସ୍ତିରୀ ବା ପୁରୁଷ ତହିଁ ନାହିଁ ବଡ଼ ସାନ।"

ଅନେକ ଅନ୍ଧବିଶ୍ୱାସ ଏବେ ବି ଚାଲିଛି। ପିଲାଟି ଦୁଷ୍ଟ, ସେ ଝିଅଙ୍କୁ ଖତେଇ ହୁଏ, ତାକୁ ବୁଝିବା ଆବଶ୍ୟକ। ସୁଧାରିବାର ବାଟ ରହିଛି। ସେ ବାଟେ ନଯାଇ ମାଡ଼ର ବାଟ ଧରାଗଲା। ଦୁଷ୍ଟାମି ଭୂତ ହୋଇ ସେ ପିଲା ଭିତରେ ପଶିଛି। ମାଡ଼ରେ ଛାଡ଼ି ପଳାଇବ। ଏ ସବୁ ଅନ୍ଧ ବିଶ୍ୱାସ। ଏହାଦ୍ୱାରା ସେ ପିଲାଟି ମାଡ଼ ଖାଇଲା, ସତ, ତାକୁ କେହି ବୁଝିଲେ ନାହିଁ, କିମ୍ବା ଯାହା କଲେ ସେ ଭଲ ହୋଇଥାନ୍ତା, ସେ କଥା କେହି କଲେ ନାହିଁ। ଅଥଚ କିତିପରି କେତେ ପିଲା ପାଠ ଛାଡ଼ି ଦେଲେ। ଏପରି ସବୁ ଅନ୍ଧ ବିଶ୍ୱାସ ଆମର ସର୍ବନାଶ କରୁଛି। ଚାଷବାସ କାମଧନ୍ଦା ଓ ପ୍ରତିଦିନର ଜୀବନରେ ଆମକୁ ଆଗେଇ ନେଉ ନାହିଁ। ଏ ସବୁ ଅବାସ୍ତବ ଓ ଅହେତୁକ କଥା। ଏଥିପାଇଁ ଜନଶିକ୍ଷା ଓ ଜନ ଜାଗରଣ ଆବଶ୍ୟକ। ଲୋକମାନେ ଚେଇଁ ପଡ଼ିଲେ, ସେମାନଙ୍କ ଚେତା ପଶିବ। ଏହାହିଁ ଜନ ଜାଗରଣ।

ଆଛା ଜନଶିକ୍ଷା ପାଇଁ ଜନଜାଗରଣ ଆବଶ୍ୟକ। ଜନଶିକ୍ଷାର ସଫଳତା ଜନଜାଗରଣ ଉପରେ ନିର୍ଭର କରେ। ଜନଶିକ୍ଷା ପାଇଁ ସେ ଆଡ଼କୁ ଜନଗଣଙ୍କର ମନ ଆଗେଇ ଆସିବ। ସେମାନଙ୍କର ଲଜ୍ଜା, ଭୟ, ସଂକୋଚ ରହିବ ନାହିଁ। ଏହା ଯେ ସେମାନଙ୍କ ପାଇଁ ଆବଶ୍ୟକ, ଏହା ସେମାନେ ଅନୁଭବ କରିବେ। ଏଥିପାଇଁ ଜନଶିକ୍ଷା ସେମାନଙ୍କ ଜୀବନର ଆଶା, ଆକାଙ୍‌କ୍ଷା ଓ ଅଭିଳାଷ ମେଣ୍ଟାଇବାରେ ସାହାଯ୍ୟ କରିବ। କିନ୍ତୁ ଅନେକ କର୍ମକର୍ତ୍ତା, ପରିଚାଳକ, ପ୍ରେରକ ଓ ପ୍ରକଳ୍ପ ଅଧିକାରୀ ସେହି ପୁରୁଣା କାଳିଆ ମନୋଭାବ ଏ ଯାଏଁ ଛାଡ଼ିନାହାନ୍ତି। ତାହା ହେଉଛି, ଅକ୍ଷର ଚିହ୍ନିଲେ ଜନଶିକ୍ଷା ହୋଇଯିବ। ସନ୍ତକ ଦେଲେ ସବୁ ମିଳିଯିବ।

ଏହା ବେଶ୍ ସହଜ କଥା। କାଦୁଅରେ ପଶିବା କାହିଁକି, ନାଁ ଗୋଡ଼ ଧୋଇବା କାହିଁକି ? ଅକ୍ଷର ଶିକ୍ଷା ବହିଖଣ୍ଡେ ହେଲେ ଚଳିବ। ଜନଶିକ୍ଷା ପାଇଁ ଲୋକଙ୍କ ଆର୍ଥିକ, ସାମାଜିକ ଅବସ୍ଥା ସମ୍ବନ୍ଧରେ ସର୍ଭେ କରିବାକୁ ହେବ; ସେମାନଙ୍କ ଅଭାବ, ଆବଶ୍ୟକତା ଓ ସମସ୍ୟା ବିଷୟରେ ଜାଣିବାକୁ ପଡ଼ିବ; ବିଭିନ୍ନ ବିକାଶ ଯୋଜନା ଓ ଉନ୍ନୟନ ସଂସ୍ଥା ସହିତ ସହଯୋଗ ରକ୍ଷା କରିବାକୁ ହେବ। ଏପରି କରି ଶିକ୍ଷା ଦିଆଯିବ। ଏହା ଫଳରେ ସେମାନଙ୍କ ରୋଜଗାର କ୍ଷମତା ବଢ଼ିବ। ସେମାନେ ଭଲରେ ଚଳିବେ, ଦେଶ କଥା ବୁଝିବେ, ଭଲ ମଣିଷ ହେବେ, ସୁନାଗରିକ ହୋଇ ପାରିବେ, ଇତ୍ୟାଦି। ଜୀବନସାରା ଶିକ୍ଷା ଚାଲୁ ରହିବ। ବରାବର ଆଗେଇବାକୁ ପଡ଼ିବ। ଏତେ କଥା କରିବା ବଡ଼ କଷ୍ଟ। ବୁଝି ହେଉଛି, କିନ୍ତୁ କରିବା ସହଜ

ହେଉନାହିଁ । ଲୋକମାନେ ଜନ ଶିକ୍ଷାର ଏହି ଅର୍ଥଟିକୁ ବୁଝିଲେ ଜନଶିକ୍ଷା ଠିକ୍ ଭାବରେ ଚାଲିବ । ସେମାନେ ମନକୁ ମନ ଧାଇଁବେ । ତାହା ହେଲେ ଠିକ୍ ସମୟସୀମା ଭିତରେ ଜାତୀୟ ଅଭିଯାନ ସଫଳ ହେବ । ଜନ ଜାଗରଣର ମୂଳ କଥା ହେଉଛି ଏଇଆ । ଏ ବିଷୟରେ ଲୋକଙ୍କ ଚେତା ଆସିଗଲେ ସେମାନେ ବରାବର ଶିଖିବାରେ ଲାଗିପଡ଼ିବେ । ଯାହା ପଢ଼ିବେ ତାକୁ କାମରେ ଲଗାଇ ଭଲ କାମ କରିପାରିବେ । ସେଥିରୁ ନୂଆ ଜ୍ଞାନ ମିଳିବ ।

ଜନ ଜାଗରଣ ସୃଷ୍ଟି ହେବା ପାଇଁ ନାନା ଉପାୟ ଅଛି । ଗଣ ମାଧ୍ୟମର ସାହାଯ୍ୟ ନିଆଯାଇପାରେ । ସେ ସବୁର ପ୍ରଭାବ ଖୁବ୍ ଶକ୍ତିଶାଳୀ ବୋଲି ପ୍ରମାଣିତ ହୋଇଛି । ବିଭିନ୍ନ ଦେଶରେ ଏ ସବୁର ପ୍ରୟୋଗ କରାଯାଇଛି । ସମ୍ବାଦପତ୍ର, ସିନେମା, ରେଡ଼ିଓ, ଦୂରଦର୍ଶନ ଓ ପ୍ରାଚୀର ପତ୍ର ଆଦି ଏହାର ଅନ୍ତର୍ଭୁକ୍ତ । ବିଭିନ୍ନ ମାଧ୍ୟମ ମଧ୍ୟରେ ସମନ୍ୱୟ ରହିବା ଉଚିତ । ଏହାଛଡ଼ା ଅନେକ ଜନପ୍ରିୟ ପାରମ୍ପରିକ ଗଣ ମାଧ୍ୟମ ରହିଛି । ସେ ସବୁ ହେଉଛି ଯାତ୍ରା, ଗୀତ, ନାଟକ, ତାମସା, ସୁଆଙ୍ଗ, ପାଲା, ଦାଶକାଠିଆ ପ୍ରଭୃତି । ନିରକ୍ଷର ଲୋକମାନଙ୍କୁ ପ୍ରଭାବିତ କରିବାରେ ଏସବୁ ଏକାନ୍ତ ଶକ୍ତିଶାଳୀ । କଣ୍ଢେଇ ନାଚ ପ୍ରଭୃତି ଆମ ଗାଁ ଗହଳରେ ମନୋରଞ୍ଜନ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଆବାଳ ବୃଦ୍ଧ ବନିତାଙ୍କ ମଧ୍ୟରେ ଏହା ପ୍ରତି ଆଦର ରହିଛି । ଏ ବାଟରେ ଜନଶିକ୍ଷା ପାଇଁ ଜନମତ ଜାଗ୍ରତ କରିହେବ । ମେଳା, ମହୋତ୍ସବ, ହାଟ ବଜାର ଆଦି ଜନ ସମାବେଶରେ ଏ ସବୁ ମାଧ୍ୟମର ପ୍ରୟୋଗ ବେଶ୍ ଫଳପ୍ରଦ । ଶିକ୍ଷାର୍ଥୀ, ଶିକ୍ଷକ, ଶିକ୍ଷିତ ଲୋକ, କବି, ଲେଖକ ଆଦି ବିଭିନ୍ନ ଶ୍ରେଣୀର ଲୋକ ଉଲ୍ଲିଖିତ ମାଧ୍ୟମ ପାଇଁ ଉପାଦାନ ଯୋଗାଇ ଦେବେ, ଜନ ଶିକ୍ଷାର ସ୍ୱରୂପ ବିଷୟରେ ବୁଝାଇ ଦେବେ ଓ କାର୍ଯ୍ୟକ୍ରମକୁ ଠିକ୍ ବାଟରେ ନେବା ପାଇଁ ସାହାଯ୍ୟ କରି ପାରିବେ । ଆମ ପରମ୍ପରା, ପ୍ରବାଦ ଭୂମି ଓ ଭୂମିକା ସହିତ ତାଳମେଳ ରକ୍ଷା କରାଯାଇ ପାରିଲେ ବିଦ୍ୟୁତ୍ ବେଗରେ ଲୋକମାନଙ୍କ ମନରେ ଆଲୋଡ଼ନ ସଂଚାର କରିବ । ଜନସେବୀ ଲୋକ ଓ ସଂଗଠନ ଅନେକ ଅଛନ୍ତି । ଅନେକ ସଂଗଠନ ନୂତନ କରି ଗଢ଼ି ହେବ । କଳ୍ପନାତୀତ ଅସୁବିଧା ମଧ୍ୟରେ ଏମାନଙ୍କର ନିଷ୍ଠା ଓ ସ୍ୱାର୍ଥପରତାର ନିଦର୍ଶନ ଏକାନ୍ତ ବିରଳ । ଏ ଦିଗରେ ବ୍ରତୀ ହେବା ପାଇଁ ନବୋଦ୍ୟୋଗୀ ଓ ସଂଗଠନ ସୃଷ୍ଟି କରିବାର କାର୍ଯ୍ୟକ୍ରମ ରହିବା ଉଚିତ । ଏହା ଫଳରେ ଏକ ବଳିଷ୍ଠ ସ୍ୱେଚ୍ଛାସେବୀ ସଂଗଠନ ଓ ବ୍ୟକ୍ତିଙ୍କର ଶ୍ରେଣୀ ଉପୁଜିବ ଓ ସେମାନେ ଚେତନାର ଅଗ୍ରଗାମୀ ବାର୍ତ୍ତାବହ ହୋଇ ରହିବେ । ତ୍ୟାଗ ଓ ସେବା ଜୀବନରେ ଜୀବନ୍ତ ବିଭାବ ହୋଇଯିବ । ସେମାନେ ଏ କାମକୁ ଆଦରି ନେବେ । ଏହା ଫଳରେ ବଢ଼ିଆ ପରିବେଶ ତିଆରି ହୋଇଯିବ ।

ଜନଶିକ୍ଷା ହେଉଛି ଜନ ଜୀବନର ପୁନର୍ଗଠନ ପାଇଁ ଏକ ନୀରବ ବିପ୍ଳବ। ଯେଉଁଥିରେ ଏକନିଷ୍ଠତା, ଉତ୍ସର୍ଗ ଓ ଅଗ୍ରାଧିକାର ରହିବ। ଦୁଇଟି କଥା :ଏକ, ସ୍ଥିର ସମୟ ଠିକ୍ ରହିବ ଓ ଦୁଇ, ଜନ ଶିକ୍ଷାର ସ୍ୱରୂପ ଠିକ୍ ହେବ। ଏହା ଫଳରେ ଲୋକ ଜାଣିବେ, ଜନ ଶିକ୍ଷାର ସୁଅ ଛୁଟିବ। ସେମାନଙ୍କ ଶକ୍ତି ବଢ଼ିବ ଓ ଦେଶ ଆଗେଇବ।

ସଭିଏଁ ମାତିଲେ ସବୁ ଦେଶ ଓ ଦଶ ହସି ଉଠିବ।

□□□

# ହଜିଲା ବଳଦ ଖୋଜିଲା ଠାଇଁ

ହଡ଼ା ହଜିଛି। ହଟିଆର ମାତ୍ର ପଟେ ହଡ଼ା। ଅକଲ ତାର ଗୁଡୁମ୍। ପାଟିକୁ ଦାନା ଯାଉନାହିଁ। ଆଖିରେ ନିଦ ନାହିଁ। ସବୁ ସରିଛି। ଗୁହାଳକୁ ଚାହିଁ ପାରୁନାହିଁ। ଛାତି ଫାଟି ଯାଉଛି। ହଟିଆ ଘରକୁ ପଶି ପାରୁନାହିଁ। ଘରଣୀ ବି ପିଣ୍ଡାରେ, ଘର ଧରୁ ନାହିଁ। ଦୁଇ ପ୍ରାଣୀ ଆଉଟି ପାଉଟି ହେଉଛନ୍ତି। ଆଶା, ଭରସା, ସବୁକିଛି ସେଇ ହଡ଼ା ପଟକ। ସେ ତ ହଜିଲା। ଦିନେ ନଥିଲା, ଆଜି କଅଣ ହେଲା ? ବେଳ ବୁଡ଼ିଲା ବେଳକୁ ଖୁଣ୍ଟ ପାଖରେ ଠିଆ ହୁଏ ହଡ଼ା। ତିନି ଦିନ ଗଲାଣି। ଗୁହାଳ ଖାଲି, ପଘା ପଡ଼ିଛି, ହଡା କାହିଁ ? ହଟିଆ ଆଉ ନଟିଆ ଯୋଡ଼ି। ଯାହାର ପଟେକୁ ତାର ପଟେ ହଡା। ଆଜି ଯାହା ବିଲ ତ କାଲି ତା ବାରି ଧରାଯାଏ। ଦିହିଁଙ୍କର ସରିଗଲେ ହଳ ବିକନ୍ତି। ହଡାରେ ଯୋଡ଼ି, ତ ହଟିଆ ଓ ନଟିଆରେ ଯୋଡ଼ି, ଶଗଡ଼ ଯୋଚି ଖତ ବୁହନ୍ତି। ପିଠିରେ ଛେଲା ପକାଇ ପଙ୍କ କାଢ଼ନ୍ତି। ନଟିଆ ଆଉ ହଟିଆର ହଡା ଦଶହରା ପଡିଆରେ ପଲାଣ ପକାଇ ଚଲୁଥିଲାବେଳେ ଗାଁଟା ଯାକ ସାବାସ କରନ୍ତି। ସମସ୍ତେ ଥାଟ ପଟାର। ମନର ମେଳି ଓ ହଡାରେ ଯୋଡି।

ଦଇବ କଅଣ ଦାଉ ସାଧୁଛି। ବେନି ଜନେ ସମ ଦଶା। ନଟିଆ ବି କପାଳରେ ହାତ ଦେଇ ବସିଛି। ହଡା ଥାଇ ସେ କରିବ କଅଣ ? ଯୋଡି କାହିଁ ? ଚାଷ ତରତର ବଣିଜ ମଠ। ପାଗ ଯାଉଛି। ଆଜିର ବତର କାଲିକୁ ରହୁନାହିଁ। ଅକ୍ଷିମୁଠି ବାହାରି ନାହିଁ। ଏଷ୍ଟୁ ପଛ ପାଳକ। ଚାଷୀଙ୍କୁ ନିଦ ନାହିଁ। ଗାଁ'ଟା ଯାକ ବିଲରେ। ହଳର ମୂଲ ବଢ଼ିଯାଇଛି। ଏତେବେଳେ ନିଜ କାମ ପାଇଟି ସାରି ବରଷକ ପାଇଁ

ଦି'ପଇସା କମେଇ ପାରିଥାନ୍ତେ। ଏଇଥିରୁ ଲୁଗାପଟା, ଯାନିଯାତରା, କୁଣିଆମଇତ୍ର ସବୁ ଖର୍ଚ୍ଚ ବାହାରି ଥାଆନ୍ତା।

ହଟିଆ ହୁତା ଖୋଜୁଛି। ହାତରେ ବାଡ଼ି ଓ ମୁଣ୍ଡରେ ପଗଡ଼ି। ଗାଧୁଆ ପାଧୁଆ ନାହିଁ। ଝାଡ଼ା ଝପଟ ବି ଭୁଲିଗଲାଣି। ଘରକୁ ଫେରୁ ନାହିଁ। ନଟିଆ ଆଡ଼େ ଅନାଉ ନାହିଁ। ରାତି ପହରେ ଥାଏ ପୋଖରୀ ହୁଡ଼ାରେ ଦୁହିଁଙ୍କର ଭେଟ। ସଙ୍ଗୁସୁତୁରା। ଗୋଟିଏ ମାଆର ଦୁଇ ପୁଅ ନ ହେଲେ କଅଣ ହେବ, ତାଠାରୁ ବଳି ଭାବ। ପାଣି ଗଳେ ନାହିଁ। ହଟିଆ ଭାଇକି ନଟିଆ ଭାଇ। ହଟିଆର ହଇରାଣ ଦେଖି ନଟିଆ ଛଟପଟ। ନଟିଆ କଲବଲ ହେଉଥିବ, ଏଇଆ ଭାବି ହଟିଆର ପ୍ରାଣ ଛାଡ଼ି ଯାଉଛି। ସେ ଖୋଜୁଛି ହୁଡ଼ା କାହିଁ ? ଛୁଆଠାରୁ ବୁଢ଼ା ପରିଯନ୍ତେ ସମସ୍ତଙ୍କୁ ପଚାରି ଗଲାଣି। ବାଉଁଶବୁଦା, ପୋଖରୀହୁଡ଼ା, କିଆବଣ, ମଶାଣିପଦା ପରିଯନ୍ତେ ସବୁକିଛି ହନ୍ତାଳି ଗଲାଣି। କଉଡିଷ ଖଡ଼ିପକାଇ ସାରିଲାଣି। ଗୁଣିଆ ଗଣି ସାରିଲାଣି। ଠାକୁରାଣୀ ମାନଣା କରିବ, ଗ୍ରାମଦେବତୀଙ୍କୁ ଭୋଗ ଦେବ। ଏମିତି ଏମିତି ମନାସୀ ଗଲାଣି। ପାଖ ଆଖ ଗାଁ ବି ଛାଡି ନାହିଁ। ଖଣ୍ଡ ମଣ୍ଡଳରେ ଚହଳ ପଡ଼ିଗଲାଣି। କେତେ ଫୁଟୁରୁଫାଟର କିନ୍ତୁ ସପସ୍ତଙ୍କ ମୁହଁ ଶୁଖିଛି। ହଟିଆକୁ ଲକ୍ଷ୍ମୀ ଛାଡ଼ିଲା। ତା'ର ଭେକାଳ ବୁଡିଛି। ପିଲାଛୁଆ ତ ନଥିଲେ। ସେଇ ଧଡ଼ିଆ ହୁତା ପଟକ ତା'ର ସବୁ। ସେଇଟି ଉଭେଇ ଗଲାପରି ଯାଇଛି। କେହି କହିପାରୁ ନାହାନ୍ତି। ସମସ୍ତେ ଆର ଆଡ଼କୁ ଆଙ୍ଗୁଳି ବଢ଼ାଇ ଦେଉଛନ୍ତି। ହଟିଆର ଅଣ୍ଟା ଭାଙ୍ଗିଲା, ସେ ଆଉ ଠିଆ ହେବ କି ? କେବଳ ହଟିଆ ନୁହେଁ, ନଟିଆ ବି ସରିଗଲା। ଓଧ ସାଙ୍ଗରେ ଭୁଆ ବିରାଡ଼ି ବାଇ ହୋଇଥିଲା। ଏବେ ହଇରାଣ ନ ହୋଇ ଯିବ କୁଆଡ଼େ ? ଯୋଡ଼ି ପାଇବ କେଉଁଠୁ ? ସେ ବି ଗଲା, ସଇଲା ଆଉ ଉଠି ପାରିବ ନାହିଁ। କେବଳ ହଟିଆ ଆଉ ନଟିଆ କାହିଁକି ? ଗାଁଟା ବି ଗଲା ? ଭଲ ଲୋକ ଦୁଇଟା, ନିଜ କାମରେ ଥାନ୍ତି। ମାଛିକୁ ମ କହନ୍ତି ନାହିଁ। ତାଙ୍କ ଉପରେ ଦଇବ ଚଡକ। ଗାଁଟା କଅଣ ରକ୍ଷା ପାଇବ ? ଏମିତି କୁହାକୁହି। ଆର ଗାଁକୁ ଅନେଇଲେଣି ସମସ୍ତେ। ଭେଟା ଛାଡ଼ିବେ। ଚୁଲିଚାଳ, ହାଣ୍ଡିକୁଣ୍ଡି ଓ ପିଲାପିଚିକା ଧରି ପାଖ ଗାଁକୁ ପଳେଇଯିବେ।

ଏମିତି ବିକଳ ଓ ବିକଟାଳ ଭୟ। କିଏ କାହାକୁ ସମ୍ଭାଳିବ ? ତିନି ଦିନ କଟିଛି। ପରଦିନ ସକାଳେ ନଟିଆର ବଡ ପୁଅ ପୋଖରୀପାଣି ସାରି ଧାଇଁଛି। ବେଦମ୍ ସେ। ଅଣନିଶ୍ୱାସୀ ପାଟିରୁ କଥା ଫିଟୁ ନାହିଁ। ପିଣ୍ଡାରେ ଗୋଡ଼ ଦେଇ ପାଟି କରିଛି, "ମଉସା, ହୁଡା ରଥ ପଧାନଙ୍କ ବାଡ଼ି ପଛରେ।" ଏ କି କଥା ? ସତ ନାଁ ମିଛ। ହଟିଆ କୁଣ୍ଡାଇ ପକାଇଛି। ଦୁହେଁ ଚଟ୍ କରି ବୁଲି ପଡ଼ନ୍ତି ଓ ଦେଖନ୍ତି ହୁଡା

ସେଇଠି । ଧଡା ନିବୁଜ । ବାଉଁଶ କଣ୍ଟା ଛଟା ବାଡ଼ିରେ ଛେଳି କୁକୁଡ଼ା ବି ପଶି ପାରିବେ ନାହିଁ । ହଡା ଯେ ଧଡା ଡେଇଁ ପଶିଛି । ପଧାନଙ୍କ ରୋଷଘର ଚାଳଗୁ ନଡା ଖସାଇ ଦିଆ ଯାଇଛି । ରାତି ପାହି ନାହିଁ, ଛପର ହେବ । ଏତିକିବେଳେ ପଧାନଙ୍କ ପୁଅ ଗଛରୁ ପଡି ଅଚେତ । ଚେତା ଫେରୁ ନାହିଁ । ଛପର କଥା ବୁଝିବ କିଏ ? ହଡାର ପାଳି ପଡିଛି । କିଟିକିଟିଆ କଳା ନଡା ଚୋବା ଚାଲିଛି । ହଜିଲା ହଡା ଖୋଜିଲା ଠାଇଁ ।

ଆମ ସାଇପଡ଼ିଶାରେ ବି ସେଇଆ ଚାଲିଛି । ଆମ ସାମାଜିକ ଜୀବନରେ ସେଇ ରୋଗ । ଗାଁଟା ଯାକ ବୁରି ପଡ଼ିଛି, ଭଲ ଲୋକ କାହାଁନ୍ତି ? ଦାମ ସାହୁ ଗଲେ ଚାଲି । ଦାନଧର୍ମ ଆଉ କରୁଛି କିଏ ? ମଧୁ ମହାନ୍ତି ଆଉ ନାହାନ୍ତି । ଜୀବ ଥିବା ଯାଏଁ ସତ ଛଡା ମିଛ ସେ ଜାଣି ନଥିଲେ । ଅଶୀ ବରଷର ବୁଢୀ ପିତେଇ ନାନୀ ଦେହ ଛାଡିଛନ୍ତି । ତୁଣ୍ଡରେ ନାମ, ହାତରେ କାମ । ବେମାର ଦିନେ ବି ନାହିଁ । ବସୁ ବସୁ ବୁଢୀ ଉଠିଗଲା । ଏମିତି ଲୋକସବୁ ବାଟ ଧଇଲେ । ପିଲା ଛୁଆ, ଯବାନ ପୁଅ ଝିଅ, ବୁଢା ବୁଢୀ ସମସ୍ତେ ଖୋଜୁଛନ୍ତି । ଭଲ ଲୋକ ହଜିଗଲେ । କାହାକୁ ଦେଖିବା ମାତ୍ରେ ପଚାରନ୍ତି, ଭଲ ଲୋକ ଦେଖିଛ କି ? ଗାଁରେ ମୁରବୀ ନାହାନ୍ତି । କେହି କାହାକୁ ମାନୁ ନାହାନ୍ତି । ଗାଁରେ କଳିଗୋଳ । ଆମ ଗାଁରୁ ଭଲପଣିଆ ଯାଇଛି । ସମସ୍ତେ ହାଇଁପାଇଁ । ପିଟାପିଟି, ମରାମରି । ସେ ଗାଁ ଛାଡ଼ି ଭୟରେ ପାଖ ଗାଁରେ ପଶି ଦେଖନ୍ତି, ସେଇ ହାଲ । ଦେଶ ଖରାପ, ସମାଜ ଖରାପ, ଭଲ ଲୋକ ନାହାନ୍ତି । ଯୁଗ ସରି ଆସୁଛି । ଅକାଳ ହେଲା । ଚଡକ ପଡ଼ିବ । ଗାଁକୁ ଗାଁ ଲୋପ ପାଇଯିବ ।

ପିଲାଙ୍କ ଚୁଗୁଲିଆମି ବଢି ଯାଇଛି । ସେମାନେ କାହାକୁ ମାନିବେ ନାହିଁ । ନିୟମ ଭାଙ୍ଗିବେ, ଅନ୍ୟାୟ କରିବେ । ଫୁଲ, ଫଳ, ଡାଳ, ମୂଳ କାଟିନେବେ । ଅବାଟରେ ଚାଲିବେ । ସେମାନଙ୍କୁ ପଚାରନ୍ତୁ, ଏପରି କାହିଁକି କରୁଛ ? ଉତ୍ତର ହେଉଛି ଆମକୁ ବାଟ ଦେଖାଇବ କିଏ ? ଖାଲି ଛିଛାକର । କେହି ଆଦର କରୁ ନାହାଁନ୍ତି । ଯୁବକମାନେ ବି ଆଉରି ଭୟଙ୍କର । ଟିକଟ କାଟିବେ ନାହିଁ, ଭଡା ଦେବେ ନାହିଁ । ପରୀକ୍ଷାରେ ବହି ପକାଇ ଉତ୍ତର ଲେଖିବେ । ସବୁ ଅନ୍ୟାୟ ସେମାନଙ୍କ ପାଖରେ ନ୍ୟାୟ । ସେମାନେ ବି କହନ୍ତି, ଆମ ଆଗରେ ଆଦର୍ଶ କାହିଁ ? ଆଦର୍ଶ ହଜିଛି । ସମସ୍ତେ ଖୋଜୁଛନ୍ତି । ଗାଁରୁ ସହର ଖୋଜାଚାଲିଛି । ପିଲେ ପଚାରୁଛନ୍ତି ଶିକ୍ଷକଙ୍କୁ । ଶିକ୍ଷକ ପଚାରୁଛନ୍ତି ଇନିସ୍‌ପେକ୍ଟରଙ୍କୁ । ଏମାନେ ପଚାରୁଛନ୍ତି ଉପର ହାକିମଙ୍କୁ । ସେମାନେ ବି ନିରୁତ୍ତର । ଶେଷରେ ଯାଇ ସମସ୍ତେ ଗୁଣ୍ଡ ହେଲେଣି ମନ୍ତ୍ରୀଙ୍କ ପାଖରେ । ମନ୍ତ୍ରୀ ଫାଇଲ ଦେଖୁଛନ୍ତି । ସମ୍ମିଳନୀ ଡାକିଛନ୍ତି । ଆଦର୍ଶ କାହିଁ ?

ଆଦର୍ଶର ଗକାମରୁଡ଼ି, ଖୋଜି ଖୋଜି ଥକି ପଡ଼ିଛନ୍ତି । ଅନେକ ଏବେବି ଖୋଜିବାରେ ଲାଗିଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ଏକ ଶୋଭାଯାତ୍ରାରେ ବାହାରିବାର ଶୁଣାଯାଏ । ସେଥିରେ ସବୁ ବୟସର ଓ ବିଭିନ୍ନ ଧର୍ମର ଲୋକ ଅଛନ୍ତି । ବିଭିନ୍ନ ଭାଷାର ଲୋକ ବି ଅଛନ୍ତି । ଦାବୀ ତ ଗୋଟିଏ, ଆମ ଆଦର୍ଶ ଆମକୁ ଦିଅ । ଆଦର୍ଶ ଆମକୁ ଫେରାଇ ଦିଅ, ଫେରାଇ ଦିଅ । ଭାରତର ଚାରିଆଡ଼େ ଏମାନେ ବୁଲିବେ । ଦାବୀ ପତ୍ର ଦେବେ । ଆଦର୍ଶ ପାଉ ନାହାନ୍ତି । ମଣିଷ ପଣିଆ ପରିଛି । ଭଲ ଆକି ଭେଲ । ସବୁଠି ଭେଜାଲ, ଗୋଳିପାଣି ଓ ବାଳୁଙ୍ଗା କିଆରି ।

ଶୋଭାଯାତ୍ରା ଆଗେଇ ଚାଲିଛି । ଡ୍ରମ ବାଜୁଛି । ଗୋଟିଏ ଅପନ୍ତରା ଗାଁ ମୁଣ୍ଡ ବରଗଛ । ପୁରୁଣା ପୋଖରୀ ହୁଡ଼ା ଓ ମଶାଣି ଭୂଇଁ । ସଞ୍ଜ ହେଇ ଆସିଛି । ବରମୂଳରେ ୮୦-୯୦ ବର୍ଷର ବୁଢ଼ୀ । ମାତ୍ର ହାଡ ଦିଖଣ୍ଡ । ହାତ ଟେକି ଦେଇଛି ଓ ଅମାନିଆ ଶୋଭାଯାତ୍ରା ଅଟକି ଯାଇଛି । ରୁହ, ରୁହ, କାହିଁକି ଆଗେଇବ ? ତୁମରି ଭିତରେ ତୁମ ଆଦର୍ଶ । ନିଜକୁ ଚିହ୍ନ । ନିଜକୁ ଧିକ୍କାର ନକରି ନିଜ କାମ, କଥା, ଚିନ୍ତାରେ ଆନନ୍ଦ ଅନୁଭବ କର । ସେଇଠୁ ମଣିଷପଣିଆର ମଞ୍ଜି ବୁଣିଯିବ । ବାକ୍ସର ଚାବି ଥାଉଁ ଥାଉଁ ତୁମେ ଚାବି ଅଣ୍ଡାଳୁଛ ଓ ବାକ୍ସର ଧନ ତୁମକୁ ଦିଶୁ ନାହିଁ । ହଜିଲା ଧନ ଖୋଜିଲା ଠାଇଁ ।

ବାସ୍ତବରେ ଗୋଟିଏ ପ୍ରକାର ହରିଣ ପରି । ଏହାର ନାହିରେ କସ୍ତୁରି ଥାଏ । କିନ୍ତୁ ଏହି କସ୍ତୁରିର ସୁବାସ ଏତେ ବେଶି ଯେ ଏହା କେଉଁ ଅଜଣା ରାଇଜରୁ ଆସିଲା ପରି ସେହି ହରିଣକୁ ଲାଗେ । ତେଣୁ ହରିଣ ଦଉଡ଼ି ବୁଲେ ? ଖୋଜେ ଓ ଶେଷରେ ବିପଦରେ ପଡ଼େ ।

ଆମେ ଅସହାୟ ହୋଇ ପଡୁଛୁ । କିଏ ବଳ ଦେବ ? କାହାଠାରୁ ଶକ୍ତି ପାଇବା ? ସବୁ ଆମ ପାଖରେ । ଶୁଣିବା, ଦେଖିବା, ବୁଝିବା ଓ କରିବା । ସମସ୍ୟା ଆମର । ଆମେ ଏଥିପାଇଁ ଅନ୍ୟଙ୍କଠାରେ ହାତ ପତାଇବା ନାହିଁ । ଆମ ବଳରେ ଆମେ ହେବା ବଳୀୟାନ ।

□□□

# ଗ୍ରାମ ବିକାଶରେ ଜନଶିକ୍ଷାର ଭୂମିକା

ଗାଁଟା ଯାକ ଦିନ ମଜୁରିଆ । ରାତି ପାହିଲେ ପର ଦୁଆରେ ହାଜର, ପାଇଟି ପାଇଁ । ଏଥିରେ ହେଳା ନାହିଁ, ନଗଲେ ନଆଇଲେ କୁଟୁମ୍ବ ପର । ଯାଇତାଇ ଘର ବଖୁରିଏ, ମାଣେ କଣେ ଜମି ନାହିଁ, ଜୀବନରେ ମାନ ଅଭିମାନ ଜାଣନ୍ତି ନାହିଁ । ମାନ କରିବେ କାହାକୁ ଓ କାହିଁକି ? ମୂଲିଆ ପୁଅ ମାନ କଲା, ମୂଲ ଗଉଣିକି ହାନି କଲା । ମନରେ ମାନ ମରିଯାଏ ସେହି ମାଣକ ପାଇଁ । ସେ ଗାଁରେ ଜନଶିକ୍ଷା କେନ୍ଦ୍ରଟିଏ, ମିଟୁ ସେଠାକୁ ଯାଏ ସତ, ସେ ଶୁଣିଛି, ସେ ବହି ପଢ଼ିବ, ଅକ୍ଷର ଚିହ୍ନିବ, ଗୀତ ଗାଇବ, ତା' ମନରେ ଅନେକ ପ୍ରଶ୍ନ,

ସେ ପାଠ ପଢ଼ିଲେ, ତା'ର ଏଇ ଦଦରା ଜୀବନ ସଳଖି ଯିବ କି ?

ତା' କ୍ଷେତର ଅମଳ ଓ ଆୟ ବଢ଼ିଯିବ କି ?

ତା' ଜୀବନରେ ସାକ୍ଷରତା କି କାମରେ ଲାଗିବ ?

ଦାରିଦ୍ର୍ୟ ଓ ସାମାଜିକ ଅସମାନତାରୁ ସେ ମୁକ୍ତ ହୋଇପାରିବ କି ?

ଏପରି ଅନେକ ପ୍ରଶ୍ନ । ମିଟୁ ମଟମଟ କରି ଆଖି ଖୋଲୁଛି । କିନ୍ତୁ ତା ଆଖିରେ କଳକା ବାଣ ପରି ଲାଗୁଛି । ପ୍ରଶ୍ନର ଉତ୍ତର ନାହିଁ, ଉପାୟ ମଧ୍ୟ ଦିଶୁ ନାହିଁ । କେବଳ ମଜୁରିଆ ମିଟୁ ନୁହେଁ । ସମସ୍ତେ ଏପରି, ଯାହାଙ୍କୁ ଜନଶିକ୍ଷା ନେବାକୁ ପଡୁଛଇ, ସମସ୍ତେ ଏହି ପ୍ରଶ୍ନ ପଚାରୁଛନ୍ତି । ସକାଳୁ ସଞ୍ଜ ଯାଏଁ ମୁଣ୍ଡ ଝାଳ ତୁଣ୍ଡରେ ମାରୁଛନ୍ତି । ଘରକୁ ଫେରିଲେ ଦିହମୁଣ୍ଡ ଅବଶ, ପଡ଼ି ଯାଉଛନ୍ତି ହେଁସ ଉପରେ, ମଶିଣାରେ, ନୋହିଲେ ଭୂଇଁରେ । ଗାଁ, ଖଣିଖାଦାନ, ବଣଜଙ୍ଗଲ, ବସ୍ତି ଅଞ୍ଚଳ-ସବୁଠି ଏଇଆ । ବିଶେଷ କରି ଗାଁ ଗହଳର, ଅବହେଳିତ ଅଞ୍ଚଳର ଯୁବା ବଅସର ପୁଅ ଝିଅମାନେ । ସଢ଼ି, ପଢ଼ି ପଢ଼ିଯାଉଛନ୍ତି, ଅଭାଗା ସେମାନେ । ଏସବୁ ପ୍ରଶ୍ନ କରିବା ସ୍ୱାଭାବିକ । ସେମାନେ ସ୍ୱଭାବତଃ ଆଶା କରିବାର କଥା ଯେ ଜନଶିକ୍ଷା ନେଲେ ସେମାନଙ୍କ ଦୀନହୀନ ଅବସ୍ଥା ସୁଧୁରି ଯିବ, ଆୟ ବଢ଼ିବ, ସମାଜରେ ସେମାନଙ୍କ ମର୍ଯ୍ୟାଦା ଉନ୍ନତ ହେବ, ଦୈନନ୍ଦିନ ଜୀବନର ସମସ୍ୟାଗୁଡ଼ିକର ସମାଧାନ ପନ୍ଥା ସେମାନେ ସ୍ଥିର କରି ପାରିବେ । ଏହା କରି ପାରିଲେ, ଜନଶିକ୍ଷା କାର୍ଯ୍ୟକ୍ରମ ସେମାନଙ୍କ ମନକୁ ପାଇବ, ସେମାନେ ଆପେ ଆପେ ଆକୃଷ୍ଟ ହେବେ କେନ୍ଦ୍ରକୁ ଧାଇଁ ଆସିବେ । ଯେଉଁ କେନ୍ଦ୍ରରେ ଏହା ହୋଇପାରୁଛି, ସେଠି ଜନଶିକ୍ଷା ନିଶ୍ଚିତ ଭାବରେ ସଫଳ ହେବ ଓ ଶିକ୍ଷାର୍ଥୀମାନେ ନିଜ ଜୀବନରେ ଏହାକୁ ବରାବର ଚାଲୁରଖିବେ । ଥରେ ମଜା ବୁଝିଲେ ଓ ମହତ୍ତ୍ୱ ପାଇଲେ, ଏହାକୁ ଛାଡ଼ିବେ କି ?

ବସ୍ତୁତଃ ଜନଶିକ୍ଷା ହେଉଛି, ଗ୍ରାମ ବିକାଶର ଆୟୁଧ। ଗ୍ରାମ ବିକାଶ କହିଲେ, ଗ୍ରାମବାସୀଙ୍କ ଅର୍ଥନୈତିକ, ସାମାଜିକ, ଆଧ୍ୟାତ୍ମିକ ଓ ରାଜନୈତିକ ବିକାଶ। ଏହାହିଁ ସମନ୍ୱିତ ବିକାଶ। ଲୋକମାନେ ଦରିଦ୍ର। ସେମାନଙ୍କ ଗରିବି ଦୂରକରିବା ପାଇଁ ସେମାନଙ୍କୁ କିଛି ଅର୍ଥ ଦେଇ ଦେଲେ ହେବ ନାହିଁ। ସେମାନେ ଏହି ଅର୍ଥକୁ ଉଡ଼ାଇ ଦେବେ। ଯେପରି ଥିଲେ ସେପରି ଗରିବ ହୋଇରହିବେ। ବରଂ ସେମାନଙ୍କ ଜୀବନ ଦୃଷ୍ଟି ଖରାପ ହୋଇଯିବ। ବର୍ତ୍ତମାନ ଆମେ ଲୋକମାନଙ୍କୁ ମାପୁଛୁ କିପରି ? ସେମାନଙ୍କ ଦରମା, ଧନ ସମ୍ପତ୍ତି, କୋଠାବାଡ଼ି ଓ ଭୌତିକ ଭୋଗ ତଥା ସୁଖ ସୁବିଧା ଦ୍ୱାରା। ଏପରି ମାପିବା ବା ମୂଲ୍ୟାଙ୍କନ ଭୁଲ। ମନୁଷ୍ୟକୁ ଆମେ ମନୁଷ୍ୟ ଭାବରେ ଦେଖିବା। ସମସ୍ତଙ୍କୁ ସମାନ ନ୍ୟାୟ ଦେବା, ସେମାନେ କାମ କରିବାର ସମାନ ସୁଯୋଗ ପାଇବେ। ମନୁଷ୍ୟ ସହ ମନୁଷ୍ୟର କାରବାର ରହିବ। ସେମାନଙ୍କ ସମ୍ପର୍କ ମାନବିକ ହେବା ଉଚିତ। ଏଥିରେ ମାନବିକ ମୂଲ୍ୟବୋଧ ରହିବା ଦରକାର। ପ୍ରତ୍ୟେକ ବିଚାର ଓ କାର୍ଯ୍ୟ ଗଣତାନ୍ତ୍ରିକ ପଦ୍ଧତିରେ ହେବ। ନିଜ ଗାଁର ସମ୍ବଳ ଓ ଭୌତିକ ସ୍ଥିତିକୁ ବିଚାରି ସେମାନଙ୍କ ବିକାଶ ପାଇଁ ଗାଁ ଲୋକେ ସ୍ଥିର କରିବା ଉଚିତ, ଗାଁ ଲୋକଙ୍କ ବିକାଶ ପାଇଁ ସେମାନେ ଯୋଜନା କରିବେ। ପରସ୍ପର ମଧ୍ୟରେ ସହଯୋଗ ରହିବ। ଧନୀ ଓ ନିର୍ଧନ, ଉଚ୍ଚ ଓ ନୀଚ, ଛୁଆଁ ଓ ଅଛୁଆଁ ଆଦି ଲୋକଙ୍କ ମଧ୍ୟରେ ଏବେ ଝଗଡ଼ା ଚାଲିଛି, ବଳ ଖଟାଇ କିଏ କାହାକୁ ଦବାଇଦେବ ଏ ପ୍ରକାର ପ୍ରତିଦ୍ୱନ୍ଦିତା ହେଉଛି। ଏହାଦ୍ୱାରା ଶୋଷଣ ଓ କଷଣ ରହିବ। କଳି ତକରାଳ ଲାଗିରହିବ। ପରସ୍ପରକୁ ଘୃଣା କରିବେ। ଗାଁରେ ଏକତା ସଦ୍ଭାବ ସମତା ଓ ମମତା ରହୁନାହିଁ। ଏ ଭାବ ନଥିଲେ, ଗାଁ, ଶ୍ରୀହୀନ ହୋଇଯିବ। ଗାଁର ବିଭିନ୍ନ ପ୍ରକାର ଭୌତିକ ଓ ମାନବିକ ସମ୍ବଳକୁ ସ୍ଥିର କରି ତଦନୁସାରେ ଗାଁର କିପରି ବିକାଶ କରାଯିବ ତାହା ଗାଁଲୋକ ଥୟ କରିବେ। ସେମାନେ ନିଜ ଗାଁର ବିକାଶ କରିବେ। ଦାରିଦ୍ର୍ୟ, ଅସମାନତା ଓ ଅଜ୍ଞତା ଆଜି ଆମ ଜନସାଧାରଣଙ୍କ ସମସ୍ୟା। ଦାରିଦ୍ର୍ୟରୁ ମୁକ୍ତି ପାଇବା ପାଇଁ ଉପାର୍ଜ୍ଜନର ସ୍ତର ବଢ଼ିବ। ଏହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଅସମାନତାରୁ ମୁକ୍ତି। କାରଣ ଅସମାନତା ଯେତେ ଦିନଯାଏ ଥିବ, ସେତେଦିନଯାଏଁ ଦାରିଦ୍ର୍ୟ ରହିବ। ଅସମାନତା ହେତୁ ଅନ୍ୟାୟ ବଢ଼େ। ଅସମାନତା ଓ ଅନ୍ୟାୟ ଆମ ସମାଜର ସର୍ବଶ୍ରେଷ୍ଠ କଳଙ୍କ। ଅଜ୍ଞତା ରହିଲେ ଦାରିଦ୍ର୍ୟ, ଅନ୍ୟାୟ ଓ ଅସମତା ଦୂର କରିବା ପାଇଁ ଗାଁଲୋକଙ୍କୁ ବାଟ ଦିଶିବ ନାହିଁ। ଉପାୟ ସ୍ଥିର କରିପାରିବେ ନାହିଁ, ଶକ୍ତି, ସାମର୍ଥ୍ୟ ଓ ସାହସ ସହକାରେ ସେମାନେ କାମ କରିପାରିବେ ନାହିଁ।

ଏଥିପାଇଁ ବୃତ୍ତିଗତ ଦକ୍ଷତାର ବୃଦ୍ଧି, ସଚେତନତା, ସାକ୍ଷରତା ଓ ଜାତୀୟ

ମୂଲ୍ୟବୋଧକୁ ଜନଶିକ୍ଷାର ଲକ୍ଷ୍ୟ କରି ନିଆଯାଇଛି। ଏଠାରେ ଆମେ ସ୍ମରଣ କରିବା ଯେ ୧୯୯୦ ମସିହାକୁ ଆନ୍ତର୍ଜାତିକ ସାକ୍ଷରତା ବର୍ଷ ଭାବରେ ଗ୍ରହଣ କରାଯାଇଛି। ଆନ୍ତର୍ଜାତିକ ସ୍ତରରେ ମଧ୍ୟ ପଠନ, ଲିଖନ ଅପେକ୍ଷା ଲୋକମାନଙ୍କ ବିକାଶ, ସେମାନଙ୍କ ଜୀବନଯାପନର ମାନ ଉନ୍ନତି ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି। ସର୍ବୋପରି ଆଜିର ସଙ୍କଟମୟ ପରିସ୍ଥିତିରେ ମନୁଷ୍ୟର ମଣିଷ ପଣିଆ ପ୍ରତି ଅଧିକ ନଜର ଦିଆଯାଇଛି। ଏହା ସତ୍ତ୍ୱେ ସାକ୍ଷର ମନୁଷ୍ୟଙ୍କର ସଂଖ୍ୟା ହିସାବ କରିବାରେ ଆମେ ଅଧିକ ଲାଗିପଡୁଛୁଁ। ଆମ ଯୋଜନାରେ, ବିଶେଷକରି ଜନଶିକ୍ଷା ଯୋଜନାରେ ଚରିତ୍ରବାନ୍, ଦେଶପ୍ରେମୀ, ସଚେତନ ଓ ସକ୍ରିୟ ମନୁଷ୍ୟ ତିଆରି କରିବାରେ ସେତେ ନଜର ଦିଆଯାଉ ନାହିଁ। ବିଭିନ୍ନ ଲକ୍ଷ୍ୟଗୁଡ଼ିକୁ ଆମେ ପୃଥକ୍ ପୃଥକ୍ ଭାବରେ ଦେଖୁଛୁଁ। ଅନ୍ୟ ସବୁ ଲକ୍ଷ୍ୟରୁ ଅଲଗା କରି ସାକ୍ଷରତାର ସୃଷ୍ଟି ଓ ପ୍ରସାରରେ ମାମୁଲି କାମ କରିଚାଲିଛୁଁ। ଲୋକମାନଙ୍କ ଆବଶ୍ୟକତା ଓ ଅଭାବକୁ ଠଉର କରିବା ଉଚିତ। ସ୍ଥାନୀୟ ସ୍ୱେଚ୍ଛାସେବୀ ସଙ୍ଗଠନ ଏହା ଭଲ ଭାବରେ କରି ପାରିବେ। ଲୋକଙ୍କ ସହିତ ସେମାନଙ୍କ ସମ୍ପର୍କ ନିବିଡ଼। ସେମାନେ ଲୋକଙ୍କ ଆବଶ୍ୟକତାକୁ ଶିକ୍ଷା କାର୍ଯ୍ୟକ୍ରମରେ ରୂପାୟିତ କରିବା ସହଜ ହେବ। କାମ କରିବା ସଙ୍ଗେ ସଙ୍ଗେ ଯୋଜନାର ପରିବର୍ତ୍ତନ ଓ ସଂଶୋଧନ କରିବେ। ଯୋଜନା ହେଉଛି ମନୁଷ୍ୟର ଓ ମନୁଷ୍ୟମାନଙ୍କ ପାଇଁ। ଏହା ସେମାନଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯିବ। ଜନଶିକ୍ଷା ଯେ ଗ୍ରାମ ବିକାଶର ସାଧନ ଏହା ସବୁବେଳେ ସ୍ମରଣ ରଖିବାକୁ ହେବ।

ପ୍ରତ୍ୟେକ ଗ୍ରାମରେ ବିକାଶର ବିଭିନ୍ନ ଦିଗ ପାଇଁ କାମ ଚାଲିଛି। ବିକାଶ ଅଧିକାରୀମାନେ ଅଛନ୍ତି। ଜନଶିକ୍ଷାକୁ ପଲ୍ଲୀବିକାଶର ସାଧନ କରିବା ପାଇଁ ଏହି ସବୁ ଯୋଜନା ଓ ଅଧିକାରୀମାନଙ୍କ ସହିତ ଜନଶିକ୍ଷା ସଂଶ୍ଲିଷ୍ଟ ହେବା ଉଚିତ। ଏହି ଦୃଷ୍ଟିରୁ ଜନଶିକ୍ଷାର ପ୍ରକଳ୍ପ ଅଧିକାରୀ ପ୍ରେରକ ଓ ଉପଦେଷ୍ଟାମାନଙ୍କ ପ୍ରଶିକ୍ଷଣ ଶିବିରରେ ଏହି ଅଧିକାରୀମାନଙ୍କୁ ଆମନ୍ତ୍ରଣ କରାଯାଏ। ସେମାନେ ଆଲୋଚନା କରନ୍ତି। ବାସ୍, ଏତିକିରେ ସରିଯାଏ। ଜନଶିକ୍ଷା କେନ୍ଦ୍ରରେ ସେମାନଙ୍କ ସାହାଯ୍ୟ କିପରି ନିଆଯିବ ଓ ସହଯୋଗରେ କେତୋଟି ପ୍ରକଳ୍ପ ହାତକୁ ନିଆଯାଇ କାର୍ଯ୍ୟକାରୀ କରାଯିବ ଏହା ପ୍ରାୟ କରାଯାଏ ନାହିଁ। ସବୁ ତତ୍ତ୍ୱରେ ରହିଯାଏ, କାମ ବେଳକୁ ଅକ୍ଷର ଚିହ୍ନା ଓ ବହିଘୋଷିବା ନିର୍ଦ୍ଧୂମ ଚାଲେ। ଜନଶିକ୍ଷା ହେଉଛି ଗ୍ରାମ ବିକାଶ ଓ ପୁନର୍ଗଠନର ସାଧନ। ଏହା ଏକ ବୈପ୍ଳବିକ କାର୍ଯ୍ୟକ୍ରମ। କିନ୍ତୁ ଆମେ କାର୍ଯ୍ୟକ୍ରମଟିକୁ ଧରୁ ଓ ବିପ୍ଳବଟିକୁ ଭୁଲିଯାଉଁ। ଅସଲ ଆତ୍ମାଟିକୁ ଛାଡ଼ି ଦେଇ କାଗଜ କଲମର ଧାରାଟିକୁ ଧରିଥାଉଁ।

ଅର୍ଥନୈତିକ ଉନ୍ନୟନ ଯୋଜନା ସହିତ ଜନଶିକ୍ଷା ଓ ଏହାର ଲକ୍ଷ୍ୟଗୁଡ଼ିକୁ ସାମିଲ କରାଯାଇପାରେ। ଏବେ ତ ଜନଶିକ୍ଷାରେ ଉନ୍ନୟନ ଯୋଜନା ଓ ଅଧିକାରୀଙ୍କ ସହଯୋଗ ଆଶାନୁରୂପ ସଫଳ ହୋଇପାରୁ ନାହିଁ। ସେହିପରି ଭାବରେ ଉନ୍ନୟନ କାର୍ଯ୍ୟକ୍ରମରୁ ଜନଶିକ୍ଷାର ଉଦ୍ଦେଶ୍ୟକୁ ସଫଳ କରିବାର ସମ୍ଭାବନା ଉଜ୍ଜ୍ୱଳ ଦେଖାଯାଉ ନାହିଁ। ପଠନ ସାମଗ୍ରୀର ପ୍ରସ୍ତୁତ, ଅନୁକୂଳ ପରିବେଶ ସୃଷ୍ଟି, ଉତ୍ସାହ ପ୍ରଦାନ ଆଦି ଦିଗରେ ଏହା ଏକାନ୍ତ ସହାୟକ ହୁଅନ୍ତା। ଦାରିଦ୍ର୍ୟ, ଅଜ୍ଞତା ଓ ଅସମାନତା ଦୂରୀକରଣ ଦିଗରେ ଆମ ପଦକ୍ଷେପ ଓ ପ୍ରଚେଷ୍ଟା ଏକ ସମୂହ ଆନ୍ଦୋଳନ ହୁଅନ୍ତା। ୧୯୭୬ ମସିହାରେ ତାଞ୍ଜାନିଆର ରାଜଧାନୀ ଡାରେସଲାମ୍‌ଠାରେ ଆନ୍ତର୍ଜାତିକ ଜନଶିକ୍ଷା ସମ୍ମିଳନୀ କରାଯାଇଥିଲା। ଏଥିରେ ଜନଶିକ୍ଷା ଓ ଉନ୍ନୟନ ବିଷୟରେ ଚର୍ଚ୍ଚା କରାଯାଇଥିଲା। ଏହି ସମ୍ମିଳନୀର ଘୋଷଣା ହେଉଛି, "ମୁକ୍ତି ଓ ପ୍ରଗତି ପାଇଁ ଜନଶିକ୍ଷା"। ଜୁଲିଅସ୍ ନିହେରେଙ୍କ ଆଲୋଚନା ଦ୍ୱାରା ଜନଶିକ୍ଷା ଓ ବିକାଶର ସମ୍ପର୍କ ଓ ଗୁରୁତ୍ୱ ସୁସ୍ପଷ୍ଟ ହୋଇଥିଲା। ସାରା ବିଶ୍ୱରେ ବିଶେଷ କରି ବିକାଶଶୀଳ ରାଷ୍ଟ୍ରରେ ଏହାକୁହିଁ ଜନଶିକ୍ଷାର ସୂତ୍ର ରୂପେ ଗ୍ରହଣ କରାଯାଇଛି।

□□□

# ମାନବିକ ମୂଲ୍ୟବୋଧର ରୂପାୟନ

## (ସଂଗଠିତ ସମଗ୍ର ଓ ସମନ୍ୱିତ ଆନ୍ଦୋଳନ ଅପେକ୍ଷାରେ)

ମନୁଷ୍ୟମାତ୍ରେ ହିଁ ମାନବିକ ସଦ୍‌ଗୁଣସମ୍ପନ୍ନ। ଏହା ସତେ ଯେପରି ତା'ର ଆଜନ୍ମ ସମ୍ପଦ। ସେ ପଶୁ ଠାରୁ ଭିନ୍ନ, ଅସୁର ଠାରୁ ଅଲଗା। ପ୍ରବୃତ୍ତି ପରିଚାଳିତ ପଶୁ ପ୍ରାୟ ସେ ହୋଇପାରେ ନାହିଁ। କାମ-କ୍ରୋଧାଦି ରିପୁଗଣର ସେ ଅଧିକାରୀ। ତେଣୁ ସେପରି ପରିଚାଳିତ ନ ହୋଇ ଷଡ୍‌ରିପୁଙ୍କର ପରିଚାଳନା ସେ କରିଥାଏ। ଗର୍ବ, ଦର୍ପ, ଦମ୍ଭ, ଅହଂକାର, ବଡ଼ିମା ଏସବୁ ଆସୁରିକ ଶକ୍ତି। ଏହା ଦ୍ୱାରା ସେ କବଳିତ ହେଲେ ତା'ର ବୁଦ୍ଧି, ବିବେକ ଓ ଜ୍ଞାନ ହଜିଯାଏ। ସେ ମୂଢ଼ ବିବେଚିତ ହୁଏ। ମନୁଷ୍ୟ ହିଁ ଏକମାତ୍ର ପ୍ରାଣୀ, ଶ୍ରେଷ୍ଠ ପ୍ରାଣୀ ପରମେଶ୍ୱରଙ୍କ ସୃଷ୍ଟିରେ, ଯେ ଆସୁରିକ ଶକ୍ତିକୁ ନିଜ କବଳରେ ରଖିପାରେ, ଲଗାମ ଲଗାଇ ନିୟନ୍ତ୍ରଣ କରେ,

ଉଭୟ ପଶୁତ୍ୱ ଓ ଆସୁରିକତାକୁ ସେ ଛାଟ ମାରି ନିଜକୁ ଶୂନ୍ୟ କରି ନେଇପାରେ, ମାନବିକତା ସେଠି ପୂର୍ଣ୍ଣରୂପେ ବିରାଜିତ ହୁଏ। 'ପଙ୍କଜ ଶୋଭଇ ଯଥା ପଙ୍କମୟ ସରେ'-ଏହା କବିଙ୍କର ଅନୁଭବ। ମନୁଷ୍ୟଠାରେ ଅସମ୍ଭବ ସମ୍ଭାବନା ସମ୍ଭବ ହୁଏ। ସେ ନିଜକୁ ସଂଯତ କରିପାରେ। ତେଣୁ ସେ ଜିତେନ୍ଦ୍ରିୟ ହୁଏ। ସମସ୍ତଙ୍କ ସହିତ ସେ ମିଳିମିଶି ସହନଶୀଳ ହୋଇପାରେ।

ଜିତେନ୍ଦ୍ରିୟ ମନୁଷ୍ୟ ହୁଏ ନିରହଂକାର ଓ ଆଡ଼ମ୍ବରଶୂନ୍ୟ। ସମତା ଓ ମମତା ତାର ଭୂଷଣ ହୁଏ। କୂଟକପଟ ସେ କରିପାରେ ନାହିଁ। ସମସ୍ତଙ୍କୁ ସେ ଆପଣାର କରେ ଓ ସମସ୍ତେ ତା'ର ଆପଣାର ହୋଇଯାଆନ୍ତି। ସମସ୍ତ ବସୁଧାର ଅଧିବାସୀ ତା'ର କୁଟୁମ୍ବ ହୋଇଯାନ୍ତି। ବିଶ୍ୱମୈତ୍ରୀ ସେ କେବଳ ଘୋଷଣା କରେ ନାହିଁ, କାମରେ କରେ ତଥା ମନରେ ଚିନ୍ତା କରେ। 'ସର୍ବଜନ ହିତେ ରତାଃ ଓ ସର୍ବଜନ ସୁଖେ ରତାଃ'-ତା'ର ଆଚରଣ ଓ ଅଭ୍ୟାସରେ ପରିଣତ ହୁଏ। ଏକ ନିଭୃତ ସ୍ଥାନରେ ରହି ସୁଦ୍ଧା ସେ ବିଶ୍ୱକଲ୍ୟାଣକାମୀ ହୋଇପାରେ। ନିଜକୁ ବିପଦସଙ୍କୁଳ କରି ସୁଦ୍ଧା ସେ ଅନ୍ୟର ସେବା କରିପାରେ। ମାନବ ସେବା ତା'ପାଇଁ ମାଧବସେବା ହୁଏ। ନିରକ୍ଷର, ଚର୍ମଚକ୍ଷୁହୀନ ଭୀମଭୋଇଙ୍କ ଉଚ୍ଚାରଣ :

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ।"

ଉପରୋକ୍ତ ଉକ୍ତିକୁ ମନୁଷ୍ୟ ନିଜ ଜୀବନରେ ସାକାର କରେ। ବିଭେଦ ମଧ୍ୟରେ ଅଭେଦତ୍ୱକୁ ଜୀବନର ଅଙ୍ଗୀଭୂତ କରେ। ଏ ସବୁ ସଦ୍‌ଗୁଣ ଓ ମୂଲ୍ୟବୋଧକୁ ଆଚରିତ କରି କହେ,

"ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ।"

ଅନ୍ତରରେ ଭଜି ଭଜି ସତ୍ୟ ସଚେତନ କନ୍ଧ ଭୀମଭୋଇ ଗାଇଛନ୍ତି,

"କହୁଅଛି ସମସ୍ତଙ୍କୁ,
ବ୍ରହ୍ମାଣ୍ଡକୁ ସମ୍ଭାଳ ସତ୍ୟଧର୍ମକୁ।"

ଜଙ୍ଗଲବାସୀ ଆଦିବାସୀ ପିଲାଟି ସତ୍ୟର ଡାକରା ଦିଅନ୍ତି ଜାତି, ଧର୍ମ, ବର୍ଣ୍ଣ, ଦେଶ ନିର୍ବିଶେଷରେ ସମସ୍ତଙ୍କୁ। ଧର୍ମ ହିଁ ସତ୍ୟ ଓ ସତ୍ୟ ହିଁ ଧର୍ମ। ପରାତ୍ପର ପରମାତ୍ମା ହୁଅନ୍ତି ସତ୍ୟ ଓ ସତ୍ୟ ହିଁ ପରମାତ୍ମା। ସତ୍ୟ ଓ ଅହିଂସାକୁ ଆୟୁଧ, ଆଶ୍ରୟ ଓ ଆଚରଣ କରି ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଚାଳିତ ସଂଗ୍ରାମରେ ପ୍ରବଳ ପରାକ୍ରମୀ ବ୍ରିଟିଶ ସାମ୍ରାଜ୍ୟବାଦୀ ସରକାର ହଟିଯାଏ।

ସତ୍ୟାଗ୍ରହୀର ରଣ କୌଶଳରେ ସେ ହତପ୍ରଭ ପାଲଟିଯାଏ । ଦେଶ ଓ ବିଶ୍ୱରୁ ଉତ୍ପୀଡ଼ନ ଘୁଞ୍ଚାଇ ଦେବାର ଶପଥ ମହାତ୍ମାଜୀ ଗ୍ରହଣ କରନ୍ତି । ଘୃଣା ନୁହେଁ, ପ୍ରେମର ବିଜୟ ଘଟେ । ଜୀବ ପରମାତ୍ମା ହୋଇଯାଆନ୍ତି । ଏପରି ସବୁ ମୂଲ୍ୟବୋଧ ମାନବଜୀବନକୁ ଦେବୋପମ ଓ ଦେବାତୀତ କରିଛି ।

ବାୟାଚଢ଼େଇ ଦୋହଲୁଥାଏ ମଜାରେ । ତା' ବସାଟି ଅନନ୍ୟ କାରିଗରୀ କୌଶଳ । ବାୟା ପାଇଁ କାରିଗରୀ ଶିକ୍ଷା ଦିଆଯାଇଛି କି ? କୋଇଲିର କୁହୁତାନ କେଡ଼େ ମଧୁର ଓ ମନ ଲୋଭା ! କୋଇଲି ଛୁଆ ପାଇଁ ସଙ୍ଗୀତ ବିଦ୍ୟାଳୟ ଖୋଲାଯାଇଛି କି ? ଶିଶୁ କଙ୍କି ନିରନ୍ତର ଉଡ଼ିବୁଲେ । ଏଥିପାଇଁ ଶିକ୍ଷକ ନିଯୁକ୍ତ ହୁଏ କି ? ବାୟା, କୋଇଲି ଓ କଙ୍କି ଜନ୍ମରୁ ଏପରି ହୋଇ ଜନ୍ମ ନିଅନ୍ତି । ମନୁଷ୍ୟ ବାଳୁତ କାଳରେ ଅସହାୟ ହୋଇ ଜନ୍ମ ନିଏ । ଏହା ଶିକ୍ଷାର ସମୟ । ଜନନୀ ଶିକ୍ଷକ ହୁଅନ୍ତି, ଦେଖି ଶୁଣି ଶିଶୁ ଶିକ୍ଷା କରେ । ତାଲିମପ୍ରାପ୍ତ ଶିକ୍ଷକ ମଧ୍ୟ ଥାଆନ୍ତି । ଖିଆପିଆ, ବେଶଭୂଷା, ଚାଲିଚଳନ, ଡ଼ିଆଁଡ଼େଇଁ କରେ । ନାଚ଼କୁଦ ଶିଖେ । ଅନୁକରଣ ମଧ୍ୟ କରେ । ଶିଶୁ ନମନୀୟ ଥାଏ । ବିକାଶ ସାଧନ କରେ । ଆଜୀବନ ଏହି କାମ ଚାଲିଥାଏ । ଲାଳନ ପାଳନ ଶିଶୁ ଶିକ୍ଷାର ଅନ୍ତର୍ଭୁକ୍ତ । ସମନ୍ୱୟ ଘଟେ । ପରିବେଶ ସହିତ ଘାତ ପ୍ରତିଘାତ ମଧ୍ୟ ଚାଲେ । ପରିବାର, ପାଠଶାଳା, ପରିବେଶ ଓ ଶିଶୁ ବହୁଦିଗରୁ ପରସ୍ପର ମଧ୍ୟରେ ଏହି ଘାତ ପ୍ରତିଘାତ କ୍ରମେ କ୍ରମେ ଜଟିଳତର ହୋଇ ଉଠେ । ବାଲ୍ୟ, କୈଶୋର, ଯୌବନ, ବାର୍ଦ୍ଧକ୍ୟ ଏପରି ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରରେ ରୂପାନ୍ତରୀକରଣ ଚାଲୁଥାଏ । ଏହିପରି ଭାବରେ ଶିକ୍ଷା ଜୀବନବ୍ୟାପୀ ଜୀବନ ପାଇଁ ଓ ଜୀବନଯାପନ ମାଧ୍ୟମରେ ଚାଲେ ।

ଅଧିକନ୍ତୁ ମନୁଷ୍ୟର ବୈଶିଷ୍ଟ୍ୟ ହେଉଛି, ସେ ହିଁ ମନନ କରିପାରେ । ଏଥିପାଇଁ ସେ ମସ୍ତିଷ୍କର ଅଧିକାରୀ । ତେଣୁ ହେତୁ-ଚେତା ରଖି ସେ ଗଭୀର ଭାବରେ ଚିନ୍ତନ କରିପାରେ, ବିଶ୍ଳେଷଣ ଓ ସଂଶ୍ଳେଷଣ କରିପାରେ, ସ୍ମରଣ ରଖି ନିଶ୍ଚିତ ଅନୁମାନ କରିବାକୁ ସମର୍ଥ ହୁଏ । ଏଥିସହିତ ହିତାହିତ ଶ୍ରେୟ ପ୍ରେୟ ନିତ୍ୟାନିତ୍ୟର ବିଚାରକରି ସିଦ୍ଧାନ୍ତରେ ଉପନୀତ ହୋଇପାରେ । ଏଣୁ ମାନବିକ ମୂଲ୍ୟବୋଧ କ୍ରମେ ପରିପୁଷ୍ଟ ଓ ବଳିଷ୍ଠ ହେଉଥାଏ, ଯେଉଁଥିପାଇଁ ସେ ନିଜ ଜୀବନ ବିସର୍ଜନ ପାଇଁ ପ୍ରସ୍ତୁତ ରହେ; ପ୍ରାଣ ଯାଉ ପଛକେ, ଯାହା ଜୀବନକୁ ସାର୍ଥକ କରିଛି ଓ କରୁଛି ସେହି ମୂଲ୍ୟବୋଧରେ ଭୂଷିତ ହୋଇ ରହିବ ।

ଏଠାରେ ଗୋଟିଏ ଆଧ୍ୟାତ୍ମିକ ପ୍ରଶ୍ନ ଉଠେ, ବହୁ ମନିଷୀ ଯୁଗେ ଯୁଗେ ଏହି ପ୍ରଶ୍ନ ଉଠାଇଛନ୍ତି ଓ ନିଜ ସାଧନାରେ ସିଦ୍ଧି ଲାଭ କରି ମହାନ୍ ସାଧକ ଭାବରେ ଇତିହାସର ପୃଷ୍ଠା ମଣ୍ଡନ କରି ଏହାର ଉତ୍ତର ଦେଇଛନ୍ତି । ମନୁଷ୍ୟକୁ କିଏ କାହିଁକି

ଏ ସଂସାରକୁ ପଠାଇଛନ୍ତି ? ସେ କାହାର ପୁତ୍ର ଓ କିଏ ତାଙ୍କର ପୁତ୍ର, କନ୍ୟା, ସହୋଦର ଓ ଆତ୍ମୀୟ ବାନ୍ଧବ ? ପ୍ରଭୁ ପରମାତ୍ମାଙ୍କ ଦ୍ୱାରା ପ୍ରେରିତ ଏହି ମାନବ ଓ ଧନ, ଦାରା, ସୁତ ଆଦି ସବୁ କିଛି ଓ ସମସ୍ତ ତାଙ୍କ ଦାନ । ତାଙ୍କଠାରେ ନିତ୍ୟ, ବାରମ୍ବାର, ସର୍ବଦା ସମର୍ପିତ ହୋଇ ରହିବା ମନୁଷ୍ୟର ଧର୍ମ ଓ କର୍ମ । ଭାଗବତକାର ଜଗନ୍ନାଥ ଦାସଙ୍କର ଦୁଇଟି ଧାଡ଼ି ଏଠାରେ ସ୍ମରଣୀୟ :

"ଧନ୍ୟ ଜୀବନ ଏ ଜଗତେ
ସେ ପ୍ରାଣଧରେ ପର ହିତେ ।"

ବ୍ୟାସଦେବ ମଧ୍ୟ ଅଷ୍ଟାଦଶ ପୁରାଣାଦି ରଚନାକରି ଏହାର ସାର ସଂକ୍ଷିପ୍ତ ଦୁଇଟି ବଚନ ସମଗ୍ର ମାନବସମାଜ ପାଇଁ ଶାଶ୍ୱତ ସତ୍ୟ ଭାବରେ ସିଦ୍ଧାନ୍ତ ଦେଇଛନ୍ତି :

"ପରୋପକାରାୟ ସ୍ୱର୍ଗାୟ,
ପାପାୟ ପରପୀଡ଼ନମ୍ ।"

କଥା, କାମ ଓ ଚିନ୍ତାରେ ଅନ୍ୟକୁ ଯନ୍ତ୍ରଣା ଦେବା ପାପ । ଏହି ପାପରୁ ରକ୍ଷା ପାଇଁ ମହାତ୍ମା ଗାନ୍ଧୀ "ଖରାପ କଥା ଶୁଣିବି ନାହିଁ, ଖରାପ କାମ ଦେଖିବି ନାହିଁ, ଖରାପ ବାକ୍ୟ ଉଚ୍ଚାରଣ କରିବି ନାହିଁ", ଏହି ଶପଥର ବ୍ରତ ଜାରି ରଖିବା ଉଦ୍ଦେଶ୍ୟରେ ତିନି ଗୋଟି ମାଙ୍କଡ଼ ମୂର୍ତ୍ତି ରଖିଥିଲେ । ଗୋଟିକରେ ଆଖି ଉପରେ ହାତ, ଅନ୍ୟଟିର କାନ ଉପରେ ଓ ଅବଶିଷ୍ଟଟିର ପାଟି ଉପରେ ହାତ ରହିଥିଲା । ପକ୍ଷାନ୍ତରେ, ଭୋକିଲା ମଣିଷଟିକୁ ନିଜ ଖାଇବାରୁ କାଟି ମୁଠାଏ ଦେବା, ଶୋଷିଲା ବ୍ୟକ୍ତିକୁ ଟୋପାଏ ପାଣି ନିଜ ମାଠିଆରୁ ଦେବା, ଶୀତରେ ଥରୁଥିବା ମଣିଷଟିର ପିଠି ଉପରେ ନିଜ କପଡ଼ାରୁ ଖଣ୍ଡେ ତାଙ୍କି ଦେବା, ବର୍ଷା ତୋ ତୋ ପଡୁଥିବା ବେଳେ ନିଜ ପିଣ୍ଡାରେ ସାମୟିକ ଆଶ୍ରୟ ଦେବା ଆଦି ହେଉଛି ପୁଣ୍ୟ । ଏଠି କଠିନ ହୃଦୟକୁ କୋମଳ କରାଯାଉଛି, ତ୍ୟାଗ ସହିବାକୁ ପଡୁଛି । ଅନ୍ୟ ଜଣେ ଆଶ୍ରୟ, ଭରସା ଓ ଶାନ୍ତି ପାଇବାର ଦେଖି ଆମ ମନରେ ଆନନ୍ଦ ଆସୁଛି । ଏହିସବୁ ତ ମୂଲ୍ୟବୋଧ, ଯାହାର ନିଦର୍ଶନ ମଣିଷ ନିଜର ଦୈନନ୍ଦିନ କାମରେ ଦେଖାଇ ନିଜ ମନୁଷ୍ୟତାର ପ୍ରମାଣ ଦେଉଛି ।

ଈଶୋପନିଷଦରେ "ତେନ ତ୍ୟକ୍ତେନ ଭୁଞ୍ଜୀଥା" ବୋଲି କୁହାଯାଉଛି । ତ୍ୟାଗରେ ଭୋଗ, ଆନନ୍ଦ ଓ ଶାନ୍ତି । ସଂସ୍କୃତ ସାହିତ୍ୟରେ ମୂଲ୍ୟବୋଧର ଭଣ୍ଡାର ନିହିତ ଅଛି । ଏସବୁ ଆମ ଉଜ୍ଜ୍ୱଳ ପରମ୍ପରା । ଆମ ଐତିହ୍ୟ ପଥଭ୍ରଷ୍ଟ ମନୁଷ୍ୟକୁ ଆଲୋକ ଦେଖାଏ । ଜୀବନଯାତ୍ରାର ମାର୍ଗ ସେ ପାଏ । ମାର୍ଗରେ ରହିବାର ବ୍ରତ ସେ ପୋଷଣ କରେ । ସମୟ ଏପରି ହେଲା । ଆମ ଦେଶ ପରାଧୀନ ହୋଇ ରହିଲା

ଦୀର୍ଘକାଳ। ଏହାଫଳରେ ଆତ୍ମବିଶ୍ୱାସ, ଆତ୍ମନିୟନ୍ତ୍ରଣ ଓ ଆତ୍ମନିର୍ଭରଶୀଳତା ଯାହାକି ମାନବିକ ମୂଲ୍ୟବୋଧ ଓ ମନୁଷ୍ୟର ଅଧିକାର, ଏସବୁକୁ ମନୁଷ୍ୟ ହରାଇ ବସିଲା ବା ଏ ସବୁ ସଙ୍କୁଚିତ ହୋଇଗଲା। ଅଧିକ ସଂଖ୍ୟାରେ ନିରକ୍ଷର ଲୋକେ ରହିଲେ। ଅଣ ଅକ୍ଷରର ଜ୍ଞାନକୁ ଛାଡ଼ି ଆମେ ଅକ୍ଷର ଜ୍ଞାନକୁ ଜାବୁଡ଼ି ଧରି ସାକ୍ଷର ହେବାର ଡିଣ୍ଡିମ ବଜାଇ ବସିଲୁ। ନୈତିକବଳ ଯାହାକି ଅନ୍ୟତମ ମୂଲ୍ୟବୋଧ ତାକୁ ହରାଇ ଦେଲୁ। ନୀତିନିଷ୍ଠର ବୀରତ୍ୱ ଓ କାପୁରୁଷର ବୀରତ୍ୱ ମଧ୍ୟରେ ଆକାଶ ପାତାଳ ପ୍ରଭେଦ। ପରାଧୀନତା ଏକ ଦୁର୍ଦ୍ଦଶା। ଏହି ଦୁଃସମୟରେ ଆମେ ଜ୍ଞାନ, ବୁଦ୍ଧି ଓ ବିବେକକୁ ହରାଇ ବସିଲୁ। ଏ ତ ମନୁଷ୍ୟତା ତେବେ ଆଉ ରହିଲା କ'ଣ ?

ଏତେବେଳେ ଦେଶରେ ମୁକ୍ତି ସଂଗ୍ରାମ ଚାଲିଲା। ମହାନାୟକ ମହାତ୍ମା ଗାନ୍ଧୀ ଆମର କର୍ଣ୍ଣଧାର ହେଲେ। ସତ୍ୟାଗ୍ରହ, ଅହିଂସା, ନୈତିକଶକ୍ତି, ତ୍ୟାଗ ଆଦି ମାନବିକ ମୂଲ୍ୟବୋଧର ପ୍ରୟୋଗ ଦକ୍ଷିଣ ଆଫ୍ରିକାରେ କରିସାରି ନିଜ ମାତୃଭୂମିରେ ଓ ବିଶ୍ୱବକ୍ଷରେ ଏହାର ବ୍ୟାପକ ପ୍ରୟୋଗ କଲେ। ଭାରତ ଆତ୍ମାନୁସନ୍ଧାନରେ ସେ ବିଶ୍ୱାତ୍ମା ଅନୁଭବ କରନ୍ତି। ତେଣୁ ମୁକ୍ତି ସଂଗ୍ରାମର ରଣ-କୌଶଳ ବିଶ୍ୱରୁ ଦାରିଦ୍ର୍ୟ, ଉତ୍ପୀଡ଼ନ, ଶୋଷଣ ଓ କଷଣ ଦୂର କରିବାରେ ସହାୟକ ହୋଇଛି। ସତ୍ୟ, ଅହିଂସା ଓ ପ୍ରେମ ଆଧାରିତ ଏହି ରଣ-କୌଶଳର ବିଶ୍ୱବ୍ୟାପୀ ସଫଳପ୍ରୟୋଗ କରାଯାଇଛି। ସତ୍ୟ ହେଉଛି 'ଏକୋଽହଂ ବହୁସ୍ୟାମ ଏହା ଛଡ଼ା ନାୟମାତ୍ମା ବଳହୀନେନ ଲଭ୍ୟ'। ତେଣୁ ମହାତ୍ମାଜୀ ଦଣ୍ଡାୟମାନ ହୁଅନ୍ତି ନୈତିକ ବଳରେ। ପରଧନ ନ ଛୁଅଁ ହାତରେ ଓ ପରସ୍ତ୍ରୀ ମାତରେ, ଏହାକୁ ସେ କାୟମନୋବାକ୍ୟରେ ପାଳନ କରନ୍ତି। ମୂଳକଥାଟି ହେଉଛି, 'ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍, ପରଦାରେଷୁ ମାତୃବତ୍।' ନିଜ ଆଚରଣରୁ No greed but need ଅର୍ଥାତ୍ ଲୋଭ ବର୍ଜନ କରି ଆବଶ୍ୟକତା ଅନୁରୂପ ଗ୍ରହଣ କରିବା। ବସ୍ତୁତଃ ଭାରତୀୟ ଐତିହ୍ୟର ପ୍ରୟୋଗଶାଳା ହୁଏ ମହାତ୍ମାଜୀଙ୍କର ମାର୍ଗଦର୍ଶନରେ ପରିଚାଳିତ ମୁକ୍ତିସଂଗ୍ରାମ,- ଏକ ଜନ ଆନ୍ଦୋଳନ। ବିଶୁଦ୍ଧତା, ସ୍ୱଚ୍ଛତା, ଅନାବିଳତା ଓ ସହୃଦୟତାର କଷଟୀ ପଥରରେ ଉଭୟ ଉଦ୍ଦେଶ୍ୟ ଓ ଉପାୟ ପରୀକ୍ଷିତ ହୁଏ। 'ସତ୍ୟସନ୍ଧାନ ମାର୍ଗରେ ମୋ ପରୀକ୍ଷା' ହେଉଛି ଯଥାର୍ଥତଃ ତାଙ୍କ ଆତ୍ମକଥା।

ସଂଗ୍ରାମ ତେଣୁ ସଫଳ ହୁଏ ଓ ଦେଶବାସୀ ସ୍ୱାଧୀନତା ଲାଭ କରନ୍ତି। ରାଷ୍ଟ୍ରୀୟ ପ୍ରତୀକ, ସଙ୍ଗୀତ ଓ ସମ୍ବିଧାନ ବହନ କରନ୍ତି ଆମ ଐତିହ୍ୟର ପରୀକ୍ଷିତ ମୂଲ୍ୟବୋଧଗୁଡ଼ିକୁ। ନ୍ୟାୟ, ସମାନତା, ଭ୍ରାତୃତ୍ୱ, ଗଣତନ୍ତ୍ର, ସାର୍ବଭୌମତ୍ୱ, ଧର୍ମନିରପେକ୍ଷତା, ଜନକଲ୍ୟାଣ ଆଦି ଦିଗରେ ସମ୍ବିଧାନର ପୂର୍ବାଭାସ ସମର୍ପିତ

ହୁଏ । ତଦନୁସାରେ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ କରାଯାଏ ଦେଶବାସୀଙ୍କର ସର୍ବୋତ୍ତମ ବିକାଶ ପାଇଁ । ସମ୍ବିଧାନର ସଂଶୋଧନ ଅଣୀରୁ ଅଧିକ ଥର କରାଯାଇ ସାରିଛି ଓ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ ଚାଲୁ ରହିଛି । ତଥାପି ସମ୍ବିଧାନର ଅଙ୍ଗୀକାର ଅନେକାଂଶରେ ଅସଂପୂର୍ଣ୍ଣ ରହିଛି ।

ଇତ୍ୟବସରରେ ଜାତିର ଜନକ ମହାତ୍ମା ଗାନ୍ଧୀ ଆତ୍ମବଳି ଦାନ ଦିଅନ୍ତି ଆତତାୟୀର ଗୁଳି ଚୋଟରେ ।

"ଈଶ୍ୱର ଆଲ୍ଲା ତେରେ ନାମ,
ସବ୍‌କୋ ସନମତି ଦେ ଭଗବାନ୍ ।"

ଧର୍ମନିରପେକ୍ଷତାର ଏହି ଧ୍ୱନି ଉଚ୍ଚାରଣ କରୁ କରୁ ଆତତାୟୀକୁ କ୍ଷମା ଦେବାକୁ କହୁଥିବାବେଳେ ସେ ଶେଷନିଃଶ୍ୱାସ ତ୍ୟାଗ କରନ୍ତି । ମାନବିକ ମୂଲ୍ୟବୋଧର ମୂର୍ତ୍ତିମନ୍ତ ପ୍ରତୀକ ମହାତ୍ମା ଗାନ୍ଧୀ ଦେଶ ଓ ବିଶ୍ୱକୁ ସେ ମୂଲ୍ୟବୋଧର ଟେକ ରଖି ପାର୍ଥିବ ଶରୀରକୁ ଛାଡ଼ି ଅମରଧାମକୁ ଗତି କରିଛନ୍ତି । ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ, ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ, ମୌଲନା ଆବୁଲ୍ କାଲାମ ଆଜାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରମୁଖ ତାଙ୍କର ସହକର୍ମୀଗଣ ମଧ୍ୟ ସଂସାରରୁ ବିଦାୟ ନେଇଯାଇଛନ୍ତି । ଦେଶ ବିଦେଶର ଗାଁ ଗଣ୍ଡା, ଗିରିବନ, ସହରାଞ୍ଚଳ ନରନାରୀ ଗାନ୍ଧିମାର୍ଗୀ ସତ୍ୟଅହିଂସାର ପୂଜାରୀ ଦେଶପ୍ରେମୀମାନେ କାଳର ଗତିରେ ଇହ ଜଗତରେ ନାହାନ୍ତି । ସେମାନଙ୍କ ମଧ୍ୟରୁ ଯେଉଁ ମୁଷ୍ଟିମେୟ ସ୍ମରଣୀୟ ବ୍ୟକ୍ତିମାନେ ଜୀବିତ ଅଛନ୍ତି ସେମାନେ ଜୀବନ ସହିତ ଶେଷ ସଂଗ୍ରାମ କରୁଛନ୍ତି । ମୂଲ୍ୟବୋଧର ଅବକ୍ଷୟରେ ତୀବ୍ର ଜ୍ୱାଳା ଅନୁଭବ କରୁଥିଲେ ସେ ନ୍ୟାଯ୍ୟ ପଥରେ ସେମାନେ ଅବିଚଳିତ ଅଛନ୍ତି । କିନ୍ତୁ ବେଳକୁ ବେଳ ଅବକ୍ଷୟର ଦ୍ୱାର ଅଧିକରୁ ଅଧିକ ମେଲା ହେବାରେ ଲାଗିଛି ।

ଗୋଟିଏ ଦାବି ଉପସ୍ଥାପନ କାଳରେ ଅନୁରୂପ ଦାୟିତ୍ୱ ସମ୍ପାଦନ ନ କରି, ଦାବି ସଇତାନର ଭୂମିକାରେ ସବୁକୁ ମାଡ଼ି ବସୁଛି । କଥା ଓ କାମ ମଧ୍ୟରେ ସମାନୁପାତିକତା ରକ୍ଷା ନକରି, କଥା ହିଁ ରାଜତ୍ୱ କରୁଛି । କାମ ଦେଖା ନାହିଁ କହିଲେ ଚଳେ । ରାଜନୀତି ନୀତିଶ୍ରେଷ୍ଠ ବା ଉତ୍କୃଷ୍ଟ ନୀତି ନ ହୋଇ ନିକୃଷ୍ଟତାର ଆସନ ଅଳଂକୃତ କରୁଛି; ସେବାର ମାଧ୍ୟମ ନ ହୋଇ ଦେବା ନେବାରେ ପରିଣତ ହେଉଛି । ସ୍ୱାର୍ଥସିଦ୍ଧିର ବଳିଷ୍ଠ ଆୟୁଧ ହୋଇ ଯାଉଛି । କ୍ଷମତା ଲୋଭର ହାତବାରିସ ହେବାରେ ଲାଗିଛି । କଳିକାଳକୁ ଲକ୍ଷ୍ୟ କରି କଦ୍ଧଜବି ଭୀମଭୋଇ ଧନମଦ, ପଣମଦ, ମାୟମଦ ଓ ସ୍ତ୍ରୀମଦର ଉଲ୍ଲେଖ କରିଛନ୍ତି । ଆଜି ଏଥିସହିତ ବୋତଲର ମଦ ଓ କ୍ଷମତାର ମଦକୁ ସାମିଲ କରାଯାଇଛି । ଏସବୁ ଏକରୁ ଆରେକ

ବଳିୟ୍ୱର । ବିଜ୍ଞାନର କରାମତିରୁ ମଦ ବହୁବିଧ ହେବାରେ ଲାଗିଛି । ମାୟାମଦର ଜାଲ ଆମକୁ ଅନ୍ଧ କରି ଦେଉଛି-ପ୍ରତିଟି ମୁହୂର୍ତ୍ତ ଆମକୁ ବେଢ଼ିଛି । ସ୍ୱପ୍ନ, ଶୟନ ଓ ଜାଗରଣରେ ମଧ୍ୟ ଛାଡୁ ନାହିଁ । ଜୁଆ, ପଣା ଆଦି ସେ ବେଳରେ ରଜା ରାଜୁଡ଼ା ଏଥିରେ ମାତୁଥିଲେ । ଆଜି କଥା କଥାକେ ମଦ ବାଜି ଲଗାଇ ଦେଉଛୁ । ସ୍ତ୍ରୀମଦର ଯାଦୁକରୀ ପ୍ରଭାବ ଆମ ଆଗରେ କୁହେଳିକା ସୃଷ୍ଟି କରୁଛି । ନାରୀକୁ ଜନନୀ, ଜାୟା ଓ ଭଗିନୀ ରୂପରେ ଦେଖିବାର ସୁଯୋଗ ନାହିଁ । ଯେ ଯେ ନରକର ଦ୍ୱାର ବୋଲି କୁହାଯାଉଥିଲା ସମ୍ଭବତଃ ଆଜି ତାହା ପ୍ରତ୍ୟକ୍ଷୀଭୂତ । ଧନର ମଦ ସବୁ ମଦର ମୂଳ ହୋଇଛି । ସେଥିପାଇଁ ବହୁକାଳ ପୂର୍ବରୁ ଆଦି ଶଙ୍କରାଚାର୍ଯ୍ୟ ଗୃହୀମାନଙ୍କୁ ସତର୍କ କରିଦେଇଛନ୍ତି । ବ୍ରହ୍ମପଦରେ ଭରସା ରଖିବାପାଇଁ ଧନ, ଜନ, ଯଉବନର ଗର୍ବ କରିବ ନାହିଁ । ନିମିଷକ ମଧ୍ୟରେ କାଳ ଏସବୁ କଳନା କରି ଅପହରଣ କରି ନିଏ । ଏସବୁ ମହାନ୍ ବାକ୍ୟ ଆମେ ଶୁଣିଲୁ ନାହିଁ । ମଣିଷପଣିଆର ବିକାଶ କଲୁ ନାହିଁ । ଧନରୁ ଧନ ବଢ଼ାଇବାକୁ ଲାଗିଲୁ । ବାଟ ଅବାଟ ଜାଣିଲୁ ନାହିଁ ।

ଗାଁ ଗପଟିଏ କହୁଛି, ଧନର ମୋହ କିପରି ହୋଇପାରେ । ଜଣେ ଲୋକ ବୁଢ଼ା ହୋଇଥାଆନ୍ତି । ଅଚଳାଚଳ ସମ୍ପତ୍ତି ଠୁଳ କରିଥାନ୍ତି । ଘର ଏପରି ଲୋଭନୀୟ ହୋଇଥାଏ ଯେ, ସ୍ୱୟଂ ଇନ୍ଦ୍ର ମଧ୍ୟ ସମ୍ଭାଳି ପାରିବେ ନାହିଁ । ତାଙ୍କୁ ଜଣେ କେହି ପଚାରିଲେ, 'ଆପଣ ଆଉ ଅଧିକ କଣ ଚାହାଁନ୍ତି ?' ବୁଢ଼ା ଲୋକଟି ଅଟକି ଯାଇ କହିଲେ, ମୁଁ ଏହି ଘରେ ମୋର ଅଣନାତି ହୋଇ ଜନ୍ମ ହେବାକୁ ଚାହୁଁଛି । ପ୍ରାଶ୍ନିକ ବୁଝି ନପାରି ପୁଣି ପ୍ରଶ୍ନ କଲେ, 'ଏହାର ଅର୍ଥ କ'ଣ ?'- ଏତେ ସମ୍ପତ୍ତି ଠୁଳ କରିଛି, ଆଉ ଟିକିଏ ଭୋଗ କରନ୍ତି । ଏହି ତ ଧନ ମଦ । ଯମ ଆମ ଚୁଟି ଧରି ଟାଣୁଥିଲା ବେଳେ ଆମେ ଏହି ଉନ୍ମତ୍ତତାରୁ କ୍ଷାନ୍ତ ହେଉ ନାହୁଁ । ଗାଉଁଲିଆ ଆଉ ଗୋଟିଏ କଥା, "ଯାହା ଖାଇଯିବୁ ପେଟକୁ, ଯାହା ରଖୁଥିବୁ ଥେଣ୍ଟକୁ ।" ତେବେ ପ୍ରଶ୍ନ ଉଠୁଛି ଧନର ସଦୁପଯୋଗ କିପରି କରିବା ? ଶାସ୍ତ୍ର କହୁଛନ୍ତି ବିଦ୍ୟାଧନ ବା ଟଙ୍କାକଉଡ଼ି, ଜମିବାଡ଼ିର ଧନ ହେଉ ଯୋଗ୍ୟହୋଇ ଅର୍ଥାତ୍ ସଦ୍ ଉପାୟରେ ରୋଜଗାର କରିବ । କାହାକୁ କର୍ଅଳ କଥା ପଦେ କହି ସୁପରାମର୍ଶ ଦେଇ, ଶିକ୍ଷା ସୁଯୋଗ ଆଡ଼କୁ ବାଟ କଢ଼ାଇ ନେଇ, ବିପତ୍ତିରେ ସାହାଯ୍ୟ କରି ଉକ୍ତ ଧନକୁ ବ୍ୟୟ କରିପାରିଲେ ଏହା ହେବ ଧର୍ମ । ସେଥିରୁ ସୁଖ ମିଳିବ ।

"ପାତ୍ରତ୍ୱାତ୍ ଧନମାପ୍ନୋତି
ଧନାତ୍ ଧର୍ମଃ ତତଃ ସୁଖମ୍ ।"

ଭାଗବତକାରଙ୍କ ଭାଷାରେ ଏହା ପ୍ରତିଫଳିତ ହୁଏ ।

"ଧନ ଅର୍ଜିଲେ ଧର୍ମ କରି
ଧର୍ମେ ପ୍ରାପତ ନରହରି।"

ଏହା ନ ହେଲେ,

"ଅନ୍ୟାୟ ବିତ୍ତ, ବଢ଼େ ବହୁତ
ଗଲାବେଳେ ଯାଏ ମୂଳ ସହିତ।"

କିନ୍ତୁ ଉଲ୍ଲିଖିତ ଶାସ୍ତ୍ରବାଣୀ ଓ ହିତୋପଦେଶ ଆମେ ଧରିଲେ ଆମ ମାନବିକ ମୂଲ୍ୟବୋଧ ଆମ ମଧ୍ୟରେ ପଲ୍ଲବିତ ହୋଇଥାନ୍ତା। ଆମ ବ୍ୟକ୍ତିତ୍ୱ ମହାନ୍ ହୁଅନ୍ତା।

ଯୁଗେ ଯୁଗେ ସର୍ବତ୍ର ଶିକ୍ଷା ବ୍ୟବସ୍ଥା କରାଯାଇଛି। ବ୍ୟକ୍ତି ଓ ସମାଜ ପରସ୍ପର ଘାତ ପ୍ରତିଘାତ ମାଧ୍ୟମରେ ବିକଶିତ ହେବାପାଇଁ ଧର୍ମଶିକ୍ଷା ଏଥିପାଇଁ ଏକ ଆଦ୍ୟ ବ୍ୟବସ୍ଥା ବୋଲି ଜଣାଯାଏ। ଏହି ସ୍ଥାନରେ ନୀତିଶିକ୍ଷା କାଳକ୍ରମେ ସୃଜିତ ହୁଏ। ଆଜିକାଲି ଏ ସବୁ ବଦଳରେ ମୂଲ୍ୟବୋଧ ଶିକ୍ଷା ସମସ୍ତଙ୍କ ଆଦୃତ ହୋଇଛି। ମାନବିକ ମୂଲ୍ୟବୋଧ କହିଲେ ଏହାର ଅନ୍ତର୍ଭୁକ୍ତ ହୁଏ ନୈତିକ, ସାମାଜିକ, ଗଣତାନ୍ତ୍ରିକ, ବୈଜ୍ଞାନିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ଆଦି। ଏହାର ପରିସର ଜନ୍ମରୁ, ଏପରି କି ମାତୃଗର୍ଭରୁ ମୃତ୍ୟୁ ପର୍ଯ୍ୟନ୍ତ ପରିବ୍ୟାପ୍ତ କରାଯାଇଛି। ସବୁ ସ୍ତରରେ ଏହା ଶିକ୍ଷାର ଅଙ୍ଗୀଭୂତ। ଉଭୟ ପ୍ରାକ୍‌ସେବା ଓ ସେବାକାଳୀନ ଶିକ୍ଷା ଏଥିରୁ ବାଦ୍ ପଡ଼ି ନାହିଁ। ଜାତୀୟସଂହତି, ଐକ୍ୟ, ଧର୍ମନିରପେକ୍ଷତା, ପରିବେଶ ସୁରକ୍ଷା, ସଂଘୀୟ ସମତା, କ୍ଷୁଦ୍ର ପରିବାର, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଏହା ମଧ୍ୟ ପାଠ୍ୟକ୍ରମ ଓ ପରୀକ୍ଷାର ଅନ୍ତର୍ଭୁକ୍ତ। ପାଠ୍ୟପୁସ୍ତକରେ ମହାପୁରୁଷମାନଙ୍କ ଜୀବନୀ ଅଧ୍ୟୟନ, ଅର୍ନ୍ତରାଷ୍ଟ୍ରୀୟ, ରାଷ୍ଟ୍ରୀୟ, ରାଜ୍ୟସ୍ତରୀୟ ଓ ଆଞ୍ଚଳିକ ଉତ୍ସବାଦି ପାଳନ ଅବସରରେ ମାନବିକ ମୂଲ୍ୟବୋଧ ଶିକ୍ଷା ଦେବାର ପରିକଳ୍ପନା ରହିଛି। ପରିଦର୍ଶକ ଓ ପରିବାର ଏଥି ସହିତ ଅଙ୍ଗୀଭୂତ କି ନାହିଁ କହିହେଉ ନାହିଁ। ଏହା ସତ୍ତ୍ୱେ ଏହା କେବଳ ବାଚନିକ ହୋଇରହିଛି। ଆହୁରି ମଧ୍ୟ ସମ୍ପୃକ୍ତ ସମସ୍ତେ ବରଂ ନିଜ ନିଜ ଜୀବନରେ ଏହାକୁ ପାଳ କରିବାର କ୍ୱଚିତ୍ ଦେଖାଯାଏ। 'ବାପା କହିଛନ୍ତି, ବାପା ଆଜି ଘରେ ନାହାନ୍ତି' ପରି ହୋଇଯାଉଛି। ସତ୍ୟ କହିବାକୁ ପରାମର୍ଶ, କପଟତା ଓ ଦୁରାଚାରରେ ବୁଡ଼ୁବୁଡ଼ୁ ହୋଇ ରହିଥିବାର ବେଳେବେଳେ ଜଣାଯାଏ। ଏଥିରେ ଅନ୍ୟ ଏକ ମାନବିକ ମୂଲ୍ୟବୋଧ ମଧ୍ୟ ପାଳିତ ହୁଏ ନାହିଁ। ତାହା ହେଉଛି ଯାହା ଆମେ ପଢ଼ିବା ଓ ପଢ଼ାଇବା, ସେଥିରେ ଥିବା ମୂଲ୍ୟବୋଧକୁ ଆମେ ହୃଦୟଙ୍ଗମ କରି ନିଜ ନିଜର ଆଚରଣରେ ଦେଖାଇବା ଆବଶ୍ୟକ।

ଆଜିର ସମାଜରେ ଏ ପ୍ରକାର ନିଜ ଆଚରଣରେ ସାକାର ହୋଇ ନ ଥିବା ନୀତିଗୁଡ଼ିକର ନିଷ୍ଫଳ ପ୍ରଚାର ଦେଖିବାକୁ ମିଳେ।

ଏହି ପ୍ରକାର ଭ୍ରଷ୍ଟାଚାର ଯୋଗୁଁ ଦୁର୍ନୀତି, ଅପସଂସ୍କୃତି, ଅପରାଧୀକରଣ, ନିଶାଭ୍ୟାସ ସନ୍ତ୍ରାସବାଦ ଆଦି ଆମ ବ୍ୟକ୍ତିଗତ ତଥା ସମାଜିକ ଜୀବନକୁ ତଳିତଳାନ୍ତ କରିଦେଉଛି। ମାନସିକ ଓ ପ୍ରାକୃତିକ ସ୍ତରରେ ପ୍ରଦୂଷଣ ଆଜି ସର୍ବଗ୍ରାସୀ ହେବାରେ ଲାଗିଛି। ସ୍ୱେଚ୍ଛାକୃତ ସଂଯମର ଅଭାବରେ ଜନ୍ମ ନିରୋଧକ ବ୍ୟବସ୍ଥାର ଆଶ୍ରୟନେଇ ହୀନବୀର୍ଯ୍ୟ, ଦୁର୍ବଳ, କାପୁରୁଷ ଉତ୍ସାହିତ ହେଉଛନ୍ତି। ସମସ୍ତ ମାନବ ସମାଜ ନିଶାସକ୍ତପରି ଲାଗୁଛି।

ସେଥିପାଇଁ ବିଶେଷକରି ଆମ ଦେଶ, ରାଜ୍ୟ, ପରିବାର ଓ ସମାଜର ସକଳ ବ୍ୟବସ୍ଥାରେ ମାନବିକ ମୂଲ୍ୟବୋଧର ରୂପାୟନ ପାଇଁ ସମସ୍ତ ସଂଗଠିତ ଓ ସମନ୍ୱିତ ଆନ୍ଦୋଳନ ଆବଶ୍ୟକ। ଜାତୀୟ ମୁକ୍ତି ସଂଗ୍ରାମକୁ ବିନା ରକ୍ତପାତରେ ସତ୍ୟ ଅହିଂସାକୁ ଆୟୁଧକରି ମହାତ୍ମାଗାନ୍ଧୀ ଜନଗଣ ଆନ୍ଦୋଳନରେ ପରିଣତ କଲେ ଓ ଏହା ସଫଳ ହେଲା। ମାନବିକ ମୂଲ୍ୟବୋଧର ଅବକ୍ଷୟ ଆଜି ସେ ପ୍ରକାର ଆହ୍ୱାନ ସୃଷ୍ଟି କରିଛି। ଦେଶ ଓ ବିଶ୍ୱ ଦୁର୍ନୀତି, ଦୁର୍ଗତି, ଦୁରାଚାର ବିଷରେ ଜର୍ଜରିତ। ଏହି ପରିପ୍ରେକ୍ଷୀରେ ଆମ ପୂର୍ବ ଅଭିଜ୍ଞତାକୁ ସ୍ମରଣକରି ଦ୍ୱିତୀୟ ମୁକ୍ତି ସଂଗ୍ରାମ କରିବାର ସମୟ ଆସିଛି।

□□□

# ମିଳନୀ

ମିଳନରୁ ଏ ଶବ୍ଦ ମିଳନୀ, ଏଥିରେ ଥାଏ ଜୀବନ ଓ ଏହାର ପରିପ୍ରସାର। ଏହାଦ୍ୱାରା ଜୀବନ ଆନନ୍ଦାୟିତ ହୁଏ। ଆନନ୍ଦର ଢେଉରେ ସକଳ ପ୍ରାଣୀଙ୍କ ଜୀବନ ପ୍ରାଣପୂର୍ଣ୍ଣ ହୋଇଯାଏ। ତେଣୁ ଜୀବନ ପରାର୍ଥପର ଓ ପରସାର୍ଥକ ହୁଏ, ଦିବ୍ୟାନୁଭୂତି ଦିଗରେ ଜୀବନ ଏକ ଚିରନ୍ତନ ଯାତ୍ରାରେ ପରିଣତ ହୋଇଯାଏ। ଏଥିରେ ବିରାମ ଓ ବିଶ୍ରାମ ନଥାଏ। ଶାନ୍ତି ଓ ସଦ୍‌ଭାବନାର ପ୍ରାପ୍ତି ବଢ଼ି ଚାଲେ। ପକ୍ଷାନ୍ତରରେ ମିଳନର ଅଭାବରୁ ମିଳନୀ ସମ୍ଭବ ହୁଏ ନାହିଁ। ଫଳତଃ ଜୀବନ ସଙ୍କୁଚିତ ହୁଏ। ଏହା ଆତ୍ମକୈନ୍ଦ୍ରିକ ହୁଏ। ନିଜ ଛଡ଼ା ଆଉ କେହି ଦେଖା ପଡ଼ନ୍ତି ନାହିଁ। ନିଜର ଖାଇବା, ପିଇବା, ଶୋଇବା, ରହିବା ହିଁ ମୁଖ୍ୟ ହୋଇଯାଏ। ଏହା ମୃତ୍ୟୁ ସଙ୍ଗେ ସମାନ। ବସ୍ତୁତଃ ଏହାହିଁ ମୃତ୍ୟୁ। ସଙ୍କୋଚନ, ସଂକୀର୍ଣ୍ଣତା ଫଳରେ ଜୀବନର ବିକାଶ ସମ୍ଭବ ନୁହେଁ। ସ୍ୱାର୍ଥାନ୍ଧତା ଓ ସ୍ୱାର୍ଥପରତା ହିଁ ସାରହୁଏ। ମେଳା

ଓ ମହୋତ୍ସବ, ଯାହାକି ମିଳନ ଓ ମିଳନୀର ସ୍ୱାଭାବସିଦ୍ଧ ପରିଣତି ସେଥିରୁ ବଞ୍ଚିତ ହୁଏ ସେହି ସଙ୍କୁଚିତ ବ୍ୟକ୍ତି। ମେଞ୍ଚା ମେଞ୍ଚା ସ୍ୱାର୍ଥ ମଧ୍ୟରେ ସେ ଆବଦ୍ଧ। ପ୍ରତିବେଶୀ ଓ ପରିବାର ଭିତରେ ଥିଲେ ସୁଦ୍ଧା ସେ ଏକ ରକମ ଅଲଗା ଅଲଗା। ସ୍ୱାର୍ଥର ସୁନା ପଞ୍ଜୁରୀ ମଧ୍ୟରେ ସେ ଚଢ଼େଇଟିଏ ପରି।

ଏହି ପ୍ରସଙ୍ଗରେ ଏହା ଉଲ୍ଲେଖନୀୟ ଯେ ମିଳନୀ ଏକ ଅନୁଷ୍ଠାନରେ ପରିଣତ ହୋଇଛି, ୧୯୬୯ ମସିହାରେ କଳା, ସାହିତ୍ୟ, ଭାବର ଆଦାନପ୍ରଦାନ, ସଂସ୍କୃତି ଓ ଅଧ୍ୟାତ୍ମିକ ଚେତନାର। ରାଜ୍ୟ ଓ ଦେଶର ବରେଣ୍ୟ ଜନନାୟକ ଡଃ ହରେକୃଷ୍ଣ ମହତାବ ଓ ତତ୍‌କାଳୀନ ସଂସ୍କୃତି ମନ୍ତ୍ରୀ ତଥା ସୁସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଯଥାକ୍ରମେ ଏହାର ପ୍ରଥମ ସଭାପତି ଓ କାର୍ଯ୍ୟକାରୀ ସମିତିର ସଭାପତି ହୁଅନ୍ତି। ମାନବୀୟ ସଂପର୍କର ଗାଥା ହେଉଛି ସଂସ୍କୃତି ଓ ଧୂରୀଣ ବ୍ୟକ୍ତି ଓ ଯାଦୁକରୀ କଥାକାର ହେଉଛନ୍ତି ଡଃ ମହତାବ। ବାର୍ତ୍ତାଳାପ, ଆଲୋଚନା ଓ ଜିଜ୍ଞାସା ସୁଖଦୁଃଖ ବୁଝି ସମସ୍ତଙ୍କୁ ଆପଣେଇ ନିଅନ୍ତି। ଏପରି କୌଣସି ସମସ୍ୟା ବା ଦୁଃଖ ନାହିଁ ଯାହାର ସମାଧାନ ବା ଅପନୋଦନର ବାଟ ସେ ଦେଖି ବା ଦେଖାଇ ପାରନ୍ତି ନାହିଁ। ଆଜି ତାଙ୍କ ଜନ୍ମ ଶତବାର୍ଷିକୀ ପାଳନ କରାଯାଉଛି। ଏହି ଅବସରରେ ମିଳନୀ ଏହାର ଜନ୍ମଦାତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧା ସୁମନ ଅର୍ପଣ କରୁଛି।

ଡଃ ମହତାବଙ୍କୁ ଏକାମ୍ର ନିବାସରେ ଭେଟିବାର ସୁଯୋଗ ପାଇଛି। ଏକାମ୍ର ମହାବିଦ୍ୟାଳୟର ଅଧ୍ୟକ୍ଷ ଯାଇଥାନ୍ତି ତାଙ୍କ ଅନୁଷ୍ଠାନର ସଭାପତିଙ୍କ ସମୀପକୁ। ସେଠି ବାରଣ୍ଡାରେ ଦେଖେ ମୋର ଜଣେ ପୁରାତନ ଛାତ୍ରଙ୍କୁ। ବିସ୍ମିତ ହୁଏ ସେ ଏଠାରେ କାହିଁକି ? ମୋ ଛାତ୍ର ଜଣକ ଇତିହାସରେ ବି.ଏ. (ଅନର୍ସ) ଓ ସଫଳ ଶିକ୍ଷକ, ଚରିତ୍ରବାନ୍, ଛାତ୍ରବତ୍ସଳ ଓ ନିରାଡ଼ମ୍ବର। ସରକାରୀ ସ୍କୁଲରେ ଅନେକ ଦିନ ସହକାରୀ ଶିକ୍ଷକ ହୋଇ ସୁଦ୍ଧା ସେ ଭାଙ୍ଗି ପଡ଼ିଥାନ୍ତି। ତାଙ୍କ ପତ୍ନୀ କର୍କଟ ରୋଗାକ୍ରାନ୍ତ ଓ ସେ କଟକ ପାଖକୁ ବଦଳି ହୋଇପାରିଲେ ଚିକିତ୍ସାର ସୁଯୋଗ ପାଇବା ଆଶାରେ ସେ ଆବେଦନ ନିବେଦନ କରିଛନ୍ତି ଓ ଏସବୁ ତାଙ୍କ ହାକିମମାନଙ୍କୁ ଭାରାକ୍ରାନ୍ତ କରିଛି। ଫାଇଲର କଳେବର ବୃଦ୍ଧି ପାଇଛି। ଉପାୟ ନପାଇ ଆତୁରେ ନିୟମ ନାସ୍ତି ନ୍ୟାୟରେ ବାରିପଦା ଡାକବଙ୍ଗଳାରେ ବୁଡ଼ିଯାଉଥିବା ଲୋକ ଜଣକ କୁଟାଖିଅକୁ ଧରିଲା ପରି ମହତାବଜୀଙ୍କୁ ଜଣାଇଛନ୍ତି। "ଆସ ଦେଖିବା", ଏହି ଆଶ୍ୱାସନାର ବାଣୀ ପତ୍ନୀଙ୍କ ରୋଗର କିଞ୍ଚିତ୍ ଉପଶମ କରାଇ ଥାଇପାରେ, କିନ୍ତୁ ସେ ବିପୁଳ ବଳ ଓ ଭରସା ରଖି ପୁରୁଣା

ଭୁବନେଶ୍ୱରକୁ ଆସିଛନ୍ତି । ଡଃ ମହତାବ ସେତେବେଳେ କୌଣସି ପଦାଧିକାରରେ ନଥାନ୍ତି । ଏକାମ୍ର କଲେଜର ଅଧ୍ୟକ୍ଷ ଭୂମିକା ଛାଡ଼ି ଓ ମୋ ଫାଇଲ ରଖିନେଇ ମୋ ସ୍ୱଭାବସୁଲଭ ଶିକ୍ଷକ ଭୂମିକାରେ ମୋ ଛାତ୍ରର ଦୁଃଖ ଦୂର କରିବା ପାଇଁ ଜଣାଇଛି । ସେ ତୁରନ୍ତ ତାଙ୍କୁ ଡକାଇ ଫୋନ ଯୋଗେ ଶିକ୍ଷାବିଭାଗର କର୍ତ୍ତାମାନଙ୍କୁ ଜଣାଇଛନ୍ତି । ପତ୍ର ମଧ୍ୟ ଲେଖିଛନ୍ତି । ଏହା ତାଙ୍କ ବ୍ୟକ୍ତିତ୍ୱ ଓ ଏହା ମୋତେ ଓ ଅନ୍ୟମାନଙ୍କୁ ପ୍ରଭାବିତ କରିଛି । ଅନ୍ୟ ଅନୁଷ୍ଠାନ ମଧ୍ୟ ପ୍ରତିଷ୍ଠିତ ଓ ଅନୁପ୍ରାଣିତ ହୋଇଛି ।

ତାଙ୍କ ହାତଗଢ଼ା ମିଳନୀ ଅଣଆନୁଷ୍ଠାନିକ ଥିଲା । କାଳକ୍ରମେ ଆନୁଷ୍ଠାନିକ ହେବାର ଆବଶ୍ୟକତା ଅନୁଭୂତ ହୋଇଛି । ୧୯୮୩ ମସିହା ଅଗଷ୍ଟ ମାସରୁ ଏହାର ମୁଖ୍ୟ ଦାୟିତ୍ୱ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ ଗ୍ରହଣ କରିଛନ୍ତି । ସୌଭାଗ୍ୟ ବଶତଃ ସେତେବେଳେ ସେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଥାନ୍ତି । ତାଙ୍କ ପ୍ରେରଣା ଓ ଅନ୍ୟମାନଙ୍କ ବଳିଷ୍ଠ ସହଯୋଗ ଓ ସମର୍ଥନ ଲାଭ କରି ସଭାସମିତି, ଆଲୋଚନା, ବନ୍ଧୁମିଳନ ଆଦି କରାଯାଇଛି । ଗୀତିନାଟ୍ୟ ଆଦି ମନୋରଞ୍ଜନ କାର୍ଯ୍ୟକ୍ରମ ମଧ୍ୟ ସଫଳ ଭାବରେ ପ୍ରଦର୍ଶିତ ହୋଇଛି । ଜାତୀୟ ଓ ରାଜ୍ୟସ୍ତରୀୟ ସାଂସ୍କୃତିକ ପରମ୍ପରାର ପ୍ରତିଫଳନ ଭଦ୍ରକର ସାଂସ୍କୃତିକ ଇତିହାସ ଉପରେ ରହିବା ସଙ୍ଗେ ସଙ୍ଗେ ଏହା ସେହି ପରମ୍ପରାକୁ ସମୃଦ୍ଧ କରିଛି । ଏହାହିଁ ପ୍ରମାଣିତ ହୁଏ ୧୯୮୪ ମସିହାର ମିଳନୀ ସଙ୍କଳନରେ । ସଂପାଦକମଣ୍ଡଳୀ, ସଙ୍କଳକ ଓ ଲେଖକବୃନ୍ଦ ଏଥିପାଇଁ ପ୍ରଶଂସାର୍ହ । ମିଳନୀର ପ୍ରତିଷ୍ଠାତା ଓ ପ୍ରଥମ ସଭାପତି ଡଃ ମହତାବଙ୍କ ବିୟୋଗ ପରେ ୧୯୮୯ ମସିହାରେ ପ୍ରକାଶ ପାଏ ମହତାବ ବିଶେଷାଙ୍କ ମିଳନୀ । ବକ୍ଷରେ ବହନ କରିଛି ସେହି ବହୁମୁଖୀ ପ୍ରତିଭାର ମୂଲ୍ୟାୟନ ଓ ସ୍ମୃତିଚାରଣ, ନିଜର ସୀମିତ କଳେବର ମଧ୍ୟରେ ।

ଆନନ୍ଦର ସ୍ରୋତସ୍ୱିନୀ ମିଳନୀ ରଖିଚାଲିଛି ଏହାର ପାଦ ଚିହ୍ନ ସମୟର ସ୍ରୋତରେ । ଏହି କାଳଜୟୀ ସ୍ରୋତକୁ ସମୃଦ୍ଧ କରି ଆମେ ଆପଣାକୁ ଧନ୍ୟ କରିବା, ବିଭାଜନ ନୁହେଁ, ମିଳନ, ସମ୍ମିଳନ ଓ ସଦଭାବନା ହେଉଛି ଏହାର ଅନ୍ତଃସ୍ୱର ।

□□□

# ଖଣ୍ଡିଏ ପତ୍ର

ଶ୍ରୀଯୁକ୍ତ ନିଖିଳ ଉତ୍କଳ ନିମ୍ନମାଧ୍ୟମିକ ଶିକ୍ଷକ ସଙ୍ଘର ସାଧାରଣ ସଂପାଦକ ମହୋଦୟ,

ପ୍ରଣାମ ନେବେ ।

ଆପଣ ଜାଣିଛନ୍ତି, ଶିକ୍ଷା ବିଶେଷତଃ ପ୍ରଥମ ଶ୍ରେଣୀଠାରୁ ୮ମ ଶ୍ରେଣୀ ପର୍ଯ୍ୟନ୍ତ (Elementary Education) ଶିକ୍ଷାର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା ଉଦ୍ଦେଶ୍ୟରେ ଭାରତର ଅନ୍ୟ ରାଜ୍ୟ ପରି ଆମର ଏଠାରେ ଏହି ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ ପ୍ରତିଷ୍ଠିତ ହୋଇଛି । ଗବେଷଣା, ତାଲିମ, ପ୍ରକାଶନ ଓ ସଂପ୍ରସାରଣ କାର୍ଯ୍ୟକ୍ରମ ମାଧ୍ୟମରେ ଏହି ଲକ୍ଷ୍ୟ ସାଧିତ ହେବାର ଆଶା ରହିଛି । ମାତ୍ର ଶିକ୍ଷକହିଁ ଏହି ସମସ୍ତ ପ୍ରକାର କାର୍ଯ୍ୟର ମୂଳରେ ସୁପ୍ରତିଷ୍ଠିତ ଏବଂ ଶିକ୍ଷକ ସମାଜ ବ୍ୟତୀତ ଶିକ୍ଷାର ବିକାଶ ସାଧନ ସଂପୂର୍ଣ୍ଣ ଅସମ୍ଭବ । ସୁତରାଂ ଆପଣଙ୍କ ସଙ୍ଘ ସହିତ ଆମେ ଶିକ୍ଷକମାନଙ୍କର ବୌଦ୍ଧିକ ବିକାଶ ଓ ବୃତ୍ତିଗତ ସାମର୍ଥ୍ୟ ବୃଦ୍ଧି ଦିଗରେ କେତେକ ସମ୍ମିଳିତ କାର୍ଯ୍ୟକ୍ରମ ଗ୍ରହଣ କରିବା ଏକାନ୍ତ ବାଞ୍ଛନୀୟ ।

ଯାଜପୁରଠାରେ ଆପଣଙ୍କ ସଙ୍ଘର ଆନୁକୂଲ୍ୟରେ ଅନୁଷ୍ଠିତ ବାର୍ଷିକ ସମ୍ମିଳନୀରେ ଯୋଗଦାନର ସୁଯୋଗ ମୁଁ ଗ୍ରହଣ କରିପାରି ନଥିଲି । ମୋର ଦୃଢ଼ ଆଶା, ସମ୍ମିଳନୀ ନିଶ୍ଚୟ ସାଫଲ୍ୟମଣ୍ଡିତ ହୋଇଥିବ ।

ଆପଣ ନିଶ୍ଚୟ ଆମ ସହିତ ଏକମତ ହେବେ ଯେ ଶିକ୍ଷାର ମାନୋନ୍ନତି ପାଇଁ ଆମ୍ଭମାନଙ୍କୁ ବହୁବିଧ କାର୍ଯ୍ୟକ୍ରମ ନିରବିଚ୍ଛିନ୍ନ ଭାବେ ଚାଲୁ ରଖିବାକୁ ହେବ । ବିଶେଷ କରି ଗୁରୁଜୀ ଗଣଙ୍କର ବୌଦ୍ଧିକ ବିକାଶ ଦିଗରେ ଆମକୁ ଉଦ୍ୟମ କରିବାକୁ ହେବ । ଏ ପ୍ରସଙ୍ଗରେ ମୁଁ ପ୍ରସ୍ତାବ କରୁଅଛି ଯେ, ରାଜ୍ୟସ୍ତର ତଥା ଜିଲା ସ୍ତରରେ ବାର୍ଷିକ ସଭା କରିବା ଛଡ଼ା ଆପଣ ମଝିରେ ମଝିରେ ଶିକ୍ଷକମାନଙ୍କର ପାଠଚକ୍ର ବା ଆଲୋଚନା ଚକ୍ର ପାଇଁ ଆୟୋଜନ କରନ୍ତୁ । ଏଥିରେ ୩୦/୪୦ ଜଣ ଶିକ୍ଷକ ଯୋଗଦେବା ବାଞ୍ଛନୀୟ । ଶିକ୍ଷାର କେତେକ ନିର୍ଦ୍ଦିଷ୍ଟ ସମସ୍ୟା ଆଲୋଚିତ ହେବା ଉଚିତ । ଦିନେ ବା ଦୁଇଦିନ ପାଇଁ ଏ ପ୍ରକାର ଆଲୋଚନା ଚକ୍ର ହେଲେ ଚଳିବ । ଶିକ୍ଷକ ମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରୁ ବା ବିଭିନ୍ନ ସ୍ଥାନରୁ ବଛାଯାଇ ପାରେ । ଏହି ଆଲୋଚନା ଚକ୍ର ଓ ଜ୍ଞାନଗୋଷ୍ଠୀର ପରିଚାଳନା ଭାର ବିଶ୍ୱବିଦ୍ୟାଳୟ ତଥା ମାଧ୍ୟମିକ ଶିକ୍ଷା ସ୍ତରରେ ଅଭିଜ୍ଞ ଶିକ୍ଷକଙ୍କ ଉପରେ ଦିଆଯାଇ

ପାରେ। ପରିଦର୍ଶନ ବିଭାଗର କର୍ମଚାରୀଙ୍କୁ ମଧ୍ୟ ଏଥିସହିତ ସଂପୃକ୍ତ କରାଯାଇପାରେ।

ବାର୍ଷିକ ସମ୍ମିଳନୀ ଆପଣଙ୍କର ଏକ ପାରମ୍ପରିକ କାର୍ଯ୍ୟକ୍ରମ। ଏହା ଭଲ। ଗୁରୁଜୀମାନେ ପ୍ରେରଣା ଲାଭ କରନ୍ତି ଓ ସଙ୍ଘ ବଳିଷ୍ଠ ହୁଏ। କିନ୍ତୁ ଏହା ସାଙ୍ଗକୁ ଉଲ୍ଲିଖିତ ପ୍ରକାରରେ ସ୍ଥାନ-ଗୋଷ୍ଠୀର ଆୟୋଜନ ରାଜ୍ୟ ତଥା ଜିଲ୍ଲାର ବିଭିନ୍ନ ସ୍ଥାନରେ ଛୁଟି ବା ଅନ୍ୟାନ୍ୟ ଦିନରେ କରାଗଲେ, ସଙ୍ଘ-ଚେତନା ଗୁରୁଜୀ ଓ ସମାଜକୁ ବିଶେଷ ପ୍ରଭାବିତ କରନ୍ତା। ଶିକ୍ଷାର କାର୍ଯ୍ୟକ୍ରମକୁ ଅଧିକ ଫଳପ୍ରଦ କରିବା ପାଇଁ ଏବଂ ଗୁରୁଜନମାନଙ୍କୁ ତତ୍ପର ଓ ତେଜସ୍ୱୀ କରିବା ଦିଗରେ ଏହା ବିଶେଷ ସହାୟକ ହୁଅନ୍ତା। ଏପ୍ରକାର ସ୍ଥାନ-ଗୋଷ୍ଠୀରେ ସହଯୋଗ କରି ଉନ୍ନତି କଳ୍ପେ ସେବା କରି ପାରିଲେ ଆମ୍ଭେମାନେ ବିଶେଷ ଉପକୃତ ହୁଅନ୍ତୁ।

ଶିକ୍ଷକ ସଙ୍ଘ କେବଳ ଶିକ୍ଷକମାନଙ୍କର ବେତନ ଅସୁବିଧା ଲାଗି ଦାବୀ କରେ ବୋଲି କେତେକ ଲୋକଙ୍କ ମନରେ ଏକ ଭ୍ରାନ୍ତ ଧାରଣା ରହିଯାଇଛି। ଆମ୍ଭମାନଙ୍କୁ ଏ ଭ୍ରାନ୍ତ ଧାରଣା ଦୂର କରିବା ଦିଗରେ କାର୍ଯ୍ୟ କରିବାକୁ ହେବ। ମୋର ଆଶା, ଆପଣ ଏ ଦିଗରେ ଚିନ୍ତା କରିବେ। ଆମ ସଙ୍ଘକୁ ବଳିଷ୍ଠ କରିବାକୁ ହେବ। ଆପଣମାନେ ପାଠ୍ୟ ପୁସ୍ତକ ଓ ଅନ୍ୟାନ୍ୟ ପୁସ୍ତକ ରଚନାରେ ସକ୍ରିୟ ଅଂଶ ଗ୍ରହଣ କରୁଛନ୍ତି ଏବଂ ସଙ୍ଘର ଏକ ମୁଖପତ୍ର ପ୍ରକାଶ କରିବାକୁ ଚେଷ୍ଟା କରୁଛନ୍ତି। ଆଶା ଓ ଆନନ୍ଦର କଥା। ଏହା ସାଙ୍ଗକୁ ସଙ୍ଘ ଅନ୍ୟ କେତେକ କାର୍ଯ୍ୟକ୍ରମ ଗ୍ରହଣ କରିବା ଉଚିତ। ଶିକ୍ଷାର ମାନୋନ୍ନତି ପାଇଁ ସଙ୍ଘର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ଏସବୁ ବିଷୟରେ ବିଚାର ପରିବେଷଣ କରିବା ମୋ ପକ୍ଷରେ ଧୃଷ୍ଟତା ହେବ। ଅନୁରୋଧ, ଆପଣ ଏ ବିଷୟରେ ଆପଣଙ୍କ ମତାମତ ଜଣାଇବେ। ଉତ୍ତର ଅପେକ୍ଷାରେ ରହିଲି।

। ଇତି।

ତା ୯।୮।୬୫

ଶତ୍ରୁଘ୍ନ ନାଥ
ଅଧ୍ୟକ୍ଷ, ଓଡ଼ିଶା ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ,
ଭୁବନେଶ୍ୱର

# ଚିଠିପତ୍ର

ଓଡ଼ିଶା ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ
ଭୁବନେଶ୍ୱର
୨୦।୪।୭୬

ମାନନୀୟେଷୁ,

ପ୍ରଣାମ ନେବେ। ଜିଲା ପରିଷଦ ଓ ପଞ୍ଚାୟତ ସମିତି ସ୍ତରରେ ପ୍ରାଥମିକ ଶିକ୍ଷକମାନଙ୍କର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହେଉଥିବା ବଡ଼ ଆନନ୍ଦର କଥା। ଏଥିରେ ସମାଜର ଅଗ୍ରପୂଜ୍ୟ, ଚିନ୍ତାନାୟକ, ପଞ୍ଚାୟତୀରାଜ କର୍ମକର୍ତ୍ତା, ସ୍ଥାନୀୟ ମଧ୍ୟ ଇଂରାଜୀ, ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ମହାବିଦ୍ୟାଳୟର ଶିକ୍ଷକବୃନ୍ଦ ସାହାଯ୍ୟ ସହଯୋଗ କରି ପ୍ରାଥମିକ ଶିକ୍ଷକମାନଙ୍କ ମଧ୍ୟରେ ପ୍ରେରଣା ଓ ଆଲୋଡ଼ନ ସୃଷ୍ଟି କରିଥାନ୍ତି। ଏ ଦିଗରେ ମାଧ୍ୟମିକ ଶିକ୍ଷକ ସଙ୍ଘର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଏସବୁ ନିଶ୍ଚୟ ଶୁଭ ଚିହ୍ନ, ମାତ୍ର ସମ୍ମିଳନୀ ଗୁଡ଼ିକୁ କିପରି ସଫଳ ଓ ସରସ କରିବାକୁ ହେବ, ସେ ଦିଗରେ ଧ୍ୟାନ ଦେବା ଆମ୍ଭମାନଙ୍କର କର୍ତ୍ତବ୍ୟ। ଉକ୍ତ ପ୍ରସଙ୍ଗରେ ଆପଣ ଆମର ନିମ୍ନ କେତୋଟି ସୂଚନା ବିଚାର କରିବେ, ଆଶା।

(୧) ସମ୍ମିଳନୀ ଉପଲକ୍ଷେ ସାଧାରଣତଃ ପ୍ରାଥମିକ ଶିକ୍ଷକମାନଙ୍କ ପାଇଁ ଶିକ୍ଷା ସମ୍ବନ୍ଧୀୟ ଆଲୋଚନା ଓ ବିଚାର ବିମର୍ଶର ସୁଯୋଗ ମିଳିଥାଏ। ପ୍ରାଥମିକ ବିଦ୍ୟାଳୟର ନୂତନ ସିଲାବସ ଓ ଜାତୀୟ ପାଠ୍ୟ ପୁସ୍ତକ ଗୁଡ଼ିକୁ କିପରି କାର୍ଯ୍ୟକାରୀ କରାଯାଇ ପାରିବ ଇତ୍ୟାଦି ନିର୍ଦ୍ଦିଷ୍ଟ ବିଷୟରେ ଆଲୋଚନା କରାଯିବା ଉଚିତ। ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଅନୁଭୂତ ସମସ୍ୟା ଗୁଡ଼ିକର ସମାଧାନ ପାଇଁ ଶିକ୍ଷକମାନଙ୍କର ଦଳଗତ ଆଲୋଚନା ମଧ୍ୟ ହେବା ଦରକାର। ଏ ଦିଗରେ ସ୍ଥାନୀୟ ବିଶେଷଜ୍ଞ, ଶିକ୍ଷାବିତ୍ ଓ ପ୍ରଶାସକ କର୍ମଚାରୀଗଣ ସାହାଯ୍ୟ କରିବେ ଏବଂ ପ୍ରାଥମିକ ଶିକ୍ଷକମାନଙ୍କର ଦୀର୍ଘ ଅଭିଜ୍ଞତା, ପରୀକ୍ଷା ଓ ପ୍ରୟୋଗ ଉପରେ ଏହା ଆଧାରିତ ହେବା ବାଞ୍ଛନୀୟ। ଦୃଷ୍ଟାନ୍ତ ସ୍ୱରୂପ, ଛାତ୍ରୋପସ୍ଥାନ ନିୟମିତ ଓ ବୃଦ୍ଧି କରିବା, ବିଦ୍ୟାଳୟର ବାଳିକା ଓ ଆଦିବାସୀ ଛାତ୍ରଛାତ୍ରୀମାନଙ୍କର ସଂଖ୍ୟା ବୃଦ୍ଧି, ଆବଦ୍ଧତା ଓ ଅପଚୟ ହ୍ରାସ କରିବା, ପାଠୋପକରଣ ପ୍ରସ୍ତୁତ ଓ ବିନିଯୋଗ କରିବା ଇତ୍ୟାଦି ସମସ୍ୟା ଗୁଡ଼ିକର ତାତ୍ତ୍ୱିକ ଓ ବାସ୍ତବ ଆଲୋଚନା ସଙ୍ଗେ ସଙ୍ଗେ ସମାଧାନର ପନ୍ଥା ସ୍ଥିର କରିବା ଉଚିତ। ସେଥିପାଇଁ ଶିକ୍ଷକମାନେ ପୂର୍ବରୁ ପ୍ରସ୍ତୁତ ହେବେ ଓ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରିବେ।

(୨) ଏହି ସବୁ ଶିକ୍ଷା ସମ୍ମିଳନୀ ସିଦ୍ଧାନ୍ତ-ପ୍ରତିଷ୍ଠିତ ହେଲେ ଭଲ ହୁଅନ୍ତା । ସମୂହ ଆଲୋଚନା ଓ ବିଚାର ମାଧ୍ୟମରେ ଯେଉଁ ନିଷ୍ପତ୍ତି, ସିଦ୍ଧାନ୍ତ ଓ କାର୍ଯ୍ୟପନ୍ଥା ସ୍ଥିରୀକୃତ ହୁଅନ୍ତା, ଭବିଷ୍ୟତ ପାଇଁ ଅନ୍ୟୂନ ଆସନ୍ତା ବର୍ଷକ ପାଇଁ ତଦନୁସାରେ କାର୍ଯ୍ୟ କରିବାକୁ ଶିକ୍ଷକମାନେ ବ୍ରତ ଗ୍ରହଣ କରନ୍ତେ । ଏହା କାର୍ଯ୍ୟକ୍ଷେତ୍ରରେ ଶିକ୍ଷକମାନଙ୍କର କାର୍ଯ୍ୟଧାରାକୁ ଉଦ୍‌ଜୀବିତ ଓ ଉଦ୍‌ବୋଧିତ କରି ପାରନ୍ତା । ଏହି କ୍ରମରେ ପରବର୍ତ୍ତୀ ଶିକ୍ଷା ସମ୍ମିଳନୀ କରାଯାଇ ପାରନ୍ତା ।

(୩) ବର୍ତ୍ତମାନର ସୀମିତ ପରିସ୍ଥିତିରେ ପ୍ରାଥମିକ ଶିକ୍ଷାର ଉନ୍ନତି ବିଧାନ ନିମନ୍ତେ, ଗ୍ରାମବାସୀ ପଞ୍ଚାୟତ ରାଜ୍ୟର କର୍ମକର୍ତ୍ତା, ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ସମୂହ ସହଯୋଗ ଆବଶ୍ୟକ । ବିଶେଷତଃ ଲୋକସହଯୋଗରେ ବିଦ୍ୟାଳୟର ଅଭାବ ଅସୁବିଧାଗୁଡ଼ିକ ଦୂର କରିବା ନିତାନ୍ତ ଦରକାର । ଏ ଦିଗରେ ବିଦ୍ୟାଳୟ ଉନ୍ନୟନ ଯୋଜନା (School Improvement Programme) ସମ୍ବନ୍ଧରେ ଚିନ୍ତା କରାଯାଇ ପାରେ । ପ୍ରାଥମିକ ବିଦ୍ୟାଳୟଗୁଡ଼ିକୁ ଗ୍ରାମବାସୀଗଣ କିପରି ଅତି ଆପଣାର ମନେକରି ସେଗୁଡ଼ିକର ସର୍ବାଙ୍ଗୀନ ବିକାଶରେ ଯଥାସମ୍ଭବ ସାହାଯ୍ୟ କରିବେ, ସେ ଦିଗରେ ଆବଶ୍ୟକ ବ୍ୟବସ୍ଥା କରିବା ବିଧେୟ । ପ୍ରତ୍ୟେକ ବିଦ୍ୟାଳୟର ନିର୍ଦ୍ଦିଷ୍ଟ ଆବଶ୍ୟକତା ଓ ସୁଲଭ ସମ୍ବଳ ତଥା ସୁବିଧା ସୁଯୋଗ ଦୃଷ୍ଟିରୁ ବିଧିବଦ୍ଧ ଭାବରେ ବିଦ୍ୟାଳୟ ଉନ୍ନୟନ ଯୋଜନା ପ୍ରସ୍ତୁତ କରିବା ବାଞ୍ଛନୀୟ । ଶିକ୍ଷକମାନଙ୍କ ସମ୍ମିଳନୀରେ ଏ ବିଷୟ ସ୍ଥାନ ପାଇବା ଉଚିତ ଓ ସେ ଦିଗରେ ଜନମତ ସୃଷ୍ଟି କରିବା ଦରକାର ।

(୪) ସାଧାରଣତଃ ସମ୍ମିଳନୀ ସମୟରେ ଉଦ୍ୟୋକ୍ତାଗଣ ପ୍ରଦର୍ଶନୀର ଆୟୋଜନ କରିଥାନ୍ତି । ଏହା ଏକ ଉପଯୁକ୍ତ ବ୍ୟବସ୍ଥା । ମାତ୍ର ଏଥିରେ କୌଣସି ମାର୍ଗ-ଦର୍ଶନ ରହୁନାହିଁ । ଆମର ଆବଶ୍ୟକତାକୁ ଚାହିଁ ଏହାର ଆୟୋଜନ ହେବା ଉଚିତ । ଉଦାହରଣ ସ୍ୱରୂପ, ଆମର ଶିକ୍ଷାଦାନ ସମୟରେ ଦରକାର ହେଉଥିବା ଉପକରଣ ଗୁଡ଼ିକୁ କିପରି ସଂଗ୍ରହ ଓ ପ୍ରସ୍ତୁତ କରିବାକୁ ହେବ, ତାର ସଫଳ ପ୍ରଚେଷ୍ଟାର ସମ୍ୟକ୍ ସୂଚନା ଏହି ପ୍ରଦର୍ଶନୀ ମାଧ୍ୟମରେ ମିଳିବା ମଙ୍ଗଳଜନକ ହେବ । ଆଉ ମଧ୍ୟ ପୂର୍ବ ଅନୁଚ୍ଛେଦରେ ବର୍ଣ୍ଣିତ "ବିଦ୍ୟାଳୟ ଉନ୍ନୟନ ଯୋଜନା" ସଂକ୍ରାନ୍ତରେ ଜନସାଧାରଣଙ୍କଠାରୁ ସଂଗୃହୀତ ଦ୍ରବ୍ୟଗୁଡ଼ିକୁ ଏହି ପ୍ରଦର୍ଶନୀରେ ଏକ ସ୍ୱତନ୍ତ୍ର ଓ ସୁବିଧାଜନକ ସ୍ଥାନ ଦିଆଯିବା ଉଚିତ । ଏହାଦ୍ୱାରା ଦାତାଗଣ ଉତ୍ସାହିତ ହେବା ସଙ୍ଗେ ସଙ୍ଗେ ଅନ୍ୟମାନେ ଏ ଦିଗରେ ଅନୁପ୍ରାଣିତ ହୋଇ ପାରିବେ । ଫଳରେ ଏଥିପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇ ପାରିବ । ପ୍ରଦର୍ଶନୀକୁ ଉଦ୍ଦେଶ୍ୟଧର୍ମୀ କରିବାକୁ ହେବ ଓ ତଦନୁସାରେ ଏହାର ସଦୁପଯୋଗ କରାଯିବ ।

(୫) ଅନେକ ସମୟରେ ଏହି ସବୁ ସଭା ସମିତି କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଆଭିମୁଖ୍ୟ ନେଇ ଅନୁଷ୍ଠିତ ହୋଇ ନଥାଏ । କେତେକ କ୍ଷେତ୍ରରେ ଲୋକ ଦେଖାଣିଆ ଏବଂ କେତେକ କ୍ଷେତ୍ରରେ ମଉଜ ମଜଲିସର ଏକ ମଉକା ଭାବରେ ଏଗୁଡ଼ିକ ବ୍ୟବହୃତ ହୋଇଥାଏ । ଫଳରେ ଶିକ୍ଷା-ସମ୍ମିଳନୀର କାର୍ଯ୍ୟକ୍ରମ ପ୍ରସ୍ତୁତ ହେବା ବାଞ୍ଛନୀୟ । ଉଦାହରଣ ସ୍ୱରୂପ, ସିଲାବସ୍ ସଂପୃକ୍ତ କୌଣସି ବିଷୟରେ ଶିକ୍ଷାଦାନ, ଶ୍ରେଣୀ ତଥା ବିଦ୍ୟାଳୟ ସଂଗଠନ ଆଦି ବିଭିନ୍ନ ପ୍ରସଙ୍ଗକୁ ନେଇ କେତେଜଣ କୃତୀ ଶିକ୍ଷକ ପ୍ରବନ୍ଧ ଲେଖିବା ଏବଂ ପରେ ସମୂହ ଓ ଦଳଗତ ଭାବରେ ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ଆଲୋଚନା ଓ ଅନୁଧ୍ୟାନ କରିବା ସୁବିଧାଜନକ । ଶିକ୍ଷକମାନଙ୍କର ଜ୍ଞାନ, କୌଶଳ ଓ ଦୃଷ୍ଟିକୋଣ କିପରି ବଢ଼ିବ, ଏ ପ୍ରକାର ଉଦ୍ଦେଶ୍ୟ ନିଆଯାଇପାରେ । ଏହାଦ୍ୱାରା ଶିକ୍ଷକମାନେ ବାସ୍ତବ କ୍ଷେତ୍ରରେ ଉପକୃତ ହୋଇ ପାରିବେ ଏବଂ ସମ୍ମୁଖୀନ ହେଉଥିବା ସମସ୍ୟା ଗୁଡ଼ିକର ସୁସମାଧାନରେ ସାହାଯ୍ୟ କରିପାରି ଶିକ୍ଷକମାନଙ୍କୁ କର୍ମତତ୍ପର ଓ ତେଜସ୍ୱୀ କରିବା ଦିଗରେ ଏହା ବିଶେଷ ସହାୟକ ହେବ ।

(୬) ସାଧାରଣତଃ ଏହି ସମ୍ମିଳନୀ ଉପଲକ୍ଷେ ଯେଉଁ ପ୍ରବନ୍ଧ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥାଏ, ତାହା ବିଶେଷ ଭାବରେ ଫଳପ୍ରଦ ହୁଏ ନାହିଁ । ଦିନେ ବା ଦୁଇଦିନ ଭାବିନେଇ ଏହି ପ୍ରବନ୍ଧ ଗୁଡ଼ିକ ଲେଖାଯିବା ଉଚିତ ନୁହେଁ । ଗୁରୁଜୀମାନେ ନିଜ ନିଜ ପରିବେଶ ମଧ୍ୟରେ କାମ ଉପାଦାନ ସଂଗ୍ରହ କରିବେ, ଅଭିଜ୍ଞତା ଅର୍ଜନ କରିବେ, କୌଣସି ପ୍ରକାର ନୂତନ ପ୍ରୟୋଗ ଓ ପରୀକ୍ଷା କରିବେ, ବିବରଣୀ ସଂଗ୍ରହ କରିବେ ଏବଂ ତାକୁ ଭିତ୍ତି କରି ଉକ୍ତ ପ୍ରବନ୍ଧ ପାଇଁ ନିଆଯାଇ ପାରେ । ଅନ୍ତତଃ ଛଅମାସ ବା ବର୍ଷେକାଳ କୌଣସି ଶିକ୍ଷକ ପ୍ରବନ୍ଧର ଆବଶ୍ୟକତା ଅନୁସାରେ କାର୍ଯ୍ୟ କରିବେ । ସେଥିପାଇଁ ପ୍ରବନ୍ଧର ବିଷୟ ଯଥେଷ୍ଟ ପୂର୍ବରୁ ସ୍ଥିର କରାଯିବ ଏବଂ ଶିକ୍ଷକମାନଙ୍କୁ ଜଣାଇ ଦିଆଯିବ । ଏହାଦ୍ୱାରା ଶିକ୍ଷକଙ୍କର କାର୍ଯ୍ୟ ଓ ଚିନ୍ତା କ୍ରମେ ଉନ୍ନତ ହେବ । ଏହି ପ୍ରବନ୍ଧ ପ୍ରତିଯୋଗିତାର ଲକ୍ଷ୍ୟ ନୁହେଁ କେବଳ ଉତ୍କୃଷ୍ଟ ପ୍ରବନ୍ଧ ଲେଖିବାକୁ ନିର୍ବାଚନ କରିବା । ଶିକ୍ଷାର ବହୁବିଧ ସମସ୍ୟାକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଶିକ୍ଷା-ପ୍ରକ୍ରିୟାକୁ ସରଳ ଓ ସାବଲୀଳ କରି ହେବ ଏବଂ ଶିକ୍ଷକଙ୍କର ଜ୍ଞାନ ଓ କାର୍ଯ୍ୟଦକ୍ଷତା କିପରି ବଢ଼ିବ, ଏହାହିଁ ପ୍ରବନ୍ଧ ପ୍ରତିଯୋଗିତାର ମୁଖ୍ୟ ଲକ୍ଷ୍ୟ ।

(୭) ଏହି ସମ୍ମିଳନୀ ଅବସରରେ କୃତବିଦ୍ୟ ଶିକ୍ଷକ ଓ ଅନୁଷ୍ଠାନର ଉଲ୍ଲେଖଯୋଗ୍ୟ କୃତିତ୍ୱର ବର୍ଣ୍ଣନା ଓ ଆଲୋଚନା ହେବା ବାଞ୍ଛନୀୟ । ଏହାଦ୍ୱାରା ସଂପୃକ୍ତ ଓ କର୍ମକର୍ତ୍ତାଗଣ ଉତ୍ସାହିତ ଓ ସମ୍ମାନିତ ହେବା ସଙ୍ଗେ ସଙ୍ଗେ ଅନ୍ୟମାନେ

ଏ ଦିଗରେ ଅନୁପ୍ରାଣିତ ହୁଅନ୍ତେ ଏବଂ ଉନ୍ନତିମୂଳକ କାର୍ଯ୍ୟାନୁଷ୍ଠାନ କରିବାରେ ପ୍ରଣୋଦିତ ହୁଅନ୍ତେ ।

(୮) ଏପରି ସଭାସମିତି ଗୁଡ଼ିକୁ ଯଥା ସମ୍ଭବ ସରଳ ଓ ନିରାଡ଼ମ୍ବର ଭାବରେ ସଂଗଠନ କରିବା ବିଧେୟ । ଯେଉଁମାନେ ଅଭିଜ୍ଞ, ଉତ୍ସାହୀ ଓ କର୍ମନିଷ୍ଠ ଶିକ୍ଷକ, ସେମାନେ ସାଧାରଣତଃ ଏଗୁଡ଼ିକର ଆୟୋଜନ ଓ ପରିଚାଳନାରେ ବ୍ୟସ୍ତ ରହନ୍ତି । ତେଣୁ ଶିକ୍ଷା ସମ୍ବନ୍ଧୀୟ ଯେଉଁ ଆଲୋଚନା ଓ ପର୍ଯ୍ୟାଲୋଚନା କରାଯାଏ, ସେଥିରେ ସେମାନେ ସକ୍ରିୟ ଅଂଶଗ୍ରହଣ କରିବା ସମ୍ଭବ ହୁଏ ନାହିଁ । ଏହାଦ୍ୱାରା ଯେଉଁ ସିଦ୍ଧାନ୍ତ ଓ ନିଷ୍ପତ୍ତି ନିଆଯାଏ, ସେଥିରେ ସେମାନଙ୍କର ମୂଲ୍ୟବାନ୍ ଅଭିଜ୍ଞତା ଓ ପରାମର୍ଶର ଅଭାବ ରହିଯାଏ ।

(୯) ଶେଷରେ ସମ୍ମିଳନୀ ଉପଲକ୍ଷେ ଯେଉଁ ମନୋରଞ୍ଜନ କାର୍ଯ୍ୟକ୍ରମ ରହିଥାଏ, ସେଗୁଡ଼ିକରେ କୁଶଳୀ ଓ କୃତବିଦ୍ୟ ଶିକ୍ଷକମାନେ ଯଥାସମ୍ଭବ ଅଂଶ ଗ୍ରହଣ କରିବା ଉଚିତ । ଏହାରି ମାଧ୍ୟମରେ ସେମାନଙ୍କର ଦକ୍ଷତା ଓ କଳାପାଟବ ପ୍ରକାଶିତ ଓ ପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଜୀବନକୁ ଅଧିକ ମଧୁମୟ ଓ ଆନନ୍ଦମୟ କରି ହୁଅନ୍ତା ।

ଆପଣଙ୍କ ବିଚାର ପାଇଁ ମୁଁ ଏହି ସୂଚନାଗୁଡ଼ିକ ନମ୍ର ଭାବରେ ଉପସ୍ଥାପନ କରୁଛି । ଏ ସମ୍ପର୍କରେ ଆପଣଙ୍କର ବିଚାର ଜାଣିପାରିଲେ ବାଧିତ ହେବି ।

ଆପଣଙ୍କର
ଶ୍ରୀ ଶତ୍ରୁଘ୍ନ ନାଥ
୨୦ । ୪ । ୬୬

# ନିଜେ ତୋହର ନିଜ ଗୁରୁ

ଶିକ୍ଷା ମୁଖ୍ୟତଃ ଗୁରୁଙ୍କୁ କେନ୍ଦ୍ର କରିଥାଏ । ଗୁରୁଙ୍କ ବିନା ଶିକ୍ଷା ହୋଇପାରିବ ନାହିଁ । ସେଥିପାଇଁ ଆମେ ଗୁରୁ ଖୋଜିଥାଉଁ । ସେ କଥାରେ କହନ୍ତି, ହାତରେ ବତାଇ ଦିଅନ୍ତି, କାମରେ କରନ୍ତି । ଆମେ ସେଥିରୁ ଶିକ୍ଷା କରୁଁ । ଏହିପରି ଭାବରେ ଶିକ୍ଷାର୍ଥୀମାନେ ଶିକ୍ଷକଙ୍କ ଉପରେ ଅତ୍ୟଧିକ ନିର୍ଭର କରିଥାନ୍ତି । ଏହାହିଁ ଆମର ଚିରାଚରିତ ଧାରଣା । ଏହିପରି ଆମ ଶିକ୍ଷା ଚାଲିଆସିଛି ।

ଏପରି ଶିକ୍ଷକ ମଧ୍ୟ ଅଛନ୍ତି, ଯେଉଁମାନେ ବିଦ୍ୟାର୍ଥୀମାନଙ୍କୁ ଅତ୍ୟଧିକ ସାହାଯ୍ୟ କରନ୍ତି । ପିଲାଙ୍କ ପାଇଁ ସେ ରଚନା ଲେଖିଦିଅନ୍ତି, ଅଙ୍କ କରି ଦିଅନ୍ତି, ଖାତାରେ ଚିତ୍ରାଙ୍କନ କାଟି ଦିଅନ୍ତି, ହାତକାମ କରି ଦିଅନ୍ତି, ପ୍ରଶ୍ନର ଉତ୍ତର ବତାଇ ଦିଅନ୍ତି । ତାଙ୍କ ଧାରଣା ଏହି ଯେ, ଏମାନେ ଛୋଟ ପିଲା, କୋମଳମତି ଶିଶୁ, ଏମାନେ କିଛି ଜାଣନ୍ତି ନାହିଁ । ହାତ ଗୋଡ଼ ମଜବୁତ୍ ହୋଇ ନାହିଁ । ତେଣୁ ଏମାନେ ନିଜେ କଅଣ କରିବେ ? ଫଳରେ ଶିକ୍ଷକ ଏମାନଙ୍କ ପାଇଁ ସବୁ କିଛି କରିଦେବା ଦରକାର । ଅନ୍ୟ ଏକ କଥା ଏହି ଯେ ଶିକ୍ଷକ ଏସବୁ କରି ଆନନ୍ଦ ପାଆନ୍ତି । ତାଙ୍କୁ ଖୁସି ଲାଗେ । ପିଲାଙ୍କର ସବୁ କାମ କରିଦେବା ଦ୍ୱାରା ତାଙ୍କ ହୃଦୟ ଆନନ୍ଦରେ ପୂରି ଉଠେ । ମା ହେଉଛନ୍ତି ପ୍ରଥମ ଗୁରୁ ଓ ଶିକ୍ଷକ ହେଉଛନ୍ତି ଦ୍ୱିତୀୟ ମା । ତେଣୁ ସେ ନିଜକୁ ମା ବୋଲି ଭାବି ପିଲାଙ୍କର ସବୁ କାମ କରି ଯାଆନ୍ତି ଓ ମା'ଙ୍କ ପରି ଆନନ୍ଦ ଅନୁଭବ କରନ୍ତି । ତୃତୀୟ ଓ ଅନ୍ୟ ଏକ ଏହିପରି ଅଳୀକ ଧାରଣା ଏହି ଯେ ପିଲା ବୟସରେ ଚିନ୍ତା କରିହୁଏ ନାହିଁ । ଛୋଟ ମନରେ ବଡ଼ ଚିନ୍ତା ପଶିବ କିପରି ? ତେଣୁ ପ୍ରାଥମିକ ଶ୍ରେଣୀର ପିଲାଙ୍କୁ କେବଳ ଘୋଷିବାକୁ ଦିଆଯିବ । ଶିକ୍ଷକ ଡାକି ଦେବେ ଓ ପିଲାଏ ଘୋଷି ପକାଇବେ । ବଡ଼ ହେଲେ ମୁଣ୍ଡ ବଢ଼ିବ । ସେତେବେଳେ ସିଲେ ବୁଝିବେ । ଚିନ୍ତା କରିବେ, ଯୁକ୍ତି କରିବେ । ଛୋଟ ବେଳ ବିଚାରର ବୟସ ନୁହେଁ । ଏଥିପାଇଁ ମନୋବିଜ୍ଞାନକୁ ଅଯଥା ଦାୟୀ କରାଯାଏ । ଫଳରେ ଥୟ କରାଯାଏ ଯେ, ଶିକ୍ଷକଙ୍କ ବଡ଼ ମୁଣ୍ଡରେ ବେଶୀ ପାଠ ପଶିଛି ଓ ପିଲାଙ୍କ କୁନି ମୁଣ୍ଡଟା ଖାଲି ଅଛି । ଖାଲି ପାତ୍ରକୁ ଭର୍ତ୍ତି କରିଦେବା ନ୍ୟାୟରେ ଶିକ୍ଷା କାମ କଳସିରୁ ଗଳଗରି ପାଣି ଢାଳିଲା ପରି ଚାଲେ ।

ଏସବୁ କଥା ଠିକ୍ ନୁହେଁ । ମନୋବିଜ୍ଞାନର ଏହା ପ୍ରମାଣ ନୁହେଁ । ସାନବେଳରୁ ଚିନ୍ତା, ଯୁକ୍ତି ଓ ବିଚାର କରିହେବ । ପିଲାଏ ଭାବନ୍ତି । ଠିକ୍କୁ ଭୁଲଠାରୁ ଅଲଗା କରନ୍ତି । ତେବେ ତାଙ୍କ କାମର ପରିସର ଭିତରେ ଏହା କହନ୍ତି । ନିଜ ଭାଷା ବ୍ୟବହାର କରନ୍ତି । ଯେଉଁ କାମ ଓ ଖେଳ ତାଙ୍କର ନୀତିଦିନିଆ, ସେହି ଭିତରେ ସେମାନେ ଚିନ୍ତା କରନ୍ତି । ଏହା ମନୋବିଜ୍ଞାନରୁ ଜଣାଯାଏ । ସେମାନଙ୍କ ହାତ, ଗୋଡ଼, ଅଙ୍ଗୁଳି, ମାଂସପେଶୀ ଆଦି ଯେତିକି ବଢ଼ିଛି ସେତିକି କାମ ସେମାନେ କରିବାକୁ ଆଗ୍ରହୀ । ହାତରେ ମାଟି ଖୋଳିବେ । ଆଙ୍ଗୁଳିରେ ଚିତା କାଟିବେ । ଫୁକୁରୁ ଫୁକୁରୁ ଡେଇଁବେ । କଥା ବୁଝି କାମ କରିବେ । ଓଠ ଓ ଜିଭକୁ ଲଗାଇ କଥା କହିବେ, ଠିଆ ହେବେ । ପ୍ରଶ୍ନ ବୁଝି ଉତ୍ତର ଦେବେ ଓ ନିଜେ ପ୍ରଶ୍ନ କରିବେ । ଘରେ ପିଲାଏ ଅନେକ ପ୍ରଶ୍ନ ପଚାରନ୍ତି । କିଏ, କଅଣ, କାହିଁକି, କିପରି ଆଦି ପ୍ରଶ୍ନ ପଚାରି ଅଥୟ କରିପକାନ୍ତି । ଅନେକ ସମୟରେ ଉତ୍ତର ପାଆନ୍ତି ନାହିଁ । କେହି ମଧ୍ୟ

ଉତ୍ସାହ ଦିଅନ୍ତି ନାହିଁ । ତେଣୁ ଏସବୁ ଘରୋଇ ପ୍ରଶ୍ନ ହୋଇଯାଏ । ତେଣୁ ସ୍କୁଲରେ ପାଟି ଫିଟାନ୍ତି ନାହିଁ । ଏହା ଏକ ଅଦ୍ଭୁତ ପରିବର୍ତ୍ତନ । ଘରର ପ୍ରଶ୍ନ ଘରୋଇ ହୋଇଯାଏ ଓ ସ୍କୁଲରେ ତୁଣ୍ଡ ଫିଟେ ନାହିଁ । ସେତକ ବୁଝି ସ୍କୁଲକୁ ପ୍ରଶ୍ନର ଘର କରାଯିବ । ଶିକ୍ଷକ ସେମାନଙ୍କୁ ଆପଣାର କରିବେ । ଘରେ ପିଲାଟି ପାଟିରେ ଅନର୍ଗଳ କଥା ଚାଲିଛି । କିନ୍ତୁ ସ୍କୁଲରେ ୧୪୪ ଧାରା ଜାରି ହୋଇଯାଇଛି । ପାଟି ଫିଟା ପରିବେଶ କରିଦେଲେ ସେମାନେ ମନ ଖୋଲି କଥା କହିବେ । ଅନ୍ୟର କଥା ଶୁଣିବେ । ଭାବିବେ ଓ ବିଚାରିବେ, ହାତ ମାରିବେ, ଆଖି ଫିଟାଇ ଦେଖିବେ ।

ଆଚ୍ଛା, ଘୋଷିବା କଥା । ପାଠଶାଳାରୁ ଏହା ଛାଡୁ ନାହିଁ । ହଁ, ଘୋଷିବା ଭଲ କଥା । ପାଠ ଗୋଟି ଗୋଟି କରି ମନେ ରହିବ । କିନ୍ତୁ ପାଠର ଭଣ୍ଡାର ଅସରନ୍ତି । ଏହାର ସୀମା ନାହିଁ । ଏହା ମଧ୍ୟ ନାହିଁ ନ ଥିବା ବେଗରେ ବଢୁଛି । ଯଦି ପାଠର ସଂଖ୍ୟାକୁ ହାତରେ ଗଣି ଦେଇ ହୁଅନ୍ତା, ତେବେ ଆମେ ଘୋଷାଘୋଷି କରି ପାଠକୁ ଅକ୍ତିଆର କରନ୍ତୁ । କେତେ ପାଠ ଘୋଷିବା ? ପୂର୍ବ କାଳରେ ପାଠର ସୀମିତ ସଂଖ୍ୟା ଥିଲା । ତେଣୁ ଘୋଷବନ୍ତମ୍ ବଳବନ୍ତମ୍ ବୋଲି କୁହାଯାଉଥିଲା । ବର୍ତ୍ତମାନ ସେ କଥା ନାହିଁ । ପାଠର କଳନା କରିହେବ ନାହିଁ । ଏହା ମଧ୍ୟ ବଢ଼ିବାରେ ଲାଗିଛି । ନଇର ବଢ଼ିପାଣି ବଢ଼ିଲା ପରି ବା ତାଠାରୁ ଅଧିକ ବେଗରେ ପାଠ ହୁ-ହୁ ବଢୁଛି । ସେପରି ସ୍ଥଳରେ ପଢ଼ି ଶିଖିବା । ପିଲାଏ ନିଜେ ବୁଝିବେ । ବର୍ତ୍ତମାନ ପିଲାଏ ଚୁପ୍‌ଚାପ୍ ଶୁଣୁଛନ୍ତି । ଶିକ୍ଷକଙ୍କ ମୁହଁକୁ ଅନାଇଛନ୍ତି । ଏହା ନକରି ପାଠପଢ଼ା ପ୍ରକ୍ରିୟାରେ ସେମାନେ ଅଂଶଗ୍ରହଣ କରନ୍ତେ । ପାଠପଢ଼ାରେ ମନ ଲଗାଇବେ । ଛବି, ଚିତ୍ର ଦେଖି ବୁଝିବା ସୁଯୋଗ ଦିଆଯିବ । ଏପରି କଲେ ଘୋଷିବା କମିଯିବ । ସେ ସକ୍ରିୟ ହେବେ । ଶିକ୍ଷଣ ପ୍ରକ୍ରିୟାରେ ଯୋଗ ଦେବେ ।

ଆଉ ଗୋଟିଏ କଥା । ପାଠପଢ଼ା କଅଣ ପ୍ରାଥମିକ ବିଦ୍ୟାଳୟରେ ସରିଯାଉଛି ? ହଁ, ଦିନ ଥିଲା, ପାଠ ସେଇଠି ସରୁଥିଲା । ପାଠପଢ଼ା ସେଠି ସରୁଛି ବୋଲି ଭାବି ଆମେ ସବୁ ପାଠ ଖୁନ୍ଦି ଦେଉଛୁଁ । ଜବରଦସ୍ତ ପିଲାଙ୍କ ଉପରେ ଲଦି ଦେଉଛୁଁ । ତରବର କରି ପାଠ ସାରି ଦେଉଛୁଁ । ପିଲାଏ ପଢ଼ିଲେ ଡେରି କରିବେ । ତେଣୁ ଶିକ୍ଷକ ସେମାନଙ୍କଠାରୁ ବହି ଛଡ଼ାଇ ନେଇ ଚଞ୍ଚଳ ପଢ଼ି ପାଠ ଶୁଣାଇ ଦେଉଛନ୍ତି । ପାଠର ଭଣ୍ଡାର ଯେପରି ଅସରନ୍ତି । ସେହିପରି ଜୀବନଟାଯାକ ଆମେ ପାଠ ପଢ଼ିବାର କଥା । ହାଇସ୍କୁଲ, କଲେଜ ପ୍ରଭୃତି ଶିକ୍ଷାନୁଷ୍ଠାନ ରହିଛି । ଯେ ଯେତେ ପାରିବ, ପଢ଼ିବ । ଗାଁରେ ପୁସ୍ତକାଗାର ମଧ୍ୟ ଅଛି । ଗାଁକୁ ଖବରକାଗଜ ଆସୁଛି । ଚାଷ, ବେପାର, ଧନ୍ଦା ଯାହା ଆମେ କରିବୁଁ, ସେଥିପାଇଁ ନୂଆ ନୂଆ କଥା ଜାଣିବାକୁ ହେବ । ଟ୍ରେନିଂ ନେବାକୁ ପଡ଼ିବ । ନିଜ ଅଭିଜ୍ଞତାରୁ ଶିଖିବାକୁ ହେବ ।

ପୁରାଣ, ଭାଗବତ ଆଦି ଧର୍ମ ବହି ପଢ଼ିବାକୁ ପଡ଼ିବ । ସେହି ଅନୁସାରେ ଆମକୁ ଗଢ଼ିବାକୁ ହେବ । ବିଜ୍ଞାନର ପ୍ରସାର ହେତୁ ଆମ ପାରିବାରିକ ଜୀବନ, ସାମାଜିକ ସମ୍ପର୍କ, କାମଧନ୍ଦା, ଆଦିରେ ନୂଆ ନୂଆ କଥା ଶିଖିବାକୁ ହେବ । ମରିବା ପର୍ଯ୍ୟନ୍ତ ଆମକୁ ନୂଆ ଢଙ୍ଗ ଜାଣିବାକୁ ହେବ । ଆମକୁ ବେଳକୁ ବେଳ ବଦଳାଇବାକୁ ହେବ ।

ଅତି ପିଲା ବୟସରୁ କିଛି ପାଠ ପଢ଼ିଦେଲେ ଜୀବନଟାଯାକ କାମ ହୋଇଗଲେ- ଏହା ଆଉ ଚଳୁ ନାହିଁ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଜ୍ଞାନ ଅର୍ଜନ କରିବାକୁ ହେବ । ବରାବର ଶିଖିବାକୁ ପଡ଼ିବ । ଏ ବେଳର ସମସ୍ୟା ଆର ବେଳକୁ ନ ଥାଏ । ସେ ବେଳରେ ନୂଆ ସମସ୍ୟା ଆସିଯାଏ । ସେଥିପାଇଁ ବୁଦ୍ଧି ଖଟାଇବାକୁ ହେବ । ନୂଆ ବାଗବର୍ଗ ଲଗାଇବାକୁ ହେବ ।

ଅତଏବ ପିଲାମାନେ ବୁଦ୍ଧି ଖଟାଇ କାମ କରନ୍ତୁ । ବହି ଖଣ୍ଡିକ ପଢ଼ନ୍ତୁ । କଷ୍ଟ ଶବ୍ଦ ପଡ଼ିଲା । ଉତ୍ତର କଅଣ ହେବ, ଭାବନ୍ତୁ । ଅଭିଧାନ ଦେଖି ଶବ୍ଦର ଅର୍ଥ ବାହାର କରନ୍ତୁ । କେଉଁ ଅର୍ଥଟି ସେଠି ଲାଗିବ ସେମାନେ ଦେଖି ଥୟ କରନ୍ତୁ । ପିଲାଙ୍କ ପାଇଁ ଅଭିଧାନ ଲେଖାଯିବା ଉଚିତ । ସେଥିରେ ଛବି ଥିଲେ ପିଲାଙ୍କ ମନକୁ ପାଇବ । ଏକାଧିକ ଶ୍ରେଣୀର ଶବ୍ଦକୁ ସଂଗ୍ରହ କରି ଶିକ୍ଷକ ଅଭିଧାନ ହାତରେ ଲେଖିପାରନ୍ତି । ବର୍ଷେ ଖଣ୍ଡେ ଚେଷ୍ଟା କଲେ ଅଭିଧାନର ପାଣ୍ଡୁଲିପି ହୋଇଯିବ । ପିଲା ନିଜେ ଆବିଷ୍କାର କରିବେ । ଅକ୍ଷରଗୁଡ଼ିକୁ ମଡ଼େଇ ମଡ଼େଇ ପିଲାଙ୍କ ହାତଟିପ ଦରଜ ହୋଇଯାଏ । ସେମାନଙ୍କୁ କଷ୍ଟ ଲାଗେ । ବାଲି ପଟାଳିରେ ଆଙ୍ଗୁଳି ଦ୍ୱାରା ଅକ୍ଷର ଲେଖା ଯିବ । କାର୍ଡବୋର୍ଡ ବା କାଠରେ ଅକ୍ଷର କାଟି ଘରକାନ୍ଥରେ ଅକ୍ଷରଗୁଡ଼ିକୁ ଟଙ୍ଗାଇ ଦିଆଯିବ । ପିଲାମାନେ ଅକ୍ଷରଗୁଡ଼ିକୁ ସଜାଇ ଗଛ, ଘର, ଚକ ପ୍ରଭୃତି ଅବନା ଶବ୍ଦ ଗଠନ କରିବେ । ଆନନ୍ଦରେ ଅକ୍ଷର ଚିହ୍ନିବେ । କ, ଖ, ଗ ଆଦି ଅକ୍ଷରର ନାମ ଅଛି । କିନ୍ତୁ ଖେଳି ଖେଳି ଅକ୍ଷରଗୁଡ଼ିକୁ ଚିହ୍ନିଲେ ସେମାନେ ଅକ୍ଷରର ନାମ ଦେଉଛନ୍ତି ବୋଲି ସେମାନଙ୍କୁ ଲାଗିବ । ପଣକିଆ ଖନ୍ଦା ପିଲାମାନେ ନିଜେ ବାହାର କରିପାରିବେ । ଏହା କଲେ ସେମାନଙ୍କୁ କୌତୁକ ଲାଗିବ । ଆନନ୍ଦର ସୀମା ରହିବ ନାହିଁ । ସଂଖ୍ୟା ବିଶ୍ଳେଷଣ ମଧ୍ୟ ପିଲାଏ ନିଜେ କରିବେ । ହାତକାମ, ଚିତ୍ରାଙ୍କନ, ମାନଚିତ୍ର ଆଦି ସେମାନେ କରିବେ । ଏସବୁ ବଡ଼ମଣିଷଙ୍କ କାମ ପରି ହେବ ନାହିଁ । ନ ହେଉ, ବ୍ୟସ୍ତ ହେବା ନାହିଁ । ବରଂ ସେମାନଙ୍କୁ ଉତ୍ସାହ ଦେବା । କରିବାର ଆନନ୍ଦ ସେମାନେ ଅନୁଭବ କରିବେ । କିପରି କରାଯାଉଛି, ସେମାନେ ଜାଣିବେ । କରି କରି ସେମାନେ ଭଲ କାମ କରିବେ ।

ସ୍କୁଲ ପାଖ ଦୋକାନକୁ ଯାଇ ସଉଦାକିଣା ପିଲେ ଦେଖନ୍ତୁ । ଜଣେ ଲୋକ କଅଣ କିଣୁଛନ୍ତି ପିଲେ ଟିପନ୍ତୁ । ବଜାରଦର ଜାଣନ୍ତୁ । ସେଥିରୁ ଅଙ୍କ କରନ୍ତୁ । ନୂଆ

ଅଙ୍କର ପ୍ରଶ୍ନ ତିଆରି କରନ୍ତୁ । ପାଗ ଚାର୍ଟ ପିଲେ ଲେଖନ୍ତୁ । ନଈ କୂଳରେ ବା ଗଛମୂଳରେ ବସି ଦେଖନ୍ତୁ ଓ ଯାହା ଦେଖୁଛନ୍ତି ଲେଖନ୍ତୁ । ଏସବୁ ନିଜ ଚେଷ୍ଟାରେ ଶିକ୍ଷା । ଏହା ଆତ୍ମଶିକ୍ଷା (self learning) କିପରି ଶିକ୍ଷା କରାଯାଏ ତାହା ଶିକ୍ଷା କରିବା ଦରକାର (learning how to learn) । ୩୭ରେ ୨୩ ମିଶାଯିବା ବଡ଼ କଷ୍ଟ । ପିଲାମାନେ ଭୁଲ କରନ୍ତି । ଶିକ୍ଷକ ବତାଇ ଦିଅନ୍ତି । ପିଲେ ପୁଣି ଭୁଲି ଯାଆନ୍ତି । ଆଚ୍ଛା, ଏହି ମିଶାଣ କିପରି ହେଉଛି ? ତିନି ଦଶ ଓ ଦୁଇ ଦଶ ମିଶି ୫ ଦଶ; ୭ ଓ ୩ ମିଶି ଏକ ଦଶ, ମୋଟ ୬ ଦଶ ବା ଷାଠିଏ । ମିଶାଣର ପ୍ରଣାଳୀ ଜାଣିଗଲେ ସହଜରେ ନିର୍ଭୁଲ ଉତ୍ତର କ୍ଷିପ୍ରତା ସହକାରେ କରିହେବ । ବତକ, ମାଛ, ପ୍ରଜାପତି ଆଦି ପିଲାମାନେ ପର୍ଯ୍ୟବେକ୍ଷଣ କରନ୍ତି । କିନ୍ତୁ କିପରି ପର୍ଯ୍ୟବେକ୍ଷଣ କରାଯାଏ, ଏହା ସେମାନେ ଜାଣି ପାରନ୍ତି ନାହିଁ । ଫଳରେ ସେମାନେ ନିଜେ ପର୍ଯ୍ୟବେକ୍ଷଣ କରନ୍ତି ନାହିଁ । ଶିକ୍ଷକଙ୍କ ପର୍ଯ୍ୟବେକ୍ଷଣର ଫଳକୁ ଘୋଷିପକାନ୍ତି । ଏହା ତାଙ୍କର ହୁଏ ନାହିଁ । ପରୀକ୍ଷାରେ ସେମାନେ ଏସବୁକୁ ବାନ୍ତି କରିପକାନ୍ତି । ପରୀକ୍ଷା ପୂର୍ବରୁ ବା ପରେ ଯଦି ସେମାନେ ଭୁଲି ଯାଆନ୍ତି ତେବେ ଆଉଥରେ କରିପାରନ୍ତି ନାହିଁ । ନିଜେ କରି ଶିଖିଥିଲେ, ଭୁଲିଯିବା ସହଜ ନୁହେଁ । ତଥାପି ଯଦି ମନରୁ ପାଶୋର ହୋଇଯାଏ, ତେବେ ଆଉଥରେ ତିଆରି କରିହେବ ।

ପ୍ରାଥମିକ ବିଦ୍ୟାଳୟ କାଳରେ ଓ ତା ପୂର୍ବରୁ ପରିବାରରେ, ପିଲାମାନେ ଅତି ଦ୍ରୁତ ଗତିରେ ଶିକ୍ଷା କରନ୍ତି । ଅନେକ କଥା ଅଳ୍ପ ସମୟରେ ଶିଖିପକାନ୍ତି । ଏତେବେଳେ ସେ ଆନନ୍ଦ, ଆଗ୍ରହ ଓ ଅନୁରାଗ ଅନୁଭବ ନ କଲେ ପାଠ ପ୍ରତି ଘୃଣା ଆସିଯିବ । ଛାତ୍ର କୌତୁହଳୀ ହେବେ । ସେ ସୃଷ୍ଟି କରିବେ, ସେ ଆବିଷ୍କାର କରିବେ । ବିଦ୍ୟାଳୟ ବାହାରେ ସେ ଅନେକ କଥା ଦେଖୁଛନ୍ତି । ରେଡ଼ିଓରେ ପ୍ରାଥମିକ ବିଦ୍ୟାଳୟ ପାଇଁ କାର୍ଯ୍ୟକ୍ରମ ଦିଆଯାଉଛି । ଟେଲିଭିଜନରେ ପିଲାଙ୍କ ପାଇଁ କାର୍ଯ୍ୟକ୍ରମ କରାଯାଉଛି । କ୍ଷେତରେ ନାନା କାମ ହେଉଛି । ଗାଁରେ ପ୍ରଦର୍ଶନୀ, ନାଚଗୀତ, ସିନେମା ବେଳେବେଳେ କରାଯାଏ । ଗାଁର ଉନ୍ନତି ପାଇଁ ପଞ୍ଚାୟତ ଘର, ସମବାୟ ଭଣ୍ଡାର, ବ୍ୟାଙ୍କ, ପଶୁଚିକିତ୍ସା କେନ୍ଦ୍ର, ଶୀତଳଭଣ୍ଡାର, ପୋଷ୍ଟଅଫିସ, ଡାକ୍ତରଖାନା, ସହଯୋଗ ସମିତି ଆଦି କରାଯାଇଛି । ନାନା ଯୋଜନା କାର୍ଯ୍ୟକାରୀ କରାଯାଉଛି । ଖରାଦିନେ ଶୁଖିଲା ପଡୁଥିଲା । ଏବେ ପାଣି ମଡ଼ାଯାଇ ଚାଷ ହେଉଛି । ବିଜୁଳି ଆଲୁଅ ଦିଆଯାଇଛି । ଗାଁ କାରିଗର ଟ୍ରେନିଂ ନେଉଛନ୍ତି । ଏପରି ବିଭିନ୍ନ କାମ କେତେକ ଗାଁରେ କରାଯାଉଛି । ସହରରେ ସେହିପରି ନାନା କାମ ହେଉଛି । ଉଡ଼ାଜାହାଜ, ମଟରଗାଡ଼ି, ରିକ୍ସା ଆଦି ସହର ଗାଁ ଗଣ୍ଡା ଭିତରେ ପଶୁଛି । ଖବରକାଗଜ ଆସିଯାଉଛି । ବେଳେବେଳେ ଘରପୋଡ଼ି,

ନଇବଢ଼ି, ମରୁଡ଼ି ଆଦି ବିପଦ ମଧ୍ୟ ପଡୁଛି, ଏହିପରି ବିଦ୍ୟାଳୟ ବାହାରେ ନାନା କଥା ହେଉଛି। ପିଲାଙ୍କ ମନ ଉପରେ ଏହାର ପ୍ରଭାବ ପଡୁଥିବ। ବେଳେବେଳେ ମନ ମାତି ଉଠୁଥିବ। ଏସବୁକୁ ଶିକ୍ଷା କାମରେ ଲଗାଇ ହେବ। ଏହାଦ୍ୱାରା ପିଲାଙ୍କ କୌତୁହଳ ଶାଣିତ ଓ ଉପାଣିତ ହେବ। ନୂଆ କଥା, କାମ ଓ ଭାଷା ସେମାନେ ସୃଷ୍ଟି କରିବେ। ବହିରେ ଯାହା ଲେଖାଯାଇଛି ଓ ଶିକ୍ଷକଙ୍କ ମୁଖରୁ ଯାହା ଶୁଣାଯାଏ, ସେସବୁ ପିଲାମାନେ ନିଜେ ଆବିଷ୍କାର କରି ଆନନ୍ଦ ପାଇବେ।

ଏଠାରେ ସନ୍ଦେହ ଜାତ ହୁଏ-ଶିକ୍ଷାକ୍ରମ, ଶିକ୍ଷାଳୟ ଓ ଶିକ୍ଷକ ତେବେ ଅନାବଶ୍ୟକ ହେବେ କି ? ନାଁ ପାଠ୍ୟକ୍ରମ ରହିବ। ପାଠଶାଳାର ବାହାର ଅଭିଜ୍ଞତାକୁ ଏଥି ସହିତ ଭୁଞ୍ଜାଇ ଦିଆଗଲେ ପାଠ୍ୟକ୍ରମ ସମୃଦ୍ଧ ହେବ। ପ୍ରତ୍ୟେକ ପିଲାଙ୍କ ବୈଶିଷ୍ଟ୍ୟ ଓ ପ୍ରତିଭା ବିକଶିତ ହେବ। ଶିକ୍ଷାଳୟ ଓ ଶିକ୍ଷକ ବର୍ତ୍ତମାନ ସମାଜର ବିକାଶଧାରାରୁ ବିଚ୍ୟୁତ ହୋଇଛନ୍ତି। ଶିକ୍ଷାଳୟର ଚାରିକାନ୍ଥ ମଧ୍ୟରେ ଶିକ୍ଷା ଆବଦ୍ଧ ହୋଇଛି। ଏହି ପ୍ରାଚୀର ଭାଙ୍ଗିଯିବ। ସମାଜର ବିଭିନ୍ନ ଅନୁଷ୍ଠାନ ସହିତ ଶିକ୍ଷାଳୟର ସମ୍ପର୍କ ବଢ଼ିବ, ସହଯୋଗ ରହିବ। ଶିକ୍ଷାର ପ୍ରସାର ଓ ବିକାଶରେ ସମସ୍ତେ ସାହାଯ୍ୟ କରିବେ। ସେହିପରି ଶିକ୍ଷକ ନିଜକୁ ପୃଥକ୍ ମନେ କରିବେ ନାହିଁ। ଶିକ୍ଷାକାର୍ଯ୍ୟରେ ସେ ଅନ୍ୟମାନଙ୍କଠାରୁ ସାହାଯ୍ୟ ପାଇବେ ଓ ଅନ୍ୟମାନଙ୍କୁ ସାହାଯ୍ୟ ଦେବେ। ସମାଜର ସମଗ୍ର ପରିସର ଶିକ୍ଷାର କ୍ଷେତ୍ର ହେବ। ଶିକ୍ଷା ପାଇଁ ସମସ୍ତଙ୍କର ଦାୟିତ୍ୱ ବଢ଼ିଯିବ। ଏପରି କରିବା ଦ୍ୱାରା ଶିକ୍ଷା ସମାଜର ସମସ୍ୟା ସମାଧାନରେ ସହାୟକ ହେବ। ବାସ୍ତବରେ ଶିକ୍ଷା ସାର୍ଥକ ହେବ। ଦୈନନ୍ଦିନ ଜୀବନ ପାଇଁ ଏହାର ଉପକାରିତା ରହିବ। ଜନସାଧାରଣଙ୍କ ଅଭିଳାଷ ଓ ଆକାଙ୍‌କ୍ଷା ଏଥିରେ ପ୍ରତିଫଳିତ ହେବ।

ପାଠ୍ୟପୁସ୍ତକକୁ ନୂଆକରି ଲେଖିବାକୁ ପଡ଼ିବ। ବର୍ତ୍ତମାନ ଏହା ମୁଖ୍ୟତଃ ଘୋଷିବାର ଏକ ବଡ଼ ସାଧନ ହୋଇଛି। ପିଲେ ନିଜ ଚେଷ୍ଟାରେ ଶିକ୍ଷାରେ ଆଗେଇ ଯିବାପାଇଁ ତେଜ ପାଉନାହାନ୍ତି। ବରଂ ସେଥିରେ ବନ୍ଧା ହୋଇ ରହୁଛନ୍ତି। କିଛି ଭାବିବା ବେଳରେ ମନ ସେହି ବହିର ପୃଷ୍ଠାରେ ଲାଗି ରହୁଛି। ସାହିତ୍ୟ ବହିର ଗୋଟିଏ ପାଠରୁ ଆଉ ପାଞ୍ଚଖଣ୍ଡ ବହି ଦେଖିବା ପାଇଁ ମନ ହେଉ ନାହିଁ। ପ୍ରାକୃତିକ ଓ ସାମାଜିକ ପରିବେଶ ଆଡ଼କୁ ମନ ଯାଉନାହିଁ। ଆଗ୍ରହ ମରିଯାଉଛି। କୌତୁହଳ ଦବି ଯାଉଛି। କିଛି ଆବିଷ୍କାର କରିବା ପାଇଁ ସାହସ ଓ ଶକ୍ତି ହେଉ ନାହିଁ। ତେଣୁ ଏହି ଦିଗରୁ ପାଠ୍ୟପୁସ୍ତକକୁ ବାଗେଇ ଲେଖିବାକୁ ହେବ। ଅନୁଶୀଳନୀ ରହିବ। ଆପେ ଆପେ ପଢ଼ି ପାଠରେ ଆଗେଇ ଯିବାକୁ ପ୍ରେରଣା ମିଳିବ। ସହାୟକ ବହି ଓ ସାମଗ୍ରୀ ମଧ୍ୟ ପ୍ରସ୍ତୁତ କରାଯିବ।

ଶିକ୍ଷଣ ପ୍ରକ୍ରିୟାରେ ଶିକ୍ଷାର୍ଥୀ ହେଉଛନ୍ତି ମୂଳ । ସେ ଶିଖିବେ, ଆଗ୍ରହୀ ହେବେ, ଆଗେଇ ଚାଲିବେ । ସେଥିପାଇଁ ଆତ୍ମ-ଶିକ୍ଷଣ ଉପରେ ଗୁରୁତ୍ୱ ଦିଆଯିବ । ଶିଖିବା ପାଇଁ ସେ ପ୍ରୟାସୀ ହେବେ । ଶିକ୍ଷଣ କିପରି କରାଯାଉଛି ଏହା ସେ ଜାଣିବେ । ପରବର୍ତ୍ତୀ ଜୀବନରେ ସେ ନିଜେ ଶିକ୍ଷଣରେ ନିୟୋଜିତ ରହିବେ । ଶିକ୍ଷକ ଶିକ୍ଷାକୁ ଏହି ଦୃଷ୍ଟିରୁ ପରିବର୍ତ୍ତିତ କରାଯିବା ଉଚିତ । ବର୍ତ୍ତମାନ ଅବଧାନଙ୍କୁ ଶିକ୍ଷାଦାନ ପାଇଁ ପ୍ରସ୍ତୁତ କରାଯାଉଛି । ଅବଶ୍ୟ ଏହାର ଉଦ୍ଦେଶ୍ୟ ଏହି ଯେ ପିଲାମାନଙ୍କ ଶିକ୍ଷଣରେ ଏହା ସାହାଯ୍ୟ କରିବ । କିନ୍ତୁ ଶିକ୍ଷଣର ଏହି ନୂତନ ପ୍ରାଧାନ୍ୟ ଦୃଷ୍ଟିରୁ ପିଲାଏ କିପରି ଶିଖନ୍ତି ଏହା ସେ ଅଧ୍ୟୟନ କରିବେ । ବର୍ତ୍ତମାନର ଏହି "ମୂକ ଓ ବଧିର" ଶିକ୍ଷାପ୍ରଣାଳୀକୁ ବଦଳାଇ ସେମାନଙ୍କୁ ସକ୍ରିୟ କରିବାକୁ ହେବ । ଅବଶ୍ୟ ଶିକ୍ଷାକୁ ବ୍ୟକ୍ତି-ଭିତ୍ତିକ କରିଦେଲେ ଏହା ଅନେକାଂଶରେ ସାଧିତ ହେବ । ତାହା ମଧ୍ୟ କଥାରେ ରହିଛି । କାମରେ ହେଉ ନାହିଁ ।

ଆତ୍ମ-ଶିକ୍ଷଣ ହେଉଛି ଶିକ୍ଷଣର ନୂତନ ଦାନ । ଏଥିପାଇଁ ମଣ୍ଟେସ୍ୱରୀ, ରୁଷୋ ପ୍ରମୁଖ ଶିକ୍ଷାଗୁରୁ ଲାଗି ପଡ଼ିଥିଲେ । ପାଠର ପାଳଗଦାରୁ ଶିଶୁକୁ ସେମାନେ ଉଦ୍ଧାର କରିଛନ୍ତି । ଆଜି ସେମାନଙ୍କ ଚେଷ୍ଟାରୁ ସେ ବଞ୍ଚିଛି । କେବଳ ଜୀଇଁଲେ ହେବ ନାହିଁ, ଜୀବନକୁ ସାର୍ଥକ କରିବାକୁ ହେବ । ଆତ୍ମଚେଷ୍ଟା ଓ ଆତ୍ମ-ଶିକ୍ଷଣରେ ସାର୍ଥକତାର ସୂତ୍ର ରହିଛି ।

□□□

# ମହିମାଧର୍ମର ମୌଳିକତା

## (ଏକ)

ସୂର୍ଯ୍ୟାସ୍ତ ହୋଇ ନାହିଁ, ମାତ୍ର ଅଳ୍ପ ସମୟ ବାକିଅଛି । ଆମ୍ଭେମାନେ ବାବା ଆଜ୍ଞାଙ୍କୁ ଦର୍ଶନ କରିବୁ, ଆଶୀର୍ବାଦ ପାଇବୁ, କାମଦାମ କଥା ବୁଝିବୁ ।

ଆମେ ଚାରିପାଞ୍ଚଜଣ ମେଳି ହୋଇଯାଇଛୁଁ । ମେଳରେ ଥାନ୍ତି ଉତ୍କଳପ୍ରସଙ୍ଗର ସେ ବେଳର ମୁଖ୍ୟ ସମ୍ପାଦକ ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ, ତାଙ୍କ ସହକାରୀ ଶ୍ରୀ ସତ୍ୟନାରାୟଣ ନନ୍ଦ ଓ ଅନ୍ୟମାନେ । ସଞ୍ଜ ରତ ରତ ହେଉଥିବା ଦେଖି, ମୋତେ ଟିକିଏ ଆଗେଇଯିବାକୁ ପଡ଼ିଲା ।

ଅବଧୂତ ବିଶ୍ୱନାଥବାବା କଟକ ଚାନ୍ଦନୀଚୌକ ମହିମାଶ୍ରମ ବରଣ୍ଡାରେ ବିଜେ କରିଥା'ନ୍ତି । "ବାବା ଆଜ୍ଞା, ଶରଣ" କହି ଯଥାରୀତି ଶରଣମାନ୍ୟ

ଜଣାଇଲି । ବାବା ମହୋଦୟ "ମହିମା ଅଲେଖ" କହିଲେ । ଚଟକରି ପଚାରିଲେ "ଖାଇ ନଥିବ, ଦି'ଟା ଯାଇଡାଇ ପାଇଦିଅ ।" ସାଧୁମାନେ ଧାଇଁଯାଇ ଚୂଡ଼ାଚକଟାଟେ ମୋ ପାଇଁ କରିଦେଲେ । କାରଣ ସେତେବେଳକୁ ହାଣ୍ଡିକୁଣ୍ଡି ସଫା ହୋଇଗଲାଣି । ଖାଇବାସ୍ଥାନ ଭଲକରି ଧୂଆଯାଇଛି । ସବୁ ପରିଷ୍କାର ହୋଇଛି । ଶାଳପତ୍ର ଚଉଖୁନୀରେ ଚୂଡ଼ାଚକଟା ଦି'ଚାରି ମୁଠା ପକାଇଦେଲି ଓ ପାଣିମନ୍ଦେ ପିଇଦେବାରୁ ପେଟଟା ପୂରିଉଠିଲା ।

ଏ କାମ ସରିଲାବେଳକୁ ଦେଖେ ସତ୍ୟାନନ୍ଦବାବୁ ସାମାନ୍ୟ ଜଳଯୋଗ କରି କଥାବାର୍ତ୍ତାରେ ଲାଗିଯାଇଛନ୍ତି । କଥା ପଡ଼ିଛି, ଇଂରାଜୀ ଦର୍ଶନଗ୍ରନ୍ଥ ଛାପା କେତେ ବାକୀ ଅଛି ? କାଗଜ ନିଅଣ୍ଟ ପଡ଼ିପାରେ କି ? କଭର୍ କିପରି ହେବ ? ଏମିତିକା ଭିତରେ ବାବା ମହୋଦୟ ମଝିରେ ରହି ରହି ପ୍ରସନ୍ନ ବଦନରେ "ଅଲେଖ, ଅଲେଖ" କହୁଛନ୍ତି । "ମହିମା ବୁଝିବେ, ସବୁ କରିବେ, ବାବୁ ବେଳେ ବେଳେ ଦେଖି ଦିଅନ୍ତୁ ।" ମୁଁ ଲକ୍ଷ୍ୟ କଲି, ବାବା ଆଜ୍ଞା 'ଦର୍ଶନ ଭେକ' ଆଣିବାକୁ ସୂଚନା ଦେଲେଣି ।

ଆମେ ଆସିଲାବେଳକୁ କଳାହାଣ୍ଡିଆ ମେଘ କାଠଯୋଡ଼ି ଉପରକୁ ମାଡ଼ି ଆସିଥାଏ । ପାଣି ଓ ବାଲି ଏକାକାର ଦେଖାଯାଉଥାଏ । ସହରରେ ପଶିଲୁଣି, ଆଶ୍ରମ ପାଖେଇଛି, ଭୟ ନାହିଁ, ଏମିତି କଥା ହେଉଥିଲୁ । ଆଶ୍ରମରେ ପଶିଲାରୁ ଠପ ଠପ ଦି'ଠୋପା ପଡ଼ିଯାଇଛି । ସବୁ ଭୁଲିଗଲୁ ଆଶ୍ରମର ଗହଳି ଓ ସ୍ନେହାନନ୍ଦ ଭିତରେ । ବର୍ଷା ଏଣେ ଘନେଇ ଯାଇଛି । ଧାର ଧାର ବର୍ଷା କଳସିରୁ ଢାଳିଲା ପରି ଢାଳୁଛି ।

ବାବାଙ୍କର ଆଜ୍ଞା ହେଲା, "ଦର୍ଶନକୁ ଯିବା ।" ଏହା ପୂର୍ବରୁ ସାଧୁମାନେ ଦର୍ଶନ କୌପୀନ ପିନ୍ଧିସାରି ଥିଲେ । ଆମେ ଗୃହୀ କେତେଜଣ ଚଟଚାଟ ଦର୍ଶନ କପଡ଼ା ପିନ୍ଧିନେଲୁ । ବର୍ଷାକୁ ଦେଖି ଆମେ ସାହସ କରୁ ନଥିଲୁଁ । ବର୍ଷା ସେମିତି ଢାଳୁଛି, କମିବାରେ ନାହିଁ, ବରଂ ବେଳେ ବେଳେ ବେଶୀ ହେଉଛି । ଏଇଥିରେ ବାବା ଆଜ୍ଞା ଦର୍ଶନ ଆଖେଡ଼ାରେ ବିଜେ କରିଗଲେ, "ଶିରେ କରପତ୍ର ଯୋଡ଼ି" ଊର୍ଦ୍ଧ୍ୱବାହୁ ହୋଇ "ଗୁରୁବ୍ରହ୍ମ ଅଲେଖ, ଶରଣ ରଖ, ଶରଣ ରଖ" ବୋଲି ଡାକଦେଲେ । ଆମେ ସବୁ ଯଥା ସ୍ଥାନରେ ଠିଆ ହେଲୁ ଓ ଯଥାରୀତି ଦର୍ଶନ କଲୁ । ବର୍ଷା ପୂର୍ବପରି ରହିଛି । ଦର୍ଶନ ସରିଲା, ଆମେ ସମସ୍ତେ ଜଡ଼ସଡ଼ । ଦର୍ଶନ କପଡ଼ା ବଦଳାଇଲୁ । ପାଣିରେ ବୁଡ଼ିଥିବା ପରି କପଡ଼ା ହୋଇଥାଏ । ଚିପୁଡ଼ି ଦେଇ ଯଥା ସ୍ଥାନରେ ଶୁଖାଇ ଦେଲୁ ।

ଏହାହିଁ ମହିମାଧର୍ମର ନିଷ୍ଠା । "ନୁହଇ ଉଣ୍ଣାପ ବୋଝ, ବହିବାକୁ ବଡ଼ସଜ, ନେବା ଆଣିବାକୁ କେହୁ ଅଛି ସମର୍ଥ ?"

(ଦୁଇ)

ଜଣେ ଗୃହୀଙ୍କ କଥା । ବୁଢ଼ା ହେଲେଣି, ବୟସ ନବେ ଉପରେ ହେବ । ବଡ଼ ଟାଣରେ କଥା । ଦାନ୍ତ ସବୁ ଝଡ଼ିପଡ଼ିଲାଣି, ପୂରା ବେଦାନ୍ତୀ । ମକା, ଚଣା, ଚୂଡ଼ା ଚୋବାଇ ଦେଉଛନ୍ତି । ଗୀତା, ଭାଗବତ, ବେଦାନ୍ତ ଆଦିର ଶ୍ଳୋକ ମୁହେଁ ମୁହେଁ ବେଳେ ବେଳେ ଅସ୍ପଷ୍ଟ ହେଲେ ହେଁ ବୁଝାଇ ସ୍ପଷ୍ଟ କରିଦିଅନ୍ତି । ପାଖରେ ବସିଲେ ନିର୍ଗୁଣ, ନିଷ୍କାମ, ନିର୍ମୋହ ଚିନ୍ତା ଓ ଚେତନା ଛଡ଼ା ପିଲାଛୁଆ, ଘରଦ୍ୱାର, ଜମିବାଡ଼ି କଥା କିଛି ନଥାଏ ।

ଦିନେ ପୁଅ ସାଙ୍ଗରେ ଯାଉଛନ୍ତି । ପୁଅ ମଟରଗାଡ଼ି ଚଳାଉଛନ୍ତି । ବାପା ଗୁଣୁ ଗୁଣୁ କରି କଅଣ ବୋଲୁଛନ୍ତି । ବର୍ଷା ବି ପଡୁଛି । ଦିନ ଏଗାରଟା ବେଳ । ସେଆଡୁ ଭକ୍ତ ସତ୍ୟାନନ୍ଦ ଆସୁଛନ୍ତି । ବାପା ଗାଡ଼ି ଭିତରୁ ଡାକ ପକାଇଲେ, "ସତ୍ୟାନନ୍ଦ ଭାଇ, ଶରଣ ।" ଗାଡ଼ିର ଗତି ମନ୍ଦ ହୋଇଗଲା । ସତ୍ୟାନନ୍ଦ ନିଜ ସାଇକେଲରୁ ଓହ୍ଲାଇ ପଡ଼ିଲା । ପିଲାକାଳର ଚାଟଶାଳୀ ଶିକ୍ଷକଙ୍କୁ ଦେଖି ବିସ୍ମିତ ହେଲେ । କହିଲେ, "ଆଜ୍ଞା, ମୁଁ କାଲି କଟକ ଯିବି । ବାବା ଆଜ୍ଞା କଟକରେ ବିଜେ କରିଛନ୍ତି । ଆପଣ ଯିବେ କି ?"

ଉତ୍ତର ନାହିଁ । ଗାଡ଼ି ଧପ୍ କରି ଅଟକିଛି । ଭକ୍ତଭାଇ ଓହ୍ଲାଇ ଆସିଛନ୍ତି । ଗାମୁଛା ଖଣ୍ଡକରେ ଝାଡ଼ି ଦେଇ "ବାବା ଆଜ୍ଞା ଶରଣ" କହି ଯଥାରୀତି ଶରଣ କରିଛନ୍ତି । କାମ ଅଛି, ସଅଳ ଯିବାକୁ ପଡ଼ିବ । ଗାଡ଼ି ଚାଲିଛି, "ବାବା ଆଜ୍ଞାଙ୍କୁ ଶରଣ କଣାଇବ" ଏହି କଥା କିଛିଟା ସ୍ପଷ୍ଟ ଓ କିଛିଟି ଅସ୍ପଷ୍ଟ ଭାବରେ ଭକ୍ତଭାଇ ସତ୍ୟାନନ୍ଦଙ୍କୁ ଶୁଣାଯାଇଛି ।

ଗୋଷ୍ଠୀସ୍ଥିତ ଗୋଷ୍ଠୀଭୁକ୍ତ ନିଷ୍କାମୀ ଭକ୍ତ କିଏ ଜାଣନ୍ତି କି ? ସେ ହେଉଛନ୍ତି, କୋଷ୍ଠର ଭକ୍ତ ଭାଇ ପ୍ରାଣକୃଷ୍ଣ ଦାଶ ।

(ତିନି)

ଏହି ସାଧୁ ଗହଣରୁ ଫିଟିଯାଇଛନ୍ତି । ଚାଲିଛନ୍ତି ନଦୀବନ୍ଧରେ । କେତେବେଳେ ଚଞ୍ଚଳ କେତେବେଳେ ମନ୍ଦଗତି ତାଙ୍କର । ଗତି ଚଞ୍ଚଳ ଏଥିଯୋଗୁଁ ସେ ସନ୍ଧ ଓହ୍ଲାଇଆସିବ, ସୂର୍ଯ୍ୟାସ୍ତ ହେବ, ସେ ପାଣିପଣା ମୁନ୍ଦେ ପିଇବେ, ଶରଣଦର୍ଶନ କରି ଆଶ୍ରମରେ ରାତି କଟାଇବେ । ସତ୍ୟ ତାଙ୍କ ନ୍ୟାସ ହୋଇଥିବାରୁ ସେ ସନ୍ନ୍ୟାସୀ, ତେଣୁ ସେ ସତ୍ୟନିଷ୍ଠ ରହିବେ । ସତ୍ୟନିଷ୍ଠ ସନ୍ନ୍ୟାସୀ ନାମ

ଭକୁଥାନ୍ତି ହୃଦପଦ୍ମରେ । ପାଦାଗ୍ରକୁ ଲକ୍ଷ୍ୟକରି ସେ ଚାଲନ୍ତି, କାରଣ ସେ ସାଂସାରିକ ରୂପରଙ୍ଗରୁ ଦୂରେଇ ଥା'ନ୍ତି । ଉଇ, ପିମ୍ପୁଡ଼ି, ଜନ୍ଦା ଆଦି କ୍ଷୁଦ୍ରତମ ପ୍ରାଣୀ ପାଦ ତଳେ ନ ପଡ଼ନ୍ତୁ; କାରଣ ମହିମାଧର୍ମ ଅଣହିଂସାଧର୍ମ । ତେଣୁ ସେ ଏସବୁ ଦୃଷ୍ଟିରୁ ଗତିକୁ ମନ୍ଦ ମନ୍ଦ କରନ୍ତି ।

ସେ ଡୋରକୌପୀନଧାରୀ ଅପର ସନ୍ନ୍ୟାସୀ । କାନ୍ଧରେ କିଛି କପଡ଼ା, ଦୁଇଟା ଖଣ୍ଡେ ଖିସା । ଗୋଟିକରେ ଖଞ୍ଜଣିଟିଏ ଓ ଅନ୍ୟଟିରେ 'ସ୍ତୁତିଚିନ୍ତାମଣି', 'ଡାଡମାତ ଗୀତି', 'ଭଜନମାଳା', 'ଚିନ୍ମୟବ୍ରହ୍ମଗୀତା'-ଏପରି କେତେଖଣ୍ଡ ଦୈନନ୍ଦିନ ସ୍ୱାଧ୍ୟାୟ ପାଇଁ । ନଇବନ୍ଧ ସହଜରେ ଉଚ୍ଚ ଓ ଏହା ଉପରେ ଡେଙ୍ଗା ସନ୍ନ୍ୟାସୀ ଜଣକ ଏବଂ ତାଙ୍କ ମସ୍ତକ ଉପରେ ଜଟାପେଣ୍ଡା ରହିଥିବାକୁ ବହୁ ଦୂରରୁ ଏକନିଷ୍ଠ ସନ୍ନ୍ୟାସୀଙ୍କ ଏକାନ୍ତ ଯାତ୍ରା ଜଣାପଡୁଛି । ପଶ୍ଚିମାଭିମୁଖେ ଚାଲୁଥିବାରୁ ମୁଖମଣ୍ଡଳ ଉଦ୍ଭାସିତ ହେଉଛି ।

ଦେଖାଗଲା ସୂର୍ଯ୍ୟାସ୍ତ ଆଗତପ୍ରାୟ ଓ ସେ କେବେହେଁ ସାୟଂ ଶରଣ ଦର୍ଶନ ପାଇଁ ପରବର୍ତ୍ତୀ ଆଶ୍ରମରେ ପହଞ୍ଚି ପାରୁନାହାନ୍ତି । ତେଣୁ ସେ ଯାତ୍ରା ସ୍ଥଗିତ ରଖିଲେ । ନଦୀର ସ୍ୱଚ୍ଛ ଜଳରେ ଶୌଚାଦି ସମାପନ କଲେ । ଦୁଇ ତିନି ଆଞ୍ଜୁଳା ପାଣି ପିଇ ସେଦିନର ଭୋଜନ ସମାପନ କଲେ ।

ସାୟଂ ବ୍ରାହ୍ମମୁହୂର୍ତ୍ତ ଆସିଯାଇଛି । ଓପାରିଆ ନଈ ବନ୍ଧର ଗୋଟିଏ ପାଖ ସ୍ଥିର ହେଲା । ଚଲାରାସ୍ତାକୁ ବେଶ୍ ଛାଡ଼ିଛି । ପଥଚାରୀଙ୍କ ସଂଖ୍ୟା କମିଯାଇଛି । ଦର୍ଶନ ସ୍ଥାନକୁ ସାଧୁ ସଫା କରିଦେଲେ । ଆଞ୍ଜୁଳେ ପାଣି ଆଣି ଦର୍ଶନ ସ୍ଥାନରେ ଛିଞ୍ଚିଦେଲେ । ହେଳାଏ ଘାଷ ଉପାଡ଼ି ଯାଇତାଇ ପହଁରିଦେଲେ । ଏବେ ପବିତ୍ର ସ୍ଥାନରେ ପବିତ୍ର ମନରେ ପରମ ପବିତ୍ରଙ୍କୁ ଧ୍ୟାନ କରିବେ ।

ଦର୍ଶନ କୌପୀନ ପିନ୍ଧିଲେ । ଜଟାକୁ ପୃଷ୍ଠଭାଗରେ ଛାଡ଼ିଦେଲେ । "ଗୁରୁବ୍ରହ୍ମ ମହିମା ଅଲେଖ" ବାରମ୍ବାର ଉଚ୍ଚାରଣ କରୁଥାନ୍ତି । ଯଥାରୀତି ଶରଣ ଦର୍ଶନ ଶେଷ କଲେ ସିନା, ସବୁ ଦିନର ଆନନ୍ଦାନୁଭୂତି ଆଜି ନାହିଁ । ଟିକିଏ ମାନସିକ ଶରଣ କରିବାର ମନ ଥିଲେହେଁ ମନ ଗୋଳେଇ ହେଉଛି । କଅଣ ହେଲାକି ? କିଛି ତ ତ୍ରୁଟି ନାହିଁ, ତେବେ ସେ ପରମ ଶାନ୍ତି ନାହିଁ କାହିଁକି ? ସାଧୁ ଅବସନ୍ନ । ଅନ୍ତର ସାଧୁ ହୋଇ ନାହିଁ । ସେ ଦୋଚାରୀ ! ବ୍ରହ୍ମଚାରୀ ହେବାକୁ ସେ ସଂସାର ଛାଡ଼ିଲେ । ଜଟା ରଖିଲେ । ଗେରୁ କପଡ଼ା ଟେକିଦେଲେ । ସଂକଳ୍ପ ଧଇଲେ, ବିଶ୍ୱାତୀତଙ୍କୁ ବିଶ୍ୱମୟ ଦେଖିବା ପାଇଁ । ସଂକଳ୍ପ ଧରି ନ ପାରିଲେ ଜୀବନ ବିଫଳ । ମନ ଉକୁଟି ଯାଇଛି । ସେ ଆଗେଇବେ ନାହିଁ, ପଛେଇବେ କୁଆଡ଼େ ? ସବୁ ସେଇଠି ସାରିଦେବେ । ଜନପ୍ରାଣୀ ଜାଣିବେ ନାହିଁ । ନଦୀର ଅକାତ ପାଣିରେ ମିଳେଇ ଯିବେ ।

ଖିପାଟିକୁ ଖୋଲିଦେଲେ । ଖଞ୍ଜଣିଟା ଅଛି । ବହିଗୁଡ଼ିକ ରହିଛି । ଗୋଟେ ଟଙ୍କା, ଦୁଇଟି କୋଡ଼ିଏ ପଇସା-ଏପରି ତିନୋଟି ମୁଦ୍ରା ସେପରି ରହିଛି । କିନ୍ତୁ ତାଙ୍କ ମନ ଛନଛନ ହେଲା କାହିଁକି ? ସେ ଦର୍ଶନ କରୁଥିଲେ । ପ୍ରଭୁ ରେଣୁ ପାଉଥିଲେ । ଅନନ୍ତ ଆକାଶ ତଳରେ ଛିଡ଼ା ହୋଇ ଆତ୍ମ ସମର୍ପଣ କରୁଥିଲେ । "ରବି ଅସ୍ତଗଲା, ସାୟଂକାଳ ହେଲା, ଆହେ ପ୍ରଭୁ ଶୂନ୍ୟବାସୀ"ରୁ ଆରମ୍ଭ କରି ସାୟଂ ଜଣାଣଟି ପଢ଼ିଲେ । ମନଟା ପଳାଇଯାଇ ଖିସା କଟିଥିଲା ।

ରୋଗଟା ଧରାପଡ଼ିଲା । ନିଦାନ କଣାଗଲା, ଏବେ ସେ ପ୍ରତିକାର କରିବେ ନାହିଁ କାହିଁକି ? ତାଙ୍କ ହାତର କଥା ସବୁ । "ମୂଳୁ ମାଇଲେ ଯିବ ସରି ।" ପଇସା ଆଉ ଧରିବେ କାହିଁକି ? ସେ ତ କାଞ୍ଚନ ଛାଡ଼ିଛନ୍ତି । ସେଥିପାଇଁ ସେ ସଂସାର ତ୍ୟାଗୀ ।

ଏଇଠି ଏବେ ନବଜୀବନର ଆରମ୍ଭ । ବାଟୋଇ ଭାଇକୁ ଡାକି ଟଙ୍କାଏ ଚାଳିଶ ପଇସା ଦେଇଦେଲେ । ତାଙ୍କ ପାଖରେ ଆଉ ଫଟାପାହୁଲା ନାହିଁ । ସେ କପର୍ଦ୍ଦକଶୂନ୍ୟ । କିନ୍ତୁ ଅଛନ୍ତି ପୂର୍ଣ୍ଣବ୍ରହ୍ମ ।

## (ଚାରି)

ଖଣ୍ଡଗିରି ସତ୍ୟ ମହିମାଶ୍ରମ । ଐତିହାସିକ ଖଣ୍ଡଗିରିର ପାଦଦେଶରେ ଅବସ୍ଥିତ । ପ୍ରାଗ୍ ଐତିହାସିକ ଯୁଗରୁ ଧର୍ମର ସତ୍ୟ ସତ୍ୟଧର୍ମରେ ମହିମାନ୍ୱିତ । କଳାହାରୀ ଗୋସାଇଁ କଣାନନ୍ଦ ପ୍ରଭୁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଜଗତ ଭକ୍ତଙ୍କ ହିତପାଇଁ ଖେଳ କରୁଛନ୍ତି ଓ ସେହି ଖେଳର କିଛି ଅଂଶ ଖଣ୍ଡଗିରି ଓ ଏହାର ଚତୁର୍ଦ୍ଦିଗରେ ଘଟିଛି । ଦଳାଇ ଭକ୍ତ ପ୍ରଭୁଙ୍କୁ ଏହିଠାବରେ ଜଳ ଯୋଗାଇଛନ୍ତି । ଆଶ୍ରମ ମଧ୍ୟର ବଟକୃଷ୍ଣ ଓ ସମୀପସ୍ଥ କୂପ ଏହି ମହାନିତ୍ୟ ଖେଳର ସ୍ମାରକୀ ଭାବେ ବିଦ୍ୟମାନ ବୋଲି ଅନୁମାନ କରାଯାଏ ।

ଏଇଠି ମହିମାଧର୍ମର ଧର୍ମୋପଦେଷ୍ଟା ବିଶିଷ୍ଟାଚାର୍ଯ୍ୟ ଧର୍ମାଧ୍ୟକ୍ଷ ବିଶ୍ୱନାଥ ବାବା ବିଜେ କରିଥାନ୍ତି । ଭକ୍ତଙ୍କ ଭିଡ଼ରେ ଆଶ୍ରମ ଭାଙ୍ଗିପଡୁଥାଏ । କରୁଣାମୟ ବ୍ରହ୍ମ ମହିମାଙ୍କ ନିର୍ଦ୍ଦେଶରେ ଓ ବିଶ୍ୱନାଥ ବାବା ମହୋଦୟଙ୍କ ଆଶୀର୍ବାଦରେ କୟକୃଷ୍ଣ ବାବା ଆଜ୍ଞା ଧର୍ମଧାରାର ସୁପରିଚାଳନା କରୁଥାନ୍ତି ।

ଭିକ୍ଷାବେଳ ବର୍ଷା ଲାଗି ରହିଛି । ସମସ୍ତେ ଅନାଇଛନ୍ତି । ଦିନ ଗୋଟାକ ବେଳ ହେଲାଣି । ଟିକିଏ ଥମିଛି । ଖଣ୍ଡଗିରିର ମୁଣ୍ଡ ଉପରେ ମେଘ ଆସ୍ଥାନ ମାଡ଼ିଛି । କାଳେ ଦୁଲୁ ଦୁଲୁ ଢାଳିଦେବ । ତୁରନ୍ତ ଭିକ୍ଷା ପାଇଁ ବ୍ୟବସ୍ଥା ହେଲା । ଖଲି, ଚଉଖୁନୀ ପଡ଼ିଗଲା । ବାବା ଆଜ୍ଞା ଦୁଇ ମୂର୍ତ୍ତି ଅଲେଖ ଅନନ୍ତ ମହିମାପ୍ରଭୁଙ୍କୁ ଅର୍ପଣ କରି ଭିକ୍ଷା ସାରିଲେ । ସାଧୁ ଓ ବୈରାଗୀ ସମସ୍ତେ ମୁଠେ ମୁଠେ ଧରିଲେ ।

ଭକ୍ତମାନେ ମଧ୍ୟ ପତ୍ର ନେଇ ବସିପଡ଼ିଲେ। ମହିମାସାଗର ମହାପ୍ରଭୁ ଟେକି ଖାଇବାକୁ ଆରମ୍ଭ କଲେ। ଆସିଲା ପୁଣି ବର୍ଷା। ମୂଷଳଧାରା ଖଣ୍ଡଗିରିରୁ ଗଡ଼ିଆସି ଆଶ୍ରମ ଭିତରେ ବହିଚାଲିଲା। ଭିକ୍ଷା ସହିତ ପତ୍ର ଭାସିଯିବାର ଆଶଙ୍କା ହେଲା। ବେଶ ଶୃଙ୍ଖଳିତ ସମସ୍ତେ। ଭିକ୍ଷା ନଷ୍ଟ ହୋଇ ନାହିଁ। ଯାଇତାଇ ଦିଟା ପାଇଦେଲେ। ହାତ ଧୋଇ ପ୍ରଭୁଙ୍କୁ ଶରଣ ଜଣାଇଲେ। ବାବା ଆଜ୍ଞା ଦୁହିଁଙ୍କୁ ମଧ୍ୟ ଶରଣ ଗଲେ।

ଏହାକହି ଦେବାର କଥା ଯେ ମହିମାଧର୍ମ ସନ୍ନ୍ୟାସୀମାନେ ଅନନ୍ତ ଆକାଶ ତଳରେ ଭିକ୍ଷା ସାରନ୍ତି। ପାଣିଟୋପାଏ ସୁଦ୍ଧା ଗୃହ ଏପରିକି ଆଶ୍ରମ ମଧ୍ୟରେ ମଧ୍ୟ ଗ୍ରହଣ କରିବା ନିଷିଦ୍ଧ। ଭୋଜନ କେବଳ ଶରୀରରକ୍ଷା ପାଇଁ ଓ ଶରୀର କେବଳ ବ୍ରହ୍ମୋପଲବ୍ଧି ପାଇଁ। ବ୍ରହ୍ମସମର୍ପଣରେ ଶରୀର ହେଉଛି ସାଧନ ଓ ଶରୀରର ରକ୍ଷା ହେଉଛି ବ୍ରହ୍ମ ସାଧନ ଭଜନ ପାଇଁ କେବଳ ଉପଯୋଗୀ କରିବା। ଏଠି ଜିହ୍ୱାର ଲାଳସା ମେଣ୍ଟାଇବାର ପ୍ରଶ୍ନ ନାହିଁ। ଉଦରଭରଣର ବିଚାର ନାହିଁ। କେବଳ ସେହି ଏକ ବ୍ରହ୍ମଙ୍କ ଶରଣାଗତ ହେବାହିଁ ଭୋଜନ ଓ ଭଜନର ଧ୍ୟେୟ। ଉପଭୋଗ ପାଇଁ ନୁହେଁ, ଦେହ ଅନ୍ତର୍ଗତ ଅଦେୟୀ ତଥା ଦେହାତୀତଙ୍କୁ ଉପଲବ୍ଧି କରିବା। ଲେଖାଅଛି : "ଭୋଜନେ ଭଜନ ଯେହୁ ଗୋ ସମ୍ଭାଳଇ। ସେହି ଅଲେଖ ପ୍ରଭୁଙ୍କ ଗୋ ଭେଟ ପାଇ॥"

ପରମ ବୁଝାଉଛନ୍ତି। ପରମବ୍ରହ୍ମ ପରମାତ୍ମାଙ୍କ ଚେତନା ଅନନ୍ତ ଆକାଶ ଆମକୁ ଦିଏ। ବୃକ୍ଷଲତାଦି ପ୍ରକୃତିରୁ ମିଳିଥାଏ। କିନ୍ତୁ : ଆକାଶ, ପୃଥିବୀ, ବୃକ୍ଷଲତାଦି ପ୍ରକୃତ ମହିମାଧର୍ମର ଉପାସ୍ୟ ନୁହେଁ। ଉପାସ୍ୟ ହେଉଛନ୍ତି ଏକ ପ୍ରଭୁ ପରମବ୍ରହ୍ମ ପରମାତ୍ମା।

## (ପାଞ୍ଚ)

"ଏଥର ପ୍ରଭୁ ଚତୁର୍ଦ୍ଦଶୀ ଗୁରୁଗାଦିରେ କରିବା" ଏପରି ପାଞ୍ଚିଲେ ଭକ୍ତଭାଇ ପାଞ୍ଚଜଣ। ଜଣେ କହିଲେ, "ଆଗତ ପାଞ୍ଚ, ରହେ କାଞ୍ଚ।" ଅନ୍ୟ ଚାରିଜଣ କହିଉଠିଲେ, "ନା, ନା, ଏସବୁ ଭାଗ୍ୟବାଦୀ ବିଷୟୀଙ୍କ ବିଚାର, ଆମର ତାହା ନୁହେଁ। ମହିମାଧର୍ମରେ ପ୍ରଭୁ ପିତାମାତା। ତାଙ୍କୁ ସମର୍ପଣରେ ସବୁ ପାଞ୍ଚିବ, କରିବ, ଫଳ ଅବଶ୍ୟ ଫଳିବ।"

ଦିନକ ଆଗରୁ ବାହାରିଲେ। ରାତି ପାହାନ୍ତାରୁ ବାହାରିଛନ୍ତି। ପାଣି ପିଇନାହାନ୍ତି। ସାତଟା ବେଳକୁ ୪ ମାଇଲ ଖଣ୍ଡେ ଚାଲି ଆମ୍ବଗଛ ମୂଳରେ ବସିଲେ। ପାଣି ପିଇବେ, ଟିକିଏ କଅଣ ସାରିବେ, ଫେର ଚାଲିବେ। ଥକା ମାରୁଛନ୍ତି, ଜଣେ କହିଲେ, "ଆମର ବଡ଼ ପ୍ରଭୁ।" ଆଉ ଜଣେ ପଚାରିଲେ, "କେତେ ବଡ଼, ପାଞ୍ଚହାତ ନା ଦଶହାତ। କେତେ ମୋଟା। ଦୀର୍ଘପ୍ରତି କେତେ ?" ପୁରୁଣା ଭକ୍ତଟି

ଉତ୍ତରଦେଲେ, "ଏସବୁ ବାଜେ କଥା । ଏପରି ରଙ୍ଗରସ କଥା କହିବ ମନା; ତେବେ ଶୁଣ ସେ ପ୍ରଭୁଙ୍କ କଥା ।" ଭୀମସେନ କହିଛନ୍ତି-

"ଅବଧୂତ ସ୍ୱାମୀ ଅଲେଖ ଅବର୍ଣ୍ଣ ଅରୂପ ଅନାମ ଦୀକ୍ଷା,
ହରିତା କରତା ଜ୍ଞାନ ଗୁରୁଦାତା ଗତିପତି ସ୍ୱାମୀ ଏକା ।"

"ଜାଣିଛ, ଭାଇମାନେ ଆମେ ସେହି ଅନାଦି ଅରୂପ ବ୍ରହ୍ମଙ୍କୁ ପ୍ରାତଃ ସାୟଂ ବ୍ରାହ୍ମମୁହୂର୍ତ୍ତରେ ଯଥାକ୍ରମେ ସପ୍ତପଞ୍ଚବାର ଶରଣ ଯାଉ ।"

ଅନ୍ୟ ଜଣେ କହିଲେ, ହଁ, ହଁ, ଆମ ଶରଣ ହେଉଛି ସାଷ୍ଟାଙ୍ଗ ଶରଣ । ତେବେ ଏହି ସାଷ୍ଟାଙ୍ଗ ଶରଣ କଅଣ ?

ସେହି ପୁରାତନ ଭକ୍ତ ବୁଝାଇଲେ, "ଆମେ ପ୍ରତିଦିନ ସାଷ୍ଟାଙ୍ଗ ଶରଣ ଯାଉଛୁ । ଟିକିଏ ହେଜିଲେ ବୁଝିପାରିବ । ଏଥିରେ ଆମ ଶରୀରର ଆଠଗୋଟି ଅଙ୍ଗ ଲାଗେ । ସେହି ଆଠଗୋଟି ଅଙ୍ଗ ହେଉଛି, ଦୁଇ ପାଦ, ଦୁଇ କର, ଦୁଇ ଜାନୁ, ବକ୍ଷ, ମସ୍ତକ, ଚକ୍ଷୁ, ବାକ୍ୟ ଓ ମନ । ଆମ ପ୍ରଭୁ ମହିମା ମହାବ୍ରହ୍ମ ଆମକୁ ସୃଷ୍ଟି କରିଛନ୍ତି । ଆମକୁ ବଞ୍ଚାଇଛନ୍ତି । ମୃତ୍ୟୁ ପରେ ସେ ଆମକୁ ନେବେ । ତାଙ୍କୁ ଆମେ ଏହି ଅଷ୍ଟାଙ୍ଗ ସହିତ ଶରଣ ପଶୁଁ ।"

ଆନନ୍ଦର ସୀମା ନାହିଁ । ପାଞ୍ଚଭକ୍ତ ଭାଇ ବଡ଼ପ୍ରଭୁଙ୍କ ଆଶ୍ରିତ ହୋଇ ଚାଲିଲେ ।

□□□

# ସତ୍ୟରେ ତରିବି ସତ୍ୟରେ ମରିବି

ଏହି ଦୃଢ଼ଭକ୍ତି କାହାର ? କେଉଁ ଧର୍ମର ? କେଉଁ ଧର୍ମ ସତ୍ୟାଶ୍ରିତ ? ସତ୍ୟ ଉପାସନା କାହାର ଓ କେଉଁ ଧର୍ମରେ ?

ସେ ଧର୍ମ ସତ୍ୟ ଓ ସନାତନ । ମହିମା ଧର୍ମ ହେଉଛି ସତ୍ୟ ଓ ସନାତନ । ମହିମା ସ୍ୱାମୀ ସତ୍ୟ ଓ ସନାତନ ହୋଇଥିବାରୁ ତାଙ୍କ ପ୍ରବର୍ତ୍ତିତ ଓ ପ୍ରତିଷ୍ଠିତ ତଥା ତାଙ୍କ ନାମରେ ନାମିତ ମହିମାଧର୍ମ ସତ୍ୟ ସନାତନ । ଏହା ସେଥିଯୋଗୁଁ କୌଣସି ଏକ ନିର୍ଦ୍ଦିଷ୍ଟ ଯୁଗର ବା ସମ୍ପ୍ରଦାୟର ଧର୍ମ ନୁହେଁ । ଏହା ସାର୍ବଜନୀନ । ସର୍ବଯୁଗର ଓ ସକଳ ପ୍ରାଣୀଙ୍କର ଧର୍ମ । ଏବେ ମହିମା ନାମ ମହୀରେ ହୋଇଛି ବୁଣା ବୋଲି କୁହାଯାଉଥିଲେହେଁ ଏହାର ଆଦିମୂଳ ବେଦାନ୍ତ । ଗୁରୁ ମହିମା ଉଦେ ହୁଅନ୍ତେ

'ବେଦାନ୍ତସତ୍ୟ'। ସେ ଚିରନ୍ତନ। ସେ ସର୍ବ ପ୍ରାଚୀନ। ସେ ସର୍ବାଧୁନିକ। ସେ ଚିରପ୍ରବହମାନ। ସେ ସର୍ବକାଳରେ ରହି ସୁଦ୍ଧା ସେ କାଳାତୀତ। କଣାଦକଙ୍କ ବୈଶେଷିକ ଏହାର ପ୍ରମାଣ ଦିଅନ୍ତି ଯେ ସେ ଅଗଡ଼ା। ସେ ସର୍ବସୃଷ୍ଟିର ସର୍ବକାରଣର କାରଣ। ସେ ନିତ୍ୟ, ସତ୍ୟ ଓ ନିରଞ୍ଜନ। ସେ ସତ୍ୟାଦି।

ପ୍ରାଚ୍ୟ ଭୂଖଣ୍ଡର ଋଷିମାନଙ୍କର ଗୋଟିଏ ପ୍ରାର୍ଥନା; ବିଶ୍ୱବାସୀଙ୍କ ପାଇଁ ଏକମାତ୍ର ପ୍ରାର୍ଥନା, ଅସତ୍ୟରୁ ମୋତେ ସତ୍ୟଆଡ଼କୁ ବାଟ ଦେଖାଇନିଅ। ଅନ୍ଧକାରରୁ ଆଲୋକ ଆଡ଼କୁ ମୁହାଁଇ ଦିଅ। ମୃତ୍ୟୁର ଅଧୋଗତି ଭିତରୁ ବାହାର କରି ମୋତେ ଅମୃତର ଊର୍ଦ୍ଧ୍ୱଗତି ଦିଗକୁ ଆଗେଇ ଦିଅ। ପଚିଶ ପ୍ରକୃତି ପାଲରେ ମୁଁ ଛଟପଟ, ଭବସାଗର ମଧ୍ୟରେ ମୋ ଜୀବନ ନଉକା ଟଳମଟଳ। ମିଥ୍ୟା ଯୋଗୁଁ ମୁଁ ଦିଗଭ୍ରଷ୍ଟ। ଚାରିଆଡ଼େ ଅନ୍ଧକାର, ସେଥିରେ ପଡ଼ି ଜୀବନର ଆଲୋକ ଦେଖିପାରୁନାହିଁ। ଅମୃତର ଅସ୍ୱାଦନ କରିପାରୁ ନାହିଁ। ତେବେ ମୋ ଜୀବନ ଡଙ୍ଗାଟି କଅଣ କୂଳକିନାରା ପାଇବ ନାହିଁ ? ହଁ, ମାନବ ସମାଜର ଆମେ ସମସ୍ତେ ଭିନ୍ନ ଭିନ୍ନ, ଆମ ପାଇଁ ବିପଦ ମଧ୍ୟ ଅଲଗା ଅଲଗା, କିନ୍ତୁ ସତ୍ୟର ନାବ ସମସ୍ତଙ୍କ ଘଟରେ ଏକ ହୋଇଅଛନ୍ତି। ଭାଷାର ବିଭିନ୍ନତା ହେତୁ ସତ୍ୟର ପ୍ରକାଶ ଭିନ୍ନ ଭିନ୍ନ ହୋଇପାରେ। ଆମେ ପରସ୍ପରକୁ ବୁଝିପାରୁ ନାହିଁ। ସେଥିପାଇଁ କଳିତକରାଳ କରୁ। ମୁଣ୍ଡ ଫଟାଫଟି ହୋଇଯାଇପାରେ। କିନ୍ତୁ ସତ୍ୟ ଏକ। ସମସ୍ତଙ୍କ ଘଟରେ ସତ୍ୟର ନାବ ବନ୍ଧା ହୋଇଅଛି। ଜାତିଅଜାତିର ପ୍ରଶ୍ନ ନାହିଁ। ଦେଶ ବିଦେଶର କଥା ଉଠେ ନାହିଁ। ସତ୍ୟ ସବୁଦିନେ ସମସ୍ତଙ୍କ ଆଶ୍ରୟୀ ଅନୁଭବୀ କହନ୍ତି ସତ୍ୟହିଁ ପରମେଶ୍ୱର ତଥା ପରମେଶ୍ୱର ହିଁ ସତ୍ୟ।

ଜୀବନର ତିନୋଟି ମାଇଲ ଖୁଣ୍ଟ, କାରଣ, ତାରଣ ଓ ମରଣ। ସବୁର ନିୟାମକ ସତ୍ୟ। ଉତ୍ପତ୍ତି, ସ୍ଥିତି ଓ ବିଲୟ ତଥା ପରିଚାଳକ ହେଉଛି ସତ୍ୟ। ତେଣୁ ଜୀବନ ଋପେ ଆଧାରିତ। ଜୀବନକୁ ସତ୍ୟମୟ କରିପାରିଲେ ଜୀବନରେ ମିଥ୍ୟା ନାହିଁ, ଅନ୍ଧକାର ନାହିଁ, ମୃତ୍ୟୁ ମଧ୍ୟ ନାହିଁ, ପର ଆପଣାର ଭେଦ ନାହିଁ; ଆବିଳତା ନାହିଁ। ଅଛି ସର୍ବତ୍ର ଶୁଦ୍ଧ ଚୈତନ୍ୟ, ଯାହାକି ସତ୍ୟ ନାମରେ ଅଭିହିତ।

ଭୋଗଲାଳସା ଛଳନା ଓ ଅହଂକାର ସତ୍ୟର ସାଧନାରେ ଅନ୍ତରାୟ ସୃଷ୍ଟି କରେ। ଭୋଗବିଳାସୀ ମନୁଷ୍ୟ ସତ୍ୟଠାରୁ ଦୂରେଇ ଯାଏ। ସେ ଜଡ଼ବାଦୀ ଦୁନିଆରେ ବାସକରେ। ସବୁକିଛି ତା' ନିକଟରେ ଉପଭୋଗ୍ୟ ହୋଇଯାଏ। ସେହିପରି ଛଳନା ପ୍ରିୟ ମନୁଷ୍ୟ ନିଜ ସ୍ୱରୂପ ଜାଣିପାରେ ନାହିଁ। ନିଜ ଭିତରେ ଥିବା ଅଜଣାଙ୍କୁ ଜାଣିବା ସମ୍ଭବ ହୁଏ ନାହିଁ। ଅହଂକାରୀ ଲୋକ ଦାମ୍ଭିକ। ସେ ଆତ୍ମବଡ଼ିମାରେ ଉନ୍ମତ୍ତ, କାମକ୍ରୋଧାଦି ରିପୁମାନେ ମନୁଷ୍ୟକୁ ଅଣଆୟତ୍ତ ଓ

ଅସମ୍ଭାଳ କରିପକାନ୍ତି । ଅଶାନ୍ତି ହୃଦୟକୁ ପୂରାପୂରି ଅକତ୍ୟାର କରିନିଏ । ସତ୍ୟପଥରେ ଚାଲିଲେ ସିନା ମନୁଷ୍ୟ ସଚ୍ଚିଦାନନ୍ଦଙ୍କ ଆଡ଼କୁ ଆଗେଇବ । ତା'ର ଦୃଷ୍ଟି ନିତ୍ୟ ସତ୍ୟ ପରମବ୍ରହ୍ମଙ୍କ ମହାନିତ୍ୟମଣ୍ଡଳ ଉପରେ ରହିବ । ଜଗତର କାରଣ ତାରଣ ପାଇଁ ସତ୍ୟହିଁ ସଦା ସ୍ମରଣୀୟ ଓ ଉପାସ୍ୟ ।

ସତ୍ୟ କହିବାକୁ ପଡ଼ିବ । ଏହା ନିଶ୍ଚୟ କଠିନ, କିନ୍ତୁ ମାମୁଲି କଥା, ହୃଦୟର ବାର୍ତ୍ତାଟି ପାଟିରେ ପ୍ରକାଶ ପାଇଲେ କଥା ହୁଏ । ସତ୍ୟର ଉତ୍ସ ଆପଣାର ଅନ୍ତରାତ୍ମାରେ । ଏହା ପୁଣି ଚିନ୍ତା ଓ ଚେତନାରେ ପ୍ରତିଫଳିତ ହୋଇ କଥାର ରୂପ ନିଏ । ତଦନୁସାରେ ଆମେ ବିଭିନ୍ନ ପ୍ରକାର କାମ କରୁ । ତେଣୁ କାମ, ଚିନ୍ତା ଓ କଥା ସତ୍ୟ ଆଧାରିତ ହେବା ଆବଶ୍ୟକ । ଏହାକୁ ମଧ୍ୟ କାୟ, ମନ ଓ ବାକ୍ୟ କୁହାଯାଏ । ଏହି ତିନି ଦିଗରେ ଆମେ ସତ୍ୟ ପାଳିବା ଦରକାର । ଅର୍ଥାତ୍ ଏହାଦ୍ୱାରା ଆମେ ପୂର୍ଣ୍ଣମାତ୍ରାରେ ସତ୍ୟ ସମର୍ପିତ ବୋଲି ଜାଣିବାକୁ ହେବ, ଏଥିପାଇଁ ଆମେ ସାଧୁ ସଙ୍ଗ କରିବା, ସୁଶାସ୍ତ୍ର ପଢ଼ିବା, ସଦନୁଷ୍ଠାନ କରିବା ଓ ସଚ୍ଚିନ୍ତାରେ ଅଭ୍ୟସ୍ତ ରହିବା ।

ଆଲୋଚ୍ୟ ଶିରୋନାମାଟି ହେଉଛି ଭୀମଭୋଇଙ୍କର । ସେ ଅରଣ୍ୟବାସୀ । କନ୍ଦା, ପାଚିଲା ଫଳ ଖାଆନ୍ତି । ଗାଈ ଗୋରୁ ଚରାନ୍ତି । ପକ୍ଷୀମାନଙ୍କ କୁହୁତାନ ଶୁଣନ୍ତି । ଫୁଲର ମହକ ତାଙ୍କୁ ବିଭୋର କରେ । ଡାଲଖାଇ, ରସେରକେଲି ଗାଉଥିବା ବେପରୁଆ ପିଲାଟି ଅଣ୍ଡାଳି ଅଣ୍ଡାଳି ଚାଲେ ନିଜର ସବୁଦିନିଆ ରାସ୍ତାରେ । ସେ ସୁଖ ଭୋଗ ଜାଣେ ନାହିଁ । ନିଷ୍କପଟ ତାର ହୃଦୟ । ଅହଂକାର ତାକୁ ଛୁଉଁ ନାହିଁ । ସେ ନିଜକୁ ଜଙ୍ଗଲର ପ୍ରକୃତି ମଧ୍ୟରେ ଏକ ହୋଇଯାଇଛି । ସତ୍ୟ ତାର ଧର୍ମ ଓ କର୍ମ । ସେ ମହିମା ମହାପ୍ରଭୁଙ୍କ ଦ୍ୱାରା ପ୍ରେରିତ । ମହାନିତ୍ୟଖେଳର ଆଦି କବି । ବ୍ୟାକୁଳିତ ବିଦଗ୍ଧ କବି । ସଂସାରର ଦୁଃଖ କଷ୍ଟ, ବ୍ୟଥାବେଦନା, ଶୋଷଣ-କଷଣ, ପାପ ତାପ, ଖଚ ମିଛ ଆଦି ତା'ର ଜୀବନକୁ ବାଧେ । ଡାମ୍ଫୁଣ ପରି ଗଳିଯାଏ, ଛୁଞ୍ଚି ପରି ଫୁଟିଯାଏ ତା'ର ଦେହକୁ, କଣ୍ଟାପରି ଭୁକିଯାଏ ତା' ଗୋଡ଼କୁ ବିଚରା ନିରାଶ୍ରୟ, କିନ୍ତୁ ପିଲାକାଳୁ ଓ ଜନ୍ମବେଳୁ ସେ ଅନୁଭବୀ ଯେ ସେ ସତ୍ୟାଶ୍ରୟି । ସତ୍ୟ ସଚ୍ଚିଦାନନ୍ଦ ତାଙ୍କ ସମ୍ମୁଖରେ ଠିଆ ହୁଅନ୍ତି । ଆଶ୍ଚର୍ଯ୍ୟର କଥା, ଧର୍ମ ସତ୍ୟଧର୍ମ ତାଙ୍କୁ ଯାଚି ଦିଅନ୍ତି । କବି ପସରା ମୁଣ୍ଡରେ ଥୋଇ ଦିଅନ୍ତି । ସନ୍ଥକବି ବ୍ୟଥିତ ପ୍ରାଣର ସତ୍ୟର ସଙ୍ଗୀତ ଗାଇ ଚାଲନ୍ତି ମନକୁ ମନ । ଆଲୋକ ଆଡ଼କୁ ଆଗେଇ ଯାଇ ସତ୍ୟାମୃତ ପାନ କରନ୍ତି । ସେ ଏ ପରିସ୍ଥିତିରେ କଅଣ ମାଗିବେ ? ମର୍ତ୍ତ୍ୟର ରାଜସିଂହାସନ ନାଁ ସ୍ୱର୍ଗର ଇନ୍ଦ୍ରପଦ ? ନାଁ ଆଜିକାଲିର ରୋଟି, ମକାନ ଓ କପଡ଼ା, ଯାହାକି ବର୍ତ୍ତମାନର ଅବ୍ରାହ୍ମଣମାନେ

ମାଗୁଛନ୍ତି ? ସତ୍ୟ ଖୋଜୁଥିବା ସତ୍ୟପ୍ରିୟ ଭୀମଭୋଇର ଦୁଃସାହସ ! ସେ କହୁଛନ୍ତି; ସତ୍ୟର ତାରଣ, ସତ୍ୟର ମରଣ, ଏହି ଆଜ୍ଞା ମୋତେ ହେଉ ।

ତେବେ ଆମେ ? ଆମେ ଗୃହସ୍ଥ ଭୀମଭୋଇ ମଧ୍ୟ ଗୃହସ୍ଥ ଭକ୍ତ ଓ ସନ୍ଥକବି । ମହାଭୟଙ୍କର ବିଷୟର ଅରଣ୍ୟ ମଧ୍ୟରେ ଜାଗ୍ରତ ହୋଇ ସତ୍ୟକୁ ଲୋଡ଼ିବା । ଅନାସକ୍ତ ଭାବରେ କର୍ମ ସମ୍ପାଦିବା । କୁଟିଳ ନାଶ ଯାଉ, ହୃଦୟକୁ ନିର୍ମଳ କରିବା । ରଙ୍କ ଓ ରାଜା, ଦୁଷ୍ଟ ଓ ସନ୍ଥ, ଚଣ୍ଡାଳ ଓ ବ୍ରାହ୍ମଣ, ଜୀବ-ଅଜୀବ ସମସ୍ତଙ୍କ ପ୍ରତିଛବି ଆମ ନିର୍ମଳ ହୃଦୟରେ ପ୍ରତିଭାତ ହେବ । ବାଛ ବିଚାର ହେଉଛି ସଂକୀର୍ଣ୍ଣତା ହୃଦୟକୁ ଶରତକାଳୀନ ନିର୍ମଳ ଆକାଶ ପରି ବିସ୍ତୀର୍ଣ୍ଣ କରିଦେବା । ସତ୍ୟ ସବୁଠି ସର୍ବବ୍ୟାପୀ, ଜଣା ଅଜଣା, ଆବିଷ୍କୃତ ଅନାବିଷ୍କୃତ ହୋଇ ରହିଛି । ସମସ୍ତଙ୍କ ସହିତ ମିଳିମିଶିଯିବା । ସବୁ ଆପଣାର କରିବା, ନିଷ୍କାମ କର୍ମ ସମସ୍ତଙ୍କ କଲ୍ୟାଣ ପାଇଁ କରିଯିବା ।

'ଅନୁଭବେ, ସାଧୁ ସଙ୍ଗେ ଆଚରି ଧର୍ମକୁ ।' ସାଧୁସଙ୍ଗ କଲେ ନିଷ୍ଠେ ପ୍ରାପ୍ତ ହେବ ବ୍ରହ୍ମଅଙ୍ଗ। ଅନୁଭବ ନିତ୍ୟ ଚାଲିଥିବ । ତେବେ ଆମେ ଆଗେଇବା, ଆତ୍ମବୋଧ ଆସିବ ।

ସତ୍ୟଂ, ଜ୍ଞାନଂ, ଅନନ୍ତଂ, ବ୍ରହ୍ମ-ପିଣ୍ଡରୁ ବ୍ରହ୍ମାଣ୍ଡ, ବ୍ୟକ୍ତିରୁ ବିଶ୍ୱ, କୀଟରୁ ବ୍ରହ୍ମଯାଏଁ ଓ ସଚରାଚର ସମଗ୍ର ସଂସାରର ଜୀବନ ଜୀବିକା ଓ ସମ୍ପର୍କ ସତ୍ୟଦ୍ୱାରା ଉଦ୍‌ଭାସିତ ହେଉ । ଏହି ସାଧନା କରିବା ।

□□□

# ଅବ୍ୟକତ ବ୍ରହ୍ମବିନୁ ନ ଜାଣଇ କିଛି

ଆଶ୍ରିତର ଆଶ୍ରୟ କିଏ ? ଭକ୍ତର ଭକ୍ତି କାହାପ୍ରତି ? ତନମନ ଧ୍ୟାନର ଲୟ କେଉଁଠାରେ ? ଉପାସକର ଉପାସ୍ୟ ସେ କିଏ ? ଶରଣ ରକ୍ଷଣ କେଉଁଠି ? ସେବକର ସେବ୍ୟ ସେ କିଏ ? ମହିମାଧର୍ମ ବିଚାରରେ ଏ ସବୁର ଉତ୍ତର "ଅବ୍ୟକତ ବ୍ରହ୍ମ" ଯେ ଦେଶ ଓ କାଳ ନିର୍ବିଶେଷରେ ଅବ୍ୟକ୍ତ ହୋଇଛନ୍ତି, ଅଛନ୍ତି ଓ ରହିବେ ।

ଭକ୍ତର ଜଣାଣରେ ପ୍ରକାଶ ପାଇଛି "ଜଣାନନ୍ଦ ପ୍ରଭୁଙ୍କୁ ମୁଁ ଜଣାଣ କରୁଛି, ଅବ୍ୟକତ ବ୍ରହ୍ମବିନୁ ନ ଜାଣଇ କିଛି ।" କାରଣ "ଅଣାକାର ପ୍ରଭୁ ଉଦେ" ତେଣୁ

"ଆଜ୍ଞା ହେଉ ପ୍ରଭୁ ମୋତେ ଶ୍ରୀମୁଖରୁ ପଦେ"। ଏହାର ତାତ୍ପର୍ଯ୍ୟ ହେଉଛି, ସେ ପ୍ରଭୁଙ୍କୁ କେବଳ ଜଣାଣ କରି ଆନନ୍ଦ କରିହେବ। ସେ ସ୍ୱତଃ ଆନନ୍ଦମୟ। ସେ ସଚ୍ଚିଦାନନ୍ଦ। ତାଙ୍କ ପାଇଁ ଆଡ଼ମ୍ବରପୂର୍ଣ୍ଣ ମନ୍ତ୍ରତନ୍ତ୍ର ଆବଶ୍ୟକ ନାହିଁ। ବିଳାସପୂର୍ଣ୍ଣ ବ୍ୟୟବହୁଳ ଉପଚାର ଲୋଡ଼ା ନୁହେଁ। ବିମଳାନନ୍ଦରେ ହୃଦୟର ବ୍ୟାକୁଳ ଜଣାଣ ତାଙ୍କପାଇଁ ଆବଶ୍ୟକ। ସେଥିରେ ଭକ୍ତର ମଧ୍ୟ ଆନନ୍ଦ; କାରଣ ଅନ୍ତରର ଅନ୍ତରତମ ଆନନ୍ଦ ସେଥିରେ ପ୍ରକାଶ ପାଏ। ସେ ଅନ୍ତର୍ଯ୍ୟାମୀ। ତେଣୁ ଭକ୍ତ ଏକ ନିଷେଧାତ୍ମକ ବାକ୍ୟରେ କହୁଛନ୍ତି ଯେ ସେ ଅବ୍ୟକ୍ତ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ଜାଣନ୍ତି ନାହିଁ। ଅବ୍ୟକ୍ତ ବ୍ରହ୍ମହିଁ କେବଳ ଉପାସ୍ୟ। ଏପରି ସେବ୍ୟ ହେଉଛନ୍ତି "ଅଣାକାର ପ୍ରଭୁ।" ସେ "ଗୁରୁବ୍ରହ୍ମ ମହିମା ଅଲେଖ"। ସେହି ମହିମାମୟ ମହାପ୍ରଭୁ ଉଦୟ ହୋଇଛନ୍ତି। ଭୀମଭୋଇଙ୍କ ଭାଷାରେ "ଅଣାକାର ଅଣରୂପେ ପ୍ରକାଶ, କିଛି ନ ଦିଶନ୍ତି ଶୂନ୍ୟ ଆକାଶ।" ଏପରି ମହାଶୂନ୍ୟ ବାସୀ ମହାପ୍ରଭୁ କି ଆଜ୍ଞା ଦେବେ ? "ବର୍ଣ୍ଣ ଭେଦ ନାହିଁ କି ବର୍ଣ୍ଣ ବର୍ଣ୍ଣିବି ଅବର୍ଣ୍ଣ ସେ ପୁରୁଷ, ପାଦପାଣି ନାହିଁ କି ସେବା କରିବି ଭାବେ ହୁଅନ୍ତି ବଶ।" ସେହି ଅବ୍ୟକ୍ତ ବ୍ରହ୍ମଙ୍କ ନିକଟରେ ଶ୍ରୀମୁଖର ଆଜ୍ଞା ପାଇଁ ଅଳି କାହିଁକି ? ଯଥାର୍ଥତଃ ସେ "ଭାବେ ହୁଅନ୍ତି ବଶ" ଓ ଏହା ହେବ ଯଦି ଭକ୍ତ ଗୁରୁଆଜ୍ଞା ନିୟମନିଷ୍ଠ ହୁଅନ୍ତି। ସେଥିପାଇଁ ମହିମା ଧର୍ମରେ ନିଷ୍କାମ ଭକ୍ତି ସାଧନ ଉପରେ ଗୁରୁତ୍ୱ ଦିଆଯାଇଛି। ଭକ୍ତିର ଏକ ମୁଖ୍ୟ ଅଙ୍ଗଭାବରେ ସାଧନ ଭଜନର ନିଷ୍ଠା ପ୍ରକାଶିତ ହୋଇଛି।

ମହିମା ଧର୍ମାଲୋଚନା, ଭଜନ ଜଣାଣ ଆଦି ବିଭିନ୍ନ ରଚନା ଓ ସାଧନ ପଦ୍ଧତିରେ ଅବ୍ୟକ୍ତ ବ୍ରହ୍ମ ଏକମାତ୍ର ଉପାସ୍ୟ ଭାବରେ ପ୍ରତିପାଦିତ ତଥା ସାବ୍ୟସ୍ତ କରାଯାଇଛନ୍ତି। ମୂଳ କଥାଟି ହେଉଛି ଯେ ବ୍ରହ୍ମ ଅବାଙ୍ ମନସଗୋଚର। ବେଦର ଜ୍ଞାନ ପ୍ରଧାନ ଦିଗ ଓ ବେଦାନ୍ତର ବିଚାରଠାରୁ ଆରମ୍ଭ କରି ଏ ଯାବତ୍ ସେ ନିତ୍ୟ ଓ ଚିରସତ୍ୟ। ସେ ଅବିନାଶୀ। ତାଙ୍କ ବ୍ୟତୀତ ଅନ୍ୟ ସବୁ ଅନିତ୍ୟ, ଅସତ୍ୟ ଓ ବିନାଶଶୀଳ। ତାଙ୍କୁ ଏକମାତ୍ର ସ୍ରଷ୍ଟା ଭାବରେ ଗ୍ରହଣ କରାଯାଇ ସୃଷ୍ଟିର ନିରବିଚ୍ଛନ୍ନତା ହେତୁ ଆମ୍ଭମାନଙ୍କ ମନରେ ଏହି ଅଳୀକ ଓ ଭଙ୍ଗୁର ଦୃଶ୍ୟମାନ ଜଗତ୍ ମୋଦଗ୍ରସ୍ତ ଓ ମାୟା ପ୍ରପଞ୍ଚଯୁକ୍ତ ହୋଇଥିଲେ ସୁଦ୍ଧା ଆମ ଦୃଷ୍ଟିର ବିନ୍ଦୁ ସେଠାରେ କେନ୍ଦ୍ରୀଭୂତ ହୋଇଛି। ଅନାଦି ଆଦିମୂଳ ସତ୍ତ୍ୱେ ଆମେ ମୂଳାଧାରକୁ ଭୁଲିଯାଇ ବୃକ୍ଷର ପତ୍ର ପୁଷ୍ପ ଓ ଶାଖା ପ୍ରଶାଖାର ଶୋଭାରେ ବିମୋହିତ ହେଉଅଛୁଁ। ଅନେକ ସମୟରେ ମୂଳ ବୀଜର ଅସ୍ତିତ୍ୱ ପ୍ରତି ମୁଖ୍ୟ ଭାବରେ ସଚେତନତା ରହୁନାହିଁ। ବାଚନିକ ସ୍ୱୀକୃତି ଦେଉଥିଲେହେଁ କାର୍ଯ୍ୟ ଯାହା ଅପ୍ରଧାନ ଓ ଗୌଣ ତାହା ପ୍ରଧାନ ଓ ମୁଖ୍ୟ ହୋଇଯାଉଛି।

ବେଦାନ୍ତର ବିଚାରକୁ ମୁଖ୍ୟକରି ସେହି କ୍ରମରେ ଭକ୍ତ ସତ୍ୟ ତଥ୍ୟର ଅନାବିଳ ଓ ଅତୁଟ ପ୍ରକାଶ ମହିମାଧର୍ମ ସାହିତ୍ୟରେ ସ୍ଥାନ ପାଇଛି । "ପିଣ୍ଡ ବ୍ରହ୍ମାଣ୍ଡ ଦୁରିତ ଝଟତିରେ ନାଶ" କରିବାପାଇଁ କାତର କଣ୍ଠରେ ଭୀମଭକ୍ତ "ବ୍ରହ୍ମ ହୁଅ ପରକାଶ" ବୋଲି ଜଣାଣ କରିଛନ୍ତି । ସେହି ଜଣାଣରେ ଗାଇଛନ୍ତି-

"ଅବ୍ୟକତ ନିଃଶବଦ ନାହିଁ ବେଦ ଲେଶ,
କବିକୃତେ ବର୍ଣ୍ଣିବାକୁ ନ ସ୍ଫୁରେ ସାହସ" (ଭ୨୨।୩)

ଭକ୍ତକବି ଭୀମଙ୍କ ସାହସ ପାଉନାହିଁ । ମହିମା ସ୍ୱାମୀ ତାଙ୍କୁ କବି ପସରା ଦେଇଛନ୍ତି । ତଥାପି କବିକୃତି ବିଫଳ ହେଉଛି । କାରଣ ବ୍ରହ୍ମ ହେଉଛନ୍ତି ଅବ୍ୟକ୍ତ, ନିଃଶବ୍ଦ ଓ ନିର୍ବେଦ। ଅବ୍ୟକ୍ତ ବ୍ରହ୍ମଙ୍କୁ ପ୍ରକାଶ କରିବାକୁ ଯାଇ ଭୀମଭୋଇ ଲେଖିଛନ୍ତି,-

"ଅବ୍ୟକତ ବ୍ରହ୍ମ ଯେହି ରୂପ ରଚନାରେ ନାହିଁ,
କହେ ଭୀମ ଅରକ୍ଷିତ ଅନାମେ ରହିଲା ଭେଦ।" (ଭ୫।୬)

ତଥାପି ସେ ବ୍ରହ୍ମ ହେଉଛନ୍ତି କୃପାସାଗର। ଏହା ଭୀମଭୋଇଙ୍କ ନିମ୍ନୋକ୍ତ ଧାଡ଼ିରୁ ସ୍ପଷ୍ଟ ହୁଏ-

"ଅବ୍ୟକ୍ତ ହୋଇଅଛି, ବଚନ ନ କହୁଛି
କୃପାକଳ ଶରୀର ବହୁଛି ହେ ।" (ଭ ୬୫।୨)

ତେଣୁ ସେହି ବ୍ରହ୍ମ ମହିମା ଅଲେଖ ଚିହ୍ନ ନିରନ୍ତର ଧ୍ୟାନ କରିବାକୁ ବହୁ ପରାମର୍ଶ ଦିଅନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ହେଉଛି-

ଅବ୍ୟକତ ପୁରୁଷ ସେ ବ୍ୟକତ ନାହିଁ,
ଚିହ୍ନି ତାହାଙ୍କୁ ଧ୍ୟାୟି
ଦୁଲ୍ଲଭ କନ୍ମ ପିଣ୍ଡ ଥିବ କେତେ ଦିବସ । (୬୯।୨)

ସ୍ତୁତି ମାଧ୍ୟମରେ "ଗୁରୁଦେବ ସ୍ୱାମୀ ମହିମା ସାଗର"ଙ୍କୁ ଜଣାଇଛନ୍ତି-

"ଆଦି ଅନାଦି ଅରୂପ ଭଗବାନ ଅବ୍ୟକତ ଭାବଗ୍ରାହୀ।
ଅନନ୍ତ ପୁରୁଷ ଅତୁଳ ମହିମା ଅଣ ଶବଦର ଦେହୀ।"
(୩୨ ବୋଲି-୧୨)

ପୁନଶ୍ଚ- "ଅବ୍ୟକ୍ତ ପୁରୁଷ ବ୍ୟକତ ନ ହୁଏ
ବଚନ ଯହିଁରେ ନାହିଁ।
ଅଲେଖ ମଣ୍ଡଳ ପୁର ଭୁବନକୁ
ନିଃଶବଦ ବୋଲି କହି।" (୮୬ ବୋଲି-୪)

ପରମ ପୂଜ୍ୟ ବିଶ୍ୱନାଥ ବାବା ମହୋଦୟ ଭକ୍ତମାନଙ୍କ କଣ୍ଠରେ ପ୍ରାତଃ ବ୍ରାହ୍ମ ଶରଣ ଜ୍ଞାପନ ଅବସରରେ ସ୍ତୁତି ରଚନା କରିଛନ୍ତି, "ଶରଣ ପଶୁଛି ସଦା ନିତ୍ୟ ବାରମ୍ବାର।" କିଏ ସେ "ଜ୍ଞାନଭକ୍ତି ଦାତା ଗୁରୁ" ସେ ଶରଣ ରକ୍ଷଣ କର୍ତ୍ତା। ସେ ହେଉଛନ୍ତି, "ହେ ମହିମା ଅବ୍ୟକତ ଅଖିଳ ଈଶ୍ୱର।" ଆହୁରି ମଧ୍ୟ ସାଧୁ ଗୀତିରେ ରୂପାୟିତ ହୋଇଛି-

"ଅବ୍ୟକତ ବ୍ରହ୍ମ ହୋଇ ଅବତୀର୍ଣ୍ଣ ଅବନୀରେ
ଆସି ବିଜେ କଲ,
ଅବଧୂତ ବେଶେ ସ୍ଥାପି ସତ୍ୟ ଧର୍ମ ଅଭିଜ୍ଞ
ଭକ୍ତଙ୍କୁ ଉଦ୍ଧରିଲ।"

ନାରଣ ଚଉତିଶା (୫୮)ରେ ପରଂବ୍ରହ୍ମଙ୍କ ସ୍ୱରୂପ ଓ ଆବିର୍ଭାବ ସମ୍ବନ୍ଧରେ କୁହାଯାଇଛି-

"ଆଦି ଅବଧୂତ ଅନନ୍ତ ଅବ୍ୟକ୍ତ ଅଣାକାର ଶୂନ୍ୟବାସୀ,
ଅଖିଳ ନିମନ୍ତେ ଅବତାର ମର୍ତ୍ତ୍ୟେ ନିଷ୍କାମରେ ବ୍ରହ୍ମରାଶି ଯେ
ଅଣସାଧନାରେ ସିଦ୍ଧି
ଆଣି ସ୍ଥାପିଲେ ଯୁଗ ସମାଧି ଯେ।"

ପୁନଶ୍ଚ-ଚଉତିଶା (୬୦)ରେ ସେ ଗାଇଛନ୍ତି-

"ଜୟ ଜୟ କରତା ଶ୍ରୀବକଳବିହାରୀ
ବୁଦ୍ଧି ରତନରେ ଜିଣି ଚତୁର୍ଦ୍ଦଶପୁରୀ
ଅବ୍ୟକତ ଯେ,
ମହିମା ତିନି ଭୁବନେ ଖ୍ୟାତ ଯେ।"

'ଶୂନ୍ୟବାସୀ ବ୍ରହ୍ମରାଶି' ହେଉଛନ୍ତି ଆଦି, ଅବଧୂତ, ବକଳ ବିହାରୀ କଳି ଯୁଗର ସମାଧି କରି ସତ୍ୟ ପ୍ରକାଶର ଶୁଭାରମ୍ଭ କରି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତିନି ଭୁବନ ଓ ଚତୁର୍ଦ୍ଦଶପୁର ପାଇଁ ଧର୍ମସ୍ତମ୍ଭ ରଖିଛନ୍ତି। କିନ୍ତୁ ସେ ଅବ୍ୟକ୍ତ ରହିଛନ୍ତି, କାରଣ ସେ ଅନନ୍ତ, ଅଣାକାର, ଅରୂପ, ଅଦ୍ୱିତୀୟ, ଅଣସାଧନାରେ ସିଦ୍ଧ ହୋଇଛନ୍ତି। ଏହାହିଁ ତାଙ୍କ ଅଲୌକିକତା। ଭକ୍ତକବି ଜୟକୃଷ୍ଣ ମଧ୍ୟ ପ୍ରାତଃ ଅବକାଶରେ 'ଉଠ ହେ ଅବ୍ୟକତ, ଅଚ୍ୟୁତ, ଅକଳ୍ପିତ, ଉଠ, ଅଲେଖ ଅଣାକାର ହେ' ସାଧାରଣ ଦୃଷ୍ଟିରୁ ଏକ ଅସମ୍ଭବ ଓ ଅପ୍ରତ୍ୟୟାତ୍ମକ ସମ୍ଭାବନାକୁ ଭକ୍ତଙ୍କ ସତ୍ୟସିଦ୍ଧ ବିଶ୍ୱାସ ଭାବରେ ସ୍ଥାପନା କରିଛନ୍ତି।

ଏହିପରି ବହୁ ଦୃଷ୍ଟାନ୍ତ ରହିଛି। ମହିମହିମାମୟ ମହିମା ମହାପ୍ରଭୁ ବେଦାନ୍ତର ପ୍ରତିଧ୍ୱନି ଭାବରେ ଆଜିର ବିଜ୍ଞାନ ଆଧାରିତ ଜନସମାଜ ପାଇଁ ସତ୍ୟ,

ଶାନ୍ତି, ଦୟା ଓ କ୍ଷମାର ଆଧାର ହୋଇ ରହିଛନ୍ତି । ଏକ ସମାଜ ଏକ ବିଶ୍ୱ ଓ ଏକ ମାନବଧର୍ମ ହେଉଛି ସମସ୍ତ ଧ୍ୟାନ ଧାରଣା ଓ ଧ୍ୟେୟ । ଏହା ସନାତନ ଆର୍ଯ୍ୟ ଧର୍ମ । ଏହି ଧର୍ମଧାରାରେ ଅବ୍ୟକ୍ତ ଭାବଟି ସର୍ବତ୍ର ରହିଛି । 'ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି' ଏହା ବୈଷ୍ଣବୀୟ ଚେତନାର ଅନ୍ୟତମ ଉଦାହରଣ । 'ଯୁଗେ ଯୁଗେ ସମ୍ଭବାମି' ବ୍ୟକ୍ତ ହୁଅନ୍ତି ଅବ୍ୟକ୍ତ ଚେତନାରୁ ପ୍ରେମମୟ ପରିପ୍ରକାଶ ମାଧ୍ୟମରେ । ସେଥିପାଇଁ ସତର୍କ କରି ଦିଆଯାଇଛି-

ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟଃ
ପରଂ ଭାବମଜାନନ୍ତଃ, ମମାବ୍ୟୟମନୁତ୍ତମମ୍ ।
(ଗୀତା ୭।୨୪)

ମନ୍ଦବୁଦ୍ଧି ଲୋକମାନେ ଆମ୍ଭର ଅବିନାଶୀ ସର୍ବୋତ୍କୃଷ୍ଟ ଅବ୍ୟକ୍ତ ସ୍ୱରୂପକୁ ନ ଜାଣି ଆମକୁ ରୂପଧାରୀ ବୋଲି ମଣନ୍ତି । ଏହି ଅବ୍ୟକ୍ତ ଚେତନା ହେଉଛି ବିଶ୍ୱବ୍ୟାପୀ ଧର୍ମଧାରାର ଅନ୍ତଃସଲୀଳା ଫଲ୍‌ଗୁ ସଦୃଶ । ଏହି ପରିପ୍ରେକ୍ଷୀରେ ମହିମାଧର୍ମ ସ୍ୱକୀୟ ସ୍ୱାତନ୍ତ୍ର୍ୟ ରକ୍ଷା କରିପାରିଛି ଏକ ଜ୍ଞାନଆଧାରିତ, ଭକ୍ତି ପ୍ରଧାନ ଓ ସାଧନା ବଳିଷ୍ଠ ଆନ୍ଦୋଳନ ଭାବରେ । ଏହା ଅପେକ୍ଷା କରି ନାହିଁ ଏହାର ଧାରକ ପାଇଁ ଗୋଟିଏ ଶିକ୍ଷିତ ସମାଜକୁ । ବରଂ ସେ ଦୃଷ୍ଟିରୁ ଅପାଙ୍‌କ୍ତେୟ ଜନସାଧାରଣଙ୍କ ହୃଦୟର ଗୁପ୍ତ ଚରିତ୍ରବତ୍ତା ଓ ଏକନିଷ୍ଠତାର ଉର୍ବର ମୃତ୍ତିକାରେ ବେଦାନ୍ତିକ ଜ୍ଞାନବୀଜ ବପନ କରାଯାଇଛି । ଅବହେଳିତର ପ୍ରାଣରେ ଆଶାର ଦୀପଶିଖା ଜଳି ଉଠିଛି । ଆଧ୍ୟାତ୍ମିକ ଆଶ୍ୱାସନା ଓ ଭରସା ସେମାନଙ୍କୁ ପ୍ରାଣ ପ୍ରଚୁର କରିଦେଇଛି । ଅବ୍ୟକ୍ତ ଓ ଅବ୍ୟୟ ଚେତନାକୁ ସର୍ବଭୂତରେ ସାକ୍ଷୀ ସ୍ୱରୂପ ପ୍ରତ୍ୟକ୍ଷୀଭୂତ କରିବାର ସମ୍ଭାବନାର ଉଷ୍ଣପ୍ରସବଣରସ୍ରୋତ ପରି ପ୍ରଧାବିତ ହୋଇଛି ।

'ଅବ୍ୟକ୍ତ' ବ୍ୟକ୍ତ ହୋଇ ପୁଣି ଅବ୍ୟକ୍ତ ହେବା ଗୁଣ ଅଧିକେ ସମସ୍ତଙ୍କର ଧାରଣା ହେଲେହେଁ ମହିମା ଧର୍ମ ଆଣି ଦେଇଛି ଏକ ଅଣଅବ୍ୟକ୍ତ ଚେତନା । ବ୍ୟକ୍ତ-ଅବ୍ୟକ୍ତରୁ ଅତୀତ ଅସ୍ତିସୂଚକ ଜ୍ଞାନ ସ୍ରୋତ । ଏହାର ଗୋଟିଏ ଉଦାହରଣ ନେବା । ମହାଦାର୍ଶନିକ ବିଶ୍ୱନାଥ ବାବାଙ୍କ ଗୃହସ୍ଥାଶ୍ରମ ଶୁଭକର୍ମ ବିଧାନରେ ଦେଖିବା -

ପରମ ଅବ୍ୟକ୍ତ ପରମ ବ୍ରହ୍ମ
ବ୍ୟକ୍ତ ଅବ୍ୟକ୍ତରୁ ଅଟନ୍ତି ଭିନ୍ନ ।
ଜ୍ୟୋତି ସଂଜ୍ୟୋତିର ସର୍ବ ଊର୍ଦ୍ଧ୍ୱରେ
ବିରାଜିତ ଛନ୍ତି ମହାଶୂନ୍ୟରେ ଯେ,

ତହୁଁ ଜ୍ୟୋତି କ୍ଷରୁଛନ୍ତି
ଅଧଃ ଊର୍ଦ୍ଧ୍ୱ ମଧ୍ୟ ସକଳ ପୁରରେ
ଆତ୍ମାରୂପେ ବ୍ୟାପିଛନ୍ତି ସେ ।

ପୁନଶ୍ଚ-ମହିମା ବାଲ୍ୟଲୀଳା ଗୀତରେ ଧ୍ୱନିତ ହୁଏ-

ପରମ ଅବ୍ୟକ୍ତ ଅଟନ୍ତି ବ୍ୟକ୍ତାବ୍ୟକ୍ତରୁ ଭିନ୍ନ,
ତାହାଙ୍କ ଅଦ୍ଭୁତ ମହିମା କରି ନୋହେ ବର୍ଣ୍ଣନ ।

କେବଳ ଭଜନ ପଠର ବିଷୟ ନୁହେଁ । ପ୍ରତ୍ୟେକ ଆଶ୍ରିତ ଭକ୍ତ ବ୍ୟକ୍ତ ଅବ୍ୟକ୍ତରୁ ଭିନ୍ନ ପରମ ଅବ୍ୟକ୍ତ ପରମବ୍ରହ୍ମଙ୍କଠାରେ ନିଜକୁ ସମର୍ପଣ କରନ୍ତି ନୈମିତ୍ତିକ ଶରଣଦର୍ଶନ ବେଳରେ ତଥା ତୂରୀୟ୍ତୀତ ଚେତନାର ସ୍ତର ଅନୁସାରେ ପ୍ରତିଟି ମୁହୂର୍ତ୍ତରେ । ଏହି ବୈଦାନ୍ତିକ ସିଦ୍ଧାନ୍ତ ଆଜିର ଜଡ଼ବାଦୀ ସଂସାରରେ ଏକ ମହାନ୍ ପ୍ରୟୋଗ ।

କେନ ଉପନିଷଦ୍‌ର ୩ୟ ଶ୍ଳୋକଟି ହେଉଛି-

ନତତ୍ର ଚକ୍ଷୁର୍ଗଛତି
ନ ବାଗ୍ ର୍ଗଛତି ନୋ ମନୋ
ନ ବିଦ୍ମୋ ନ ବିଜାନୀମୋ
ଯଥୈବିଦ୍‌ନୁଶିଷ୍ୟାତ୍
ଅନ୍ୟଦେବ ତଦ୍ ବିଦିତା
ଦଥୋ ଅବିଦିତାଦଧି
ଇତି ଶୁଶ୍ରୁମ ପୂର୍ବେଷାଂ
ଯେ ନସ୍ତଂ ବ୍ୟାଚ ଚକ୍ଷିରେ ।

ପରାତ୍‌ପର ପରମାତ୍ମା ହେଉଛନ୍ତି ଚକ୍ଷୁ, ବାକ୍ୟ, ମନର ଅଗୋଚର । ସେ ଆମ୍ଭମାନଙ୍କ ଜ୍ଞାନର ଅଗୋଚର । ସେ ପ୍ରଭୁ ବ୍ୟକ୍ତ ସ୍ୱରୂପ ସମସ୍ତଙ୍କଠାରୁ ଭିନ୍ନ । ସେ ଅବ୍ୟକ୍ତଠାରୁ ଭିନ୍ନ । ଅର୍ଥାତ୍ ପରବ୍ରହ୍ମପରମାତ୍ମା ଦୃଶ୍ୟ, ଅଦୃଶ୍ୟ, ଜ୍ଞାତ, ଅଜ୍ଞାତ ତଥା ବ୍ୟକ୍ତ, ଅବ୍ୟକ୍ତଠାରୁ ଭିନ୍ନ । ସମସ୍ତର ଊର୍ଦ୍ଧ୍ୱରେ ପରଂମାତ୍ମା, ଅତଏବ ସେହି ନ୍ୟାୟ୍ରେ ବ୍ୟକ୍ତାବ୍ୟକ୍ତରୁ ଭିନ୍ନ ପରମ ଅବ୍ୟକ୍ତ ପରମବ୍ରହ୍ମ କ୍ଷର ଅକ୍ଷରରୁ ଅତୀତ ଅଟନ୍ତି । ସେ ସମ୍ପର୍କରେ ଭଗବତ୍ ଗୀତା (୧୫ଶ ଅଧ୍ୟାୟ) ଘୋଷଣା କରନ୍ତି-

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥ ୧୬
ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ୍ ଇଶ୍ୱର ॥ ୧୬

ଯସ୍ମାତ୍ କ୍ଷରମତୀତୋଽହମ୍ କ୍ଷରାଦପି ଚୋତ୍ତମଃ
ଅତୋଽସ୍ମିଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।। ୧୮

ସମସ୍ତ ଭୂତ ହେଉଛନ୍ତି କ୍ଷର ଓ ଏସବୁ ସତତ ବିନାଶଶୀଳ । କିନ୍ତୁ କୂଟସ୍ଥ ଚୈତନ୍ୟ ହେଉଛନ୍ତି ଅକ୍ଷର ଓ ସେ ଅବ୍ୟୟ, ନିତ୍ୟସ୍ୱରୂପରେ ଅବସ୍ଥିତ । ଏତଦ୍‌ଭିନ୍ନ ଆଉ ଜଣେ ଉତ୍ତମ ପୁରୁଷ ଅଛନ୍ତି । ସେ ସୃଷ୍ଟି ପାଳନ ଓ ସଂହାର କରନ୍ତି । ସେ ପୁରୁଷୋତ୍ତମ ଓ ତାଙ୍କୁ ପରମାତ୍ମା କୁହାଯାଏ । ସେ କ୍ଷର ଓ ଅକ୍ଷରରୁ ଅତୀତ । ଶ୍ୱେତାଶ୍ୱେତର ଉପନିଷଦରେ ମଧ୍ୟ ଘୋଷଣା କରାଯାଇଛି ଯେ ଏକ, ଅଦ୍ୱିତୀୟ ପରମ ପୁରୁଷ ପରମାତ୍ମାଙ୍କଠାରୁ ଉତ୍କୃଷ୍ଟ ନିତ୍ୟ ପୁରୁଷ ଆଉ କେହି ନାହିଁ । ସେ ଜଗତର ଅତି ସୂକ୍ଷ୍ମ, ସର୍ବପ୍ରଧାନ ଏବଂ ବୃକ୍ଷତୁଲ୍ୟ ନିଶ୍ଚଳ, ଅଥଚ ସ୍ୱୀୟ ମହିମାବଳରେ ସର୍ବତ୍ର ପରିବ୍ୟାପ୍ତ ଅଛନ୍ତି । ସର୍ବତ୍ର ସେ ପୂର୍ଣ୍ଣ ରୂପରେ ଅବସ୍ଥିତ । "ଆକାଶବତ୍ ସର୍ବଗତଶ୍ଚ ନିତ୍ୟଃ" ଓ "ନିତ୍ୟଃ ସର୍ବଗତଃ ସ୍ଥାଣୁଃ" ।

ଏଥିରୁ ଏହା ସ୍ପଷ୍ଟ ହୁଏ ଯେ ମହିମାମୟ ମହାବ୍ରହ୍ମ ମହିମା ସ୍ୱାମୀ "ରୂପେ ନୁହେଁ ଦୃଶ୍ୟ, ଅରୂପ ଅଦୃଶ୍ୟ" ହେଲେହେଁ ସେ ଅଣରୂପରେ ସର୍ବଦା ପ୍ରକାଶମାନ । ସେ ଶବ୍ଦ ଅଶବ୍ଦର ଅତୀତ 'ଅଣଶବଦେ ପ୍ରକାଶ ଅମନଦାଣ୍ଡେ ।' ଭୀମଭୋଇ ଭଜନରେ ଲେଖିଛନ୍ତି, "ମହାଶୂନ୍ୟରୁ ବାହାର ଅବନା ଅଣଅକ୍ଷର" ଅନ୍ୟ ଏକ ଲେଖାରେ ସେ ହେଉଛନ୍ତି-

"ଅକ୍ଷରେ ନ ବସେ ଅଣଅକ୍ଷରୀ
ଧରିବି ବୋଇଲେ ନୁହଇ ଧରି
ସକଳ ଭୂତେ ବିକୟେ କରି
ଜୀବେ ଅଜୀବେ ରହିଅଛ ପୂରି ।"

ଏଥିରୁ ଏହା ସ୍ପଷ୍ଟ ଯେ ଅବ୍ୟକ୍ତ ଓ ଅକ୍ଷର ଶବ୍ଦ ଦୁଇଟି ଯଥାକ୍ରମେ ବ୍ୟକ୍ତ ଓ କ୍ଷର ଶବ୍ଦଦ୍ୱୟର ବିପରୀତ । ବ୍ୟକ୍ତ ଓ କ୍ଷରର ଅଭାବରେ ଯଥାକ୍ରମେ ଅବ୍ୟକ୍ତ ଓ ଅକ୍ଷର ହୋଇପାରେ । ଯଦି ବ୍ୟକ୍ତ ଓ କ୍ଷର ଶବ୍ଦ ଦୁଇଟି ଅସ୍ତିସୂଚକ ବୋଲି ଧରାଯାଏ, ତେବେ ଅବ୍ୟକ୍ତ ଓ ଅକ୍ଷର ଶବ୍ଦ ଦୁଇଟି ନାସ୍ତିସୂଚକ ହେବ । ତେଣୁ ଅବ୍ୟକ୍ତ ଓ ଅକ୍ଷର ଶବ୍ଦ ଯେଉଁ ନିର୍ଗୁଣ ବ୍ରହ୍ମଙ୍କର ବିଶେଷଣ ହେବ ସେ ପରମ ଅବ୍ୟକ୍ତ । ପରମବ୍ରହ୍ମ ମହାମହିମାମୟ ମହିମା ସ୍ୱାମୀ ଭାବରେ ସ୍ୱ ମହିମି ପ୍ରତିଷ୍ଠିତ ସର୍ବମୟ ଓ ସର୍ବାତୀତ ହେବେ କିପରି ? ଭୀମ ଭୋଇ ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ତାଙ୍କ ଅସ୍ତିସୂଚକ ସ୍ୱରୂପକୁ ଅଣାକାର, ଅଣରୂପ, ଅଣଲେଖ, ଅଣଶବଦ, ଅଣହିଂସା, ଅଣବିକାର ଆଦି ଭାବରେ ଅଣବର୍ଣ୍ଣନାର ବର୍ଣ୍ଣନା କରିଛନ୍ତି । ସେ ମଧ୍ୟ ଅବ୍ୟକ୍ତ ଶିରୋମଣି ଓ ଅବ୍ୟକ୍ତିମଣି ବୋଲି କହିଛନ୍ତି ।

ଯାହାର ରୋମମୂଳ   ମାଳ ମାଳ ମେଦିନୀ
ବର୍ଣ୍ଣିନାହାନ୍ତି ଯାକୁ   ସାରଳା ସିଦ୍ଧମୁନି ।
ବ୍ରହ୍ମାଣ୍ଡ କରତା ସେ   ଅବ୍ୟକ୍ତ ଶିରୋମଣି
ଯା ଗର୍ଭେ ପୂରିଅଛି   ସପ୍ତଦ୍ୱୀପା ଧରଣୀ (ଭ: ୧୬୯ ।୪)

ପୁନଶ୍ଚ- ଅନାମିକ ଅବ୍ୟକତ ମଣି
କେହି ନ ପାରୁ ଅଛନ୍ତି କାଣି,
ସେହି ଜୀବ ପରମର ଧ୍ୱନି ।
ଘନରୂପେ ଘୋଟିଛନ୍ତି ଧରଣୀ ଆକାଶ (ଭ: ୧୩୪ ।୨)

ବିଶ୍ୱନାଥ ବାବା ମହୋଦୟ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦୀ ବିଶ୍ଳେଷଣର ପରମ ଓ ଚରମ ସଙ୍କେତ ଭାବରେ କ୍ଷରାକ୍ଷରାତୀତ ଓ ବ୍ୟକ୍ତାବ୍ୟକ୍ତରୁ ଭିନ୍ନ ବୋଲି କହିଛନ୍ତି । ରାମାନନ୍ଦ ଭଜନମାଳାର ୫୬ ତମ ଭଜନରେ ଅକ୍ଷରାତୀତର ଉଲ୍ଲେଖ ରହିଛି-

"ପ୍ରଣମ୍ୟ ଅବ୍ୟୟ ଅଦ୍ୱୈତ ସ୍ୱୟଂଭୂତ
ତ୍ରିଗୁଣାତୀତ ଅବ୍ୟକ୍ତ
ଅଶବ୍ଦ ଅକ୍ଷରାତୀତ ଅକଳ୍ପିତ ଅନାଦିତ ।
ଅନହତ ସାରସ୍ୱତ ପରଂତତ୍ତ୍ୱ ପୁରାତନ ॥"

ଯେଉଁ ଅବ୍ୟକ୍ତ ବ୍ରହ୍ମ ସର୍ବଭୂତରେ ସାକ୍ଷୀଭାବରେ ସର୍ବଦା ବ୍ୟକ୍ତ ଅଛନ୍ତି ସେହି ବ୍ୟକ୍ତାବ୍ୟକ୍ତରୁ ଭିନ୍ନ ପରମ ଅବ୍ୟୟ ପରଂବ୍ରହ୍ମହିଁ ଆମ୍ଭମାନଙ୍କର ଏକମାତ୍ର ଧ୍ୟେୟ ।

□□□

# କେବଳ ଅନୁଭବୀଙ୍କ ପାଇଁ

ପ୍ରଥମ ଛଅଗୋଟି ଅକ୍ଷର 'ଅରୂପ ଶରୀର' ଅସ୍ତିବାଚକ ଓ ଦ୍ୱିତୀୟ ଛଅ ଅକ୍ଷର 'ରୂପ ନାହିଁ ଯାର' ନାସ୍ତିବାଚକ ତଥା ଶେଷ ଆଠ ଅକ୍ଷର 'କେମନ୍ତେ ଚିହ୍ନିବି ମୁହିଁ' ପ୍ରଶ୍ନବାଚୀ । ଏହାର ଦ୍ୱିତୀୟ ଧାଡ଼ି, ପ୍ରଥମ ବାର ଅକ୍ଷର 'ଦୟାକରି ମୋତେ ଦରଶନ ଦିଅ' ହେଉଛି ସ୍ତୁତି ଯାହାଙ୍କଠାରେ ଆଠ ଅକ୍ଷରରେ ପ୍ରକାଶିତ ସେ, 'ଅନ୍ତର୍ଯ୍ୟାମୀ ଶୂନ୍ୟଦେହୀ'। ସେ ଶୂନ୍ୟ ଦେବୀ, ଦେହ ଶୂନ୍ୟ ହୋଇ ଅନ୍ତର ମଧ୍ୟରେ 'ଅନ୍ତର୍ଯ୍ୟାମୀ' ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତ, ସମୟ ସକାଳ ଚାରିଟା ବେଳେ, ଏହା ପୂର୍ବରୁ ସ୍ନାନଶୌଚ ଓ ଶରଣ ଦର୍ଶନ ସରିଛି । ସାୟଂ ଶରଣ ଦର୍ଶନ ପରେ

ଛୋଟ ପିଲାଟି ବାପାଙ୍କୁ ଭଜନ ଶୁଣାଉଥିବାବେଳେ ଏହି ପରିଣତ ବୟସରେ ଆମ ଗୃହୀଜୀବନର ମା ସ୍ତୁତିଚିନ୍ତାମଣି ମୋତେ ଶୁଣାନ୍ତି। ବୋଲି ବୋଲି ସଡ଼ଚାଳିଶ ବୋଲି ତାଙ୍କ କଣ୍ଠରେ ରହିଯାଇଛି। ସେହି ଭାବଟିକୁ ଭୀମଭୋଇ ବ୍ୟକ୍ତ କରିଛନ୍ତି, 'ଶବଦସ୍ୱରୂପ ହୋଇ ଅଣାରୂପ ଆତ୍ମଭୂତ ପ୍ରାୟହୋଇ', ଆଶାବାଦର ସ୍ୱର ଝଙ୍କୃତ ହୁଏ ଯେତେବେଳେ ଭକ୍ତ ଭୀମ ସ୍ପଷ୍ଟ କରିଦିଅନ୍ତି, 'ସେ ଅଜାତି, ସେ ଆଦ୍ୟ, ଦୁଷ୍ଟ ଦୁରାଚାରେ ଦୈତ୍ୟ ଦାନବରେ ସକଳ ଘଟେ ବିଶ୍ରାମ, ପୁନଶ୍ଚ ସେ ସଚ୍ଛସାଗର ସାଧୁଜନ ପଣ୍ଡିତ କବିତ୍ୱ ହୃଦୟରେ ଥାଇ'।

ଏହି ମାନସିକତା ଓ ହୃଦୟବତ୍ତାକୁ ଆପଣାର କରି ଯାତ୍ରାକରେ ସାଢ଼େ ଚାରିଟା ବେଳେ ପ୍ରାତଃ ଭ୍ରମଣରେ। ବାମପାଖର ସବୁଦିନିଆ ଆମ୍ବ ଗଛଟି ବାତ୍ୟା ଯୋଗୁଁ ଆମ୍ବଶୂନ୍ୟ ହୋଇ ସୁଖା ପତ୍ରଗୁଡ଼ିକୁ ସତେ ଯେପରି ମୋ ମୁଣ୍ଡ ଆଡ଼କୁ ନୁଆଁଇ ଦିଏ। ମହାଜାଗତିକ ଶକ୍ତି ଝରି ପଡୁଥାଏ। କୃତଜ୍ଞତାର ଉତ୍ତର ଆସୁଥିଲେ ହେଁ ଚଲା ପାଦ ବାଦ କରେ। ଡାଏଁ, ବାଏଁ ଓ ପୁଣି ଡାଏଁ ଏପରି ଲାଗ ଲାଗ ତିନିଥର ମୋଡ଼ିବାକୁ ପଡ଼େ। ମନେ ପଡ଼େ ମଝି ମୋଡ଼ରେ ଏକାଙ୍କିକାର ଅନନ୍ୟ ସ୍ରଷ୍ଟା, ପଡ଼ୋଶୀ, ମୋଠାରୁ 'ଭାଇସ୍' ତକ ଛଡ଼ାଇନେଇ ମୋତେ 'ପ୍ରିନସପାଲ' କରିଥିବା ବ୍ୟକ୍ତି ପ୍ରାଣବନ୍ଧୁଙ୍କ ସହିତ ଲଢ଼ାଇ ଟାଣ ଖରାବେଳେ। ସେ ଏକାକୀ ତାଙ୍କ ଘରକୁ ଯିବେ ବା ମୁଁ ତାଙ୍କୁ ନେଇ ଛାଡ଼ି ଆସିବି। ରାଜ୍ୟ ଶିକ୍ଷା ପ୍ରତିଷ୍ଠାନରେ ସେ ଟଳି ଯାଉଥିଲେ, ଏଥର ସେ ଅଟଳ ରହିଗଲେ। ଦୁଃଖ କରିବାର ଅବସର ମିଳେ ନାହିଁ, କାରଣ ମୋ ଦୃଷ୍ଟିପଡ଼େ ଏ ପାଖର ଚାକୁଣ୍ଡା ଗଛଉପରେ ରାସ୍ତାକୁ ମାଡ଼ି ପଣସ ଆଡ଼କୁ ଡାଳ ବଢ଼େଇ ଦେଉଛି। ସ୍କୁଲ ହତାର ପଣସ ଗଛ ନିଜ ପତ୍ର ଓ ଡାଳରେ ପାଠ ଲେଖି ସତେ ଯେପରି ଚାକୁଣ୍ଡା ଆଡ଼କୁ ବଢ଼ାଇ ନେଉଛି। ଫଳରେ ମୁଣ୍ଡ ଉପରେ ଆସ୍ତରଣଟିଏ ହେଲାଭଳି ଲାଗେ। ବିଡ଼ିଏର ତିନିକୋଣିଆ ପାର୍କ, ପକ୍କା ରାସ୍ତାଟି ଘେରିଛି। କେତେଥର ସେଠି ବିଶେଷ କରି ସକାଳେ ବୁଲିଛି। ଶୀତଳ ସମୀରଣ ମୋ ପାଇଁ ଶାନ୍ତି ଆଣି ଦେଇଛି। 'କରାଟେ' ଚାଲିଲା, ପାଦଚକଟାରେ ଘାସତକ ମରିଗଲା। ମହାବାତ୍ୟା ଯୋଗୁଁ ମହା ମହା ଦ୍ରୁମ ଧରାଶାୟୀ ହୋଇଗଲେ। ଆମ ଏହି ପାର୍କର ଚାରିପଟ ବାଡ଼ ମଧ୍ୟ ଶୋଇଗଲା। ଲୋଭୀ ଲୋକଙ୍କ ହାବୁଡ଼ରେ ପଡ଼ି ମୂଳରୁ ଅଗ ପର୍ଯ୍ୟନ୍ତ ସବୁ ଉଜୁଡ଼ି ଗଲା। ଚାକୁଣ୍ଡାର ବାସ ବିହୀନ, ଆଖିକୁ ଚହଟ ଚିକ୍କଣ ଫୁଲ ରାସ୍ତା ଉପରେ ଜମିଲା ନାହିଁ। ବର୍ତ୍ତମାନ ଟ୍ରଲି ଓ ରିକ୍ସାର ମେଳା। ବଳକା ରିକ୍ସାଗୁଡ଼ିକ ରାସ୍ତାକୁ ପଛକରି ମେଳା ଆଡ଼କୁ ମୁହାଁଇଥାନ୍ତି। ତଥାପି ରିକ୍ସାର ଭିଡ଼, କିଛିକିଛି ଛୋଟ କାଟିଆ ଚଟ୍‌ଚଟ୍ ଠିଆଠିଆ ଖିଆ। ଉପାୟ୍ ନପାଇ କେତୋଟି ରିକ୍ସା ନିଜର ପଛଚକା ଦୁଇଟିକୁ ରାସ୍ତା ଉପରକୁ

ଭିଡ଼ିଧରି ସ୍କୁଲ ହତା ଓ ରାସ୍ତା ମଝିରେ ଗଭୀର ନାଳ ଆରପଟେ ଆଗ ଚକା ଥୋଇ ସୁରକ୍ଷିତ ରହିଛନ୍ତି । ହଁ, ସେହି ଟ୍ରଲି ଓ ରିକ୍ସାର ମେଳା ଚାଲିଛି, ରାତି ନପାହୁ, ରିକ୍ସାରୋହୀଙ୍କ ଭିଡ଼ ନ ଜମୁ ତଥା ଗହମ, ସିମେଂଟ ଡାଲି ବସ୍ତାର ବୋଝ ଧଡ଼ଧାଡ଼ ଟ୍ରଲି ଉପରେ ନପଡୁ, ଏଥିପାଇଁ ବୋଧହୁଏ ମୋ ସହିତ ତାଳମେଳ ରଖି ପ୍ରାର୍ଥନା କରୁଥାନ୍ତି ।

ଟିପ ଭିଡ଼ି ଭିଡ଼ି ଚାଲୁଥାଏ । ଗୋଖୋଳ, ଗାତ ଓ ବଡ଼ ବଡ଼ ପୋଖରୀ ପରି ବେଳେ ବେଳେ ହ୍ରଦ ଭଳି ମଣ୍ଡନ କରୁଥାଏ । ବେପରୁଆ ପଥିକକୁ ସାବଧାନ କରିଦିଏ ସେ ଯଥା ସକାଳ ସାହାନ୍ତାରେ ଟହଳିନଥାଏ ରାସ୍ତା ତେଣୁ ମାୟାମୁକ୍ତ ହୋଇ ବେପରୁଆ ବାଟ ଛାଡ଼ିନେଉଥାଏ । ମୁଁ ତ ମାୟାଜଡ଼ିତ, ତଥାପି ନାଗରିକ ହୋଇଥିବାରୁ ଜନଶୂନ୍ୟ ରାସ୍ତାରେ ସୁଦ୍ଧା 'କିପ୍ ଟୁ ଦି ଲେଫ୍ଟ' ଛାଡ଼ିନଥାଏ ।

ସିଧାସଳଖ ରାସ୍ତା ଦୁଇଟି, ଗୋଟିଏ ବମିଖାଲ ଯାଇଛି, ଅନ୍ୟଟି ସେଥିରୁ ବାହାରି ୬ନମ୍ବର ରାଜରାସ୍ତା ସହିତ ମିଶିଛି । ଆଲୋଚ୍ୟ ମୋ ରାସ୍ତା ଏହାକୁ ଛକରେ କାଟିଛି । କୋଣକୁ ସାଇକ୍ଲ ଷ୍ଟୋର, ବାମପଟେ ଦୋକାନ ତଥା ବାସଗୃହ ଦୋତାଲା ଘର । ଏହାକୁ ଲାଗି କାରମାନେ, ଅନେକ ଗୋଟିକିଆ, ବ୍ୟକ୍ତିଗତ ଓ କେତୋଟି ରୋକଗାରିଆ ପୁଅ । ଏହି ପୁଅମାନେ ଦିନରାତି ଖଟନ୍ତି, ବେଳେବେଳେ ରାତି ବିଶ୍ରାମ ନିଅନ୍ତି । କିନ୍ତୁ କାହା ଉପରେ ଛାତ ନଥାଏ । ଛାତ ପାଇଁ କାଗା କାହିଁ ? ଶୀତ, କାକର, ବର୍ଷାରେ ଏମାନେ ପଡ଼ିଥାନ୍ତି । ଘରତ କିଣାରେ ଦୋତାଲା, କେହି କେହି ଅନ୍ତତଃ ଗୋଟିଏ ତାଲା ନିଜ ସୁବିଧା ପାଇଁ କରିଥାନ୍ତି । ସେହି ଘର ଗୁଡ଼ିକର ଦୁଇପାଖରେ ପବନ ପଶିବାର ଫାଙ୍କ ବା ଫାଟ ନଥାଏ । ଫୁଟଣ ଫୁଟିଲେ ଏହାର ବାସ ସାହି ପଡ଼ିଶାରେ ଖେଳିଯାଏ । ସହର ବଜାରରେ ସେତକ ନାହିଁ, ଲାଗଲାଗ ଦୁଇ ଘରର ଲୋକଙ୍କ ମଧ୍ୟରେ ଜଣାଶୁଣା ହୋଇପାରେ ନାହିଁ । ଅଦଳବଦଳ, ମରାମତି ଓ ଉପରକୁ ଆଉ କେଉଁ କୋଣରେ ବଢ଼ାଇବାକୁ ହେଲେ, ଆଗ ସାମ୍ନାରେ ବାଲି ଜମାଇବାକୁ ପଡ଼େ । ଓସାର କମ୍ ଥିବାରୁ ଏହାକୁ ଚୂଳାଇ ଦିଆଯାଏ । ଆମେ ଜାଣୁ ପିଲାମାନେ ବାଲିପ୍ରିୟ । କଳ୍ପନା କଉତୁକର, ସାମଗ୍ରୀ ବାଲି । ଓଡ଼ିଶା ପ୍ରଦେଶର ପ୍ରଥମ ଶିକ୍ଷା ନିର୍ଦ୍ଦେଶକ ସେଥିପାଇଁ ପ୍ରତି ପ୍ରାଥମିକ ବିଦ୍ୟାଳୟରେ ବାଲି ପଟାଳୀ ବ୍ୟବସ୍ଥା ପାଇଁ ଉପଦେଶ ଦେଇଥିଲେ । ଏତ ଗଲା ଦିନର କଥା, କିନ୍ତୁ ରାତିରେ ଷଣ୍ଢ ଓ ତାହାର ପରିବାର ଗାଈ, ବାଛୁରୀ, ଚୂଳ ଠାରୁ ତଳ ଯାଏଁ ଆରାମରେ ଶୁଅନ୍ତି । ଗକା ଷଣ୍ଢ କଳା ମଟମଟ । ଦୁଷ୍କର୍ମର ଅପଖ୍ୟାତି ଘରେ ଘରେ, କୋକୁଆ ଭୟ । ମା'ମାନେ ଏଇ ଆସିଲା କହି କବାଟ ତାଟି କିଳି ଦିଅନ୍ତି । ସରୋଜିନୀ ମାଡାମ୍ ଛଅମାସରୁ ଅଧିକ ଘାଂଟି ହେଲେ ପୌର

ପରିଷଦରେ ଏତଲା ଦିଆଗଲା । କେତେ କଅଣ କରାଗଲା, ତଥାପି ଗୋଡ଼ ସଳଖେଇ ଚାଲି ପାରୁନାହାନ୍ତି । ମୁଁ ଅବଶ୍ୟ ବାଡ଼ି ଖଣ୍ଡେ ଧରିଥାଏ, ପୁରୁଷ ହେଲେ କଣ ହେବ ଡରରେ ଥରହର । ଷଣ୍ଢ ବାରିପାରେ । ଚୁପଚାପ, ଗାଈଗୋରୁଙ୍କ ପରିବାର ଖୋଲା ଜାଗାରେ, ବେଳେବେଳେ ରାସ୍ତା ମଝିରେ ମକାରେ ଶୋଇଥିବାର ଦେଖିବାକୁ ମିଳେ ।

ଜଣଙ୍କ କଥା ମନେ ପଡ଼େ । ଟ୍ରଲି ଉପରେ ସଂସାର, କୁରାଢ଼ୀ ଖଣ୍ଡେ ଓ ମାଙ୍କଡ଼ ଛୁଆଟେ ପ୍ରାତଃ ଭ୍ରମଣରେ ବୁଲିଗଲା ବେଳେ ସ୍କୁଲ ପଛର ରାସ୍ତା ସେପଟେ ଗାଧୋଇଥିବାର ଦେଖେ । ଦେଖିବାମାତ୍ରେ ମହିମା ଅଲେଖ ଡାକି ଦିଅନ୍ତି । ସରକାରୀ କାଠଗୋଲାର ଗଣ୍ଡିକାଠ ଦୁଇତିନି ଚଟାରେ ଫାଳ ଫାଳ ହୋଇଥାଏ । ଝାଳ ଗମଗମ ବହି ଆସୁଥିବ । ସଗଦାଳ ପ୍ରଧାନ, ଘର ଗଞ୍ଜାମ ଜିଲା ବୁଗୁଡ଼ା ବାସୀ ସେ । ଏବେ ସେ କାଠଗୋଲା ଅଛି, ଆଲୁଅଟେ ଜଳୁଥିବାର ଦେଖୁଛି । କାଠ ନାହିଁ, ଚିରା ଯାଉନାହିଁ, କିଣିବା ଲୋକଙ୍କ ଭିଡ଼ ଦେଖୁନାହିଁ । ବସ୍ତି ଅଞ୍ଚଳରେ ଜଣେ ମା ପାହାନ୍ତା ପହରେ ଚିତ୍କାର କରି ଛାତିଫଟା କାନ୍ଦୁଥାନ୍ତି । କାଠ ମୂଳ କରୁଥାନ୍ତି, ଜାଣିବାକୁ ପାଇଲି, ସ୍ୱାମୀ ମରିଯାଇଥାନ୍ତି । ସେଇ ଜଣକ ସେଥିରେ ଦୁଇ, ଏବେ ସେ ଏକାକୀ ।

ମନ ଲାଗିଯାଇଥାଏ ମୋତେ ଯିବାକୁ ପଡ଼ିବ, ଫିଉଜ କଲ ଅଫିସ ଆଗରେ କୂଅ ପାଣି । ଅର୍ଜ୍ଜୁନିକୁ ଗାଧୋଇବାର ଦେଖିଛି । ହାଟରେ ପାଚିଲା କଦଳୀର କାରବାର । ପାଖରେ ନଥିଲେ ଅନ୍ୟ କାହାଠାରୁ ମନଲାଖି ଦେଶୀ କଦଳୀ ଫେଣାଟାଏ ଦରଛିଣ୍ଡାଇ ମୋ ଝୁଲାରେ ଆସ୍ତେ ରଖିଦିଏ । ଆସନ୍ତା କାଲିକି ଥିବି କି ନାହିଁ, ଚିନ୍ତା କରୁଥିବାବେଳେ ପଇସା ପରେ ନେବାର ଆଶ୍ୱାସନା ଦିଏ । ଧନ୍ୟ ଅର୍ଜ୍ଜୁନୀର ହେମତ, ବାବୁଙ୍କ ଘରେ ଠାକୁର ପୂଜା ପାଇଁ କନିଅର ଫୁଲ କେତୋଟି ସେ ତୋଳେ । ଟିକିଏ ଆଗେଇ ଗଲାବେଳେ ବାଘ ନ ଦେଖିଥିଲେ ବିଲେଇ ଦେଖ, ଅଣ୍ଡିରା ବିଲେଇ, ପତ୍ନୀକୁ ଛାଡ଼ି ଧୀରେ ଧୀରେ ରାସ୍ତା ପାରି ହୁଏ । ଚାହାଣୀ ଚାଲି ଦେଖିବା ପାଇଁ ଟିକିଏ ଅଟକି ଯାଏ ।

ଏତେବେଳେ ଆଖିପଡ଼େ ଜଣେ ବା ଦିଜଣ ସାତରୁ ଦଶ ବର୍ଷ ବୟସର ପିଲାଙ୍କ ଉପରେ । ମା ପଛେ ପଛେ ଧାଉଁଥାନ୍ତି, ମା'କୁ ଟପି ଯାଆନ୍ତି ବା ବାଁରେଇ ଆଗେଇ ଯାଆନ୍ତି । ମା ଓ ଛୁଆ ଉଭୟଙ୍କ ପିଠିରେ ଅଖାଟିଏ ଓ କାନ୍ଧରେ ମୁଣ୍ଡ ହାତରେ ଧରିଥାନ୍ତି । ମା'ର ମଧ୍ୟ ସେଇଆ, ଡାହାଣ ହାତରେ ଖଣ୍ଡେ ପାଞ୍ଚଣ ଭଳି ବାଡ଼ିଟିଏ । ଗତି ଚଞ୍ଚଳ, ପ୍ରତିଷ୍ଠିତ ଧାବକ ପରାଜିତ ହୋଇପାରନ୍ତି । ଅନ୍ଧାର ଆଲୁଅ ମଧ୍ୟରେ ବାଛିନେବାର ଦୃଷ୍ଟି ଓ ମାନସିକତା ଉଚ୍ଚକୋଟିର । ଯେପରି

ନିଅନ୍ତି କେତେ କରି ଖୋଳ; କାଗଜ, କନା ଆଡ଼କୁ ନଜର ପଡ଼େ ନାହିଁ। ରାସ୍ତା ପାଖର ହାଟ, ବଜାର, ଦୋକାନ ଥିବାରୁ କ୍ଷଣକ ମଧ୍ୟରେ ଅଖା ଅଧା ହୋଇଯାଏ। ସକାଳୁ ଉଠି ଆସିଥିବା ଓ ତତ୍‌ପର ଥିବା ଦେଖି ନିଜେ ସଙ୍କୁଚିତ ହୁଏ, ମନେ ମନେ ପ୍ରଶଂସା କରେ। ପୁଣି ବ୍ୟଥିତ ହୁଏ, ଏଇ ବୟସର ମୋ ଅଣନାତି ଓ ନାତୁଣୀମାନେ ବିଛଣାରେ, ଗଡୁଥିବାବେଳେ ଏମାନେ କାମରେ ଲାଗିପଡ଼ିଛନ୍ତି। ଇଉନିସେଫ ଶିଶୁ ଅଧିକାର କହୁଥିଲାବେଳେ ଏମାନେ ସେଥିରୁ ବଂଚିତ। ଏମାନଙ୍କୁ ଶିଶୁ ଶ୍ରମିକ କୁହାଯିବ ନାହିଁକି ? ଶିକ୍ଷାର ଅଧିକାର ଏମାନଙ୍କର ନାହିଁ କହିଲେ ଚଳେ। ଶିଶୁଶ୍ରମିକ ପ୍ରଥା ଚଳୁଥିବାଯାଏ ପ୍ରାଥମିକ ଶିକ୍ଷା ସାର୍ବଜନୀନ ହୋଇପାରିବ ନାହିଁ। ଆହୁରି ମଧ୍ୟ ଏହାଫଳରେ ସାକ୍ଷରତା ଅଭିବୃଦ୍ଧି ଯୋଜନା ସଫଳ ହେବ ନାହିଁ।

ଏହି ଚିନ୍ତା ଘାରୁଛି, ତଥାପି ଆଗେଇ ଯାଇଛି ମୋ ପ୍ରାତଃ ଭ୍ରମଣରେ। ଘୋଷ ଭବନ ଓ ଗିରିଘର, ଡାହାଣ ପାଖରେ ସୁନୀଲ ଘୋଷ ଓ ସୁଧୀର ଘୋଷ ଦୁଇଭାଇ। ସୁଧୀରବାବୁ ବାପୁଜୀ ନଗରରେ ରହିଥିବାବେଳେ ସୁନୀଲ ବାବୁ ଆମ ଏଠି। ମୁଖ୍ୟମନ୍ତ୍ରୀ ଶ୍ରୀ ବିରେନ ମିତ୍ରଙ୍କ ବ୍ୟକ୍ତିଗତ ସହାୟକ ଭାବରେ ସୁଧୀର ବାବୁ ସୁନାମ ଅର୍ଜନ କରିଥିଲେ। ସୁନୀଲବାବୁ ସେପରି କିଛି କରିଛନ୍ତି କି ନାହିଁ ମୋତେ ଜଣାନାହିଁ। କିନ୍ତୁ ତାଙ୍କ ଜାମାତା ଶ୍ରୀ ଭୈରବ ଚରଣ ମହାନ୍ତି କଟକ ବାରବାଟୀ ଷ୍ଟାଡ଼ିୟମ ନିର୍ମାଣର ପ୍ରମୁଖ ଭୂମିକା ଗ୍ରହଣ କରି କ୍ରୀଡ଼ା ଜଗତରେ ଅମର ରହିବେ। ସୁନୀଲ ବାବୁ ମୋଟାଳିଆ ଲୋକ, ସକାଳ ବୁଲାରେ ଯାଇ ସମ୍ଭବତଃ ଥକି ପଡ଼ି ସାଇକେଲ ଷ୍ଟୋର ପାଖ କଲଭର୍ଟ ମୁଣ୍ଡ ଉପରେ ଥିବା ବନ୍ଧ ଉପରେ ବସି ବାଡ଼ି ହଲାଉଥିବାର ଦେଖିଛି। କାରସବୁ ଖୋଲାମେଲାରେ ପଡ଼ିଥିବା ବେଳେ ଦୁଇଟି ବେଶ୍ ସୁରକ୍ଷିତ ହୋଇ ଆରାମ କରୁଥିବାର ଏବେ ସୁଦ୍ଧା ଦେଖୁଛି। ଉପରେ ବିଜୁଳି ଆଲୁଅରେ ଆଲୋକିତ ହୋଇଥାନ୍ତି। ଯାଉଁ ଯାଉଁ ଯଦି ବର୍ଷା କୋଉ ହେବ ଠିଆ ହେବା ପାଇଁ ଭାବିଥାଏ। ବଡ଼ମ୍ବାର ଲୋକନାଥ ପଣ୍ଡା ଓ ବର୍ଦ୍ଧମାନର ବି.ଏନ୍.କପୁରଙ୍କ ସହିତ ସମ୍ପର୍କ ଥାଏ। ଅନଗୁଳ ମୌଳିକ ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟରେ କାମ କରୁଥିବାବେଳେ ଶ୍ରୀ କପୁର୍ ଉପଖଣ୍ଡସ୍ତରୀୟ ଦ୍ୱିତୀୟ ଶ୍ରେଣୀ ମାଜିଷ୍ଟ୍ରେଟ ଥିଲେ। ଶୀତଦିନେ ତାଙ୍କ ଘର ଆଗ ଖଟିଆରେ ଖରାଟିଆ ପିଠି, ହାତ ଗୋଡ଼ ଉପରେ ତେଲ ମାଲିସ ଖାଉଥିବାର ଦେଖିଛି। ମୃତ୍ୟୁ ପର୍ଯ୍ୟନ୍ତ ସକାଳ ଓ ଉପର ବେଳା ସେ ବୁଲିଥାଆନ୍ତି।

ବାୟାବାବା ଛକରେ ପହଞ୍ଚିଯାଇଛି। ଦୁଇତିନି ବନ୍ଧୁଙ୍କ ମେଳରେ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ ବା କନଭେଣ୍ଟ ସ୍କୁଲ ଯାଏ ବୁଲୁଥିଲି। ହଟିପଡ଼ିବାରୁ ଓ

ସାଙ୍ଗସବୁ ଖସିଯିବାରୁ ଏଇ ଛକରେ ମୁଣ୍ଡି ମାରୁଛି । ଏଠି ପହଞ୍ଚିବା ପୂର୍ବରୁ ପ୍ରକାଣ୍ଡ ପ୍ରାସାଦର କୋଣରେ ଥାନ୍ତି ଜଣେ ମାଉସୀ, ସକାଳୁ ଉଠି ସ୍ନାନ ସାରି ହାତତିଆରି ଚା ପାନ କରି ରାସ୍ତା ଉପରକୁ ଆସନ୍ତି ଫୁଲତୋଳିବେ, ଠାକୁର ପୂଜା ପାଇଁ । ମୋଠାରୁ ସମୟ ବୁଝି ଦୁଇ ତିନି ଘରେ ପାଇଟି କରନ୍ତି । ଚମ ଧୁଡୁ ଧୁଡୁ ହାତ ଦିଟା ପକ୍ଷୀର ଡେଣା ପରି ସେ ମାଉସୀ, କେତେ କର୍ତ୍ତବ୍ୟନିଷ୍ଠ ।

ଛକରେ ଠିଆହୁଏ । ଅଟୋ ସବୁ ଠିକ ହରିଣ ପରି ରାସ୍ତାରେ ଧାଉଁଥିବା ଉପଭୋଗ କରେ । ସକାଳ ବୁଲା ଭାଇମାନଙ୍କୁ ଧାଉଁଥିବାର ଦେଖେ । ଗୋଟିଏ ଜିପ୍ ଆସୁଥିବାର ଦେଖିଲି । ବେଦମ ବେଗ ହଠାତ କମାଇଦେବା ଜାଣି ଭାବିଲି, ଏହା ଶହୀଦନଗର ଭିତରକୁ ଯିବ । ନିଜକୁ ସମ୍ଭାଳି କଲଭଟ ମୁଣ୍ଡକୁ ଘୁଞ୍ଚିଗଲି । ଚଟକରି ଜିପ ଅଟକି ଚାଳକ ଭାଇ ପଚାରିଲେ, କଳିଙ୍ଗ ହସପିଟାଲ କେଉଁଠି ? ଆପଣ ପଛେଇ ଯାଆନ୍ତୁ, ବାଣୀବିହାର ଛକକୁ ଉତ୍ତର ଦେଲି । ଆଖିପିଛୁଳାକ ମଧ୍ୟରେ ଜିପ୍ ମୋ ପରାମର୍ଶ ମାନି ଧାଇଁଲା ଓ ଏହାଭିତରେ ଜଣେ ରୋଗୀ ଶୋଇଥିବାର ଅନୁମାନ କଲି । ମୋ ଅଭୁଲା ଆନନ୍ଦ, ଆସନ୍ନ ମୃତ୍ୟୁ ମୁଖରୁ କଣଙ୍କର ରକ୍ଷା ପାଇଁ ସାମାନ୍ୟ ସାହାଯ୍ୟ କରିଛି ।

ଘରବାହୁଡ଼ା, ରାସ୍ତା ମଝିରେ ରିକ୍ସା ନଡ଼ବଡ଼ । ଡାଇରେକ୍ଟର ମାଇକ୍ରୋୱେଭ୍‌ଙ୍କ ଘର ପାଖରେ ଆରୋହୀଙ୍କୁ ଛାଡ଼ି ପାରିଲେ ଚୁକ୍ତି ଅର୍ଥ ଛଡ଼ା ମୋଟା ବକ୍‌ସିସ୍ ପାଆନ୍ତା । ମୋର ସାଧାରଣ ଜ୍ଞାନର ଅତୀତ ହୋଇଥିବାରୁ ଇନ୍ଦିରା ପାର୍କ ପାଖରେ ବୋଲି ଆରୋହୀଙ୍କଠାରୁ ଜାଣି ଏବେ ପଥପ୍ରଦର୍ଶକ ଅଖଣ୍ଡ ଆନନ୍ଦ ପାଇଲେ । ଏପରି ଅନେକ ଘଟଣା, ରାତିପାହାନ୍ତାର ସନ୍ତୋଷ ଓ ଆନନ୍ଦ । ଯୁବକଟି ମୋ ପଛରୁ ଧାଇଁ ଆସୁଛନ୍ତି ରୁପାଲି ଛକରୁ ଓହ୍ଲାଇ । ଦିଦି ତାଙ୍କର ବମିଖାଲ ଗାଁରେ ବିବାହିତ, ଅସ୍ତବ୍ୟସ୍ତ ହୋଇ ଖୋଜୁଛନ୍ତି, କାନ୍ଧରେ ଭାରୀ ବସ୍ତାଟିଏ, ଗମ୍ ଗମ୍ ଝାଳ ବୋହି ଯାଉଛି । ଉତ୍ତର ବାଲେଶ୍ୱର କଳେଶ୍ୱରରୁ ସେ ଆସିଛନ୍ତି । ଦିଦି ମୁଢ଼ୀପ୍ରିୟ, ମୁଢ଼ୀ ବସ୍ତା କେତେ ଦିନ ଯିବ ? ତେଣୁ ସେ ଚାଉଳ ଆଣିଛନ୍ତି । ସୀମାତୀତ ଆନନ୍ଦ, ଅଙ୍ଗୁଳୀ ବଢ଼ାଇ ବାଟ ବତାଇଛି ।

ବାଟ ମଉଜ, ଘରୁ ବାହାରିବାଠାରୁ ବାହୁଡ଼ା ଯାଏଁ ମଝିରେ ମଝିରେ ବିଜୁଳି ଆଲୁଅରେ ମୋ ଛାଇ ଦେଖୁଥାଏ, କେଉଁଠି ଛୋଟରୁ ବଡ଼ କିମ୍ବା ବଡ଼ରୁ ଛୋଟ । ସଂସ୍କୃତ ବହିରେ ପଢ଼ିଥିଲି, ଖଳପ୍ରୀତି ଓ ସଜ୍ଜନସଙ୍ଗ ଯଥାକ୍ରମେ ପୂର୍ବାହ୍ଣ ଓ ଅପରାହ୍ଣ ଛାୟା ସହିତ ତୁଳନୀୟ । କାୟା ପାଇଁ ଛାୟା ଥିବା ସ୍ଥଳେ ବି.ଏନ୍.କପୁରଙ୍କ ଘରକୋଣରେ ମୋ ପାଇଁ ଦୁଇଟି ଛାଇ ଅନୁଭୂତ ହୁଏ । ଭୟର ଆଶଙ୍କା ଗ୍ରାସ କରିବା ପୂର୍ବରୁ ଗୋଟିଏ ଛାଇ ହଜିଯାଏ ।

ଛକ ରହିଛି, ରହିଥିବ । ବାୟୁମାନଙ୍କ ସଂଖ୍ୟା ବଢ଼ିଛି ଓ ବଢ଼ିଯିବ । କିନ୍ତୁ ବାୟୁବାବା ଚିରସ୍ମରଣୀୟ ହେବେ । ସାତ ଆଠ ବର୍ଷର ପିଲା ଆଗେଇ ଗଲେ ହାତଯୋଡ଼ି ନମସ୍କାର କରିବେ । ମହିମା ଧର୍ମୀ ସନ୍ନ୍ୟାସୀଙ୍କ ପାଇଁ ଚର୍ଚ୍ଚା । ସ୍ମୃତିର ଅର୍ଘ୍ୟ ଅର୍ପଣକରି ଫେରୁଛି ବାଁ ପାଖରେ ଆଖି ପଡ଼ିଛି କେତୋଟି Cactus ଉପରେ । ଦେଉଳିଆ ସିକୁ ନୁହେଁ । ଚଟାଳିଆ ସିକୁ, କଣ୍ଟକିତ, ସେଥିଯୋଗୁଁ ଏଯାଏଁ ରହିଛି ।

ପୂର୍ଣ୍ଣିମାର ଆଗପଛ ବେଳେ ପୂର୍ଣ୍ଣ ଚନ୍ଦ୍ରର ଶୋଭା ବିମୁଗ୍ଧ କରେ । ବେଳେବେଳେ ପୂର୍ବାକାଶରେ ସିନ୍ଦୂର ଫାଟୁଥାଏ ଓ ପ୍ରକୃତିର ଶୋଭା ମନଲୋଭା ହୁଏ । ଅକସ୍ମାତ ବିଜୁଳୀ ଆଲୋକ ଲିଭିଗଲେ ଅନ୍ଧକାର ମାଡ଼ିଆସେ ଓ ଯେ ଲିଭାଇଛନ୍ତି, ତାଙ୍କ ଖାମଖିଆଲ ମନୋଭାବ ପାଇଁ କ୍ରୋଧ ଜନ୍ମେ । କ୍ଷଣକ ପରେ ଆକାଶର ସୌନ୍ଦର୍ଯ୍ୟ ଓ ଔଦାର୍ଯ୍ୟ ମନ ମଧ୍ୟରେ ପ୍ରସନ୍ନତା ଛାଇଦିଏ । ଶାନ୍ତ କାନ୍ତ ଶୋଭା ଏକାନ୍ତ ଆନନ୍ଦ ଦାୟକ । ବ୍ରହ୍ମାନଂଦ ପରମ ସୁଖଦଂ କେବଳଂ ଜ୍ଞନସ୍ମର ବିଶ୍ୱାତୀଂ ଗଗନ ସଦୃଶଂ, ଆକାଶ ସର୍ବବ୍ୟାପୀ ମୋ ଆଗରେ ଉଭାହୁଏ ।

ଗୋଡ଼ ଉଠାଇ ଚାଲିଆସେ । ସ୍କୁଲ ପାଖରେ ହେମଦସ୍ତା ପାହାରର ଶବ୍ଦ ଶୁଭେ । ଛୋଲା ତରକାରୀ ଛୁଙ୍କ କ୍ଷୁଧା କାତ କରେ । ଭ୍ରାମ୍ୟମାଣ ରୋଷାଇ ଘର ପାଚକ ବନ୍ଧୁଦ୍ୱୟ ଲାଗିପଡ଼ନ୍ତି ଇଡ଼ଲି, ଉପମା, ବରା, ପୁରୀ, ସିଙ୍ଗଡ଼ା ତିଆରି କରିବାରେ । ସେମାନଙ୍କ ଶୃଙ୍ଖଳା, ନିଷ୍ଠା, ତତ୍‌ପରତା, ଗରାଖପ୍ରେମ, ମୋ ପାଇଁ ଆକର୍ଷଣୀୟ ।

ସେଦିନ ଏ ବର୍ଷର ପ୍ରଥମ ଖୁଦୁରୁକୁଣୀ ଓଷା । ଆମ ଘର ରାସ୍ତା ଉପରେ ନାହିଁ ନଥିବା ଗହଳି । ପୁଅଝିଅ ଭାଇଭଉଣୀ ଦଶ ଜଣ ହେବେ । ବଡ଼ ବଡ଼ ପତ୍ରର କ୍ରୋଟନ, କନିଅର, କରବୀର ଆଦି ଗଛର ଗୋଛା ଗୋଛା ଡାଳ ଜମାଇଥାନ୍ତି । ସବୁଦିନିକା ଫୁଲ ଗଛକୁ ଟଣା ଓଟରା କରୁଥାନ୍ତି । ଉପାୟ ନପାଇ ଗଛ ବିଚରା ଆତ୍ମସମର୍ପଣ କରୁଥାଏ । ଗଛର ଜୀବନ ଅଛି । ମୋପରି ଯଦି କଥା କହୁଥାନ୍ତା ଓ ସକାଳବୁଲା କରୁଥାନ୍ତା ନିଶ୍ଚିତ ଭାବରେ ମାନହାନି ମକଦମା କରିଥାନ୍ତା । ବୁଢ଼ା ବୟସରେ ମୋ ଦ୍ୱାରା ଜନସ୍ୱାର୍ଥ ମାମଲା ମଧ୍ୟ ହୋଇ ପାରୁନାହିଁ । ବୃକ୍ଷଲତା କେଡ଼େ ମହାନ । ଚେରଦ୍ୱାରା ମାଟିରୁ ରସ ପିଇ ଆମକୁ ଫୁଲ, ପତ୍ର, ଫଳ ଆଦି ଦିଏ । ରାତି ପାହିଲା ବେଳକୁ ପଥଚାରୀ ପାଇଁ ସୁବାସ, ଶୋଭା ଓ ଛାୟା ମାଗଣାରେ ବିତରଣ କରିଦିଏ । ମନ ଭିତରେ ଏହି ଭାବନା ରଖି ପିଲାଙ୍କ ଆଗରେ ଠିଆହେଲି । ସେମାନେ ଅଟକି ଗଲା ପରି ଲାଗିଲା । ଶ୍ରେଣୀ କୋଠରୀର ଆଜୀବନ ମଣିଷ ଜଣେ, ସେ ପୁଣି ଦୁଷ୍ଟ ସଚ୍ଚ ସମସ୍ତଙ୍କ ମଧ୍ୟରେ ଅଦେହୀଙ୍କୁ ଅନୁଭବ କରିଛି । କହିଲି, ଫୁଲ ଆଣିଲ ଭଲକଲ । ଗଛ ଗୁଡ଼ିକ କାଟି ଆଣିଲ କାହିଁକି ?

ଉତ୍ତର ହେଲା, ଆମେ ଏଠୁ ନେଇ ନାହୁଁ, ପାର୍କରୁ ଆଣିଛୁ। ପୁଣି କହିଲି, ଆମ ଏଠୁ ନେଇଥିଲେ ଭଲ ହୋଇଥାନ୍ତା ପାର୍କରେ ଲଗାଇବ କିଏ ? କାନ ମୁଣ୍ଡ ଆଉଁସି ପିଲେ ପଳାଇ ଯିବାକୁ ବସିଲେ। ଏ ପାଳିରେ ନେଇଯାଅ, ଆର ପାଳିକୁ ଏପରି କରିବ ନାହିଁ।

ରାତି ପାହି ଆସିଲା ମୋ ଧନ୍ଦା ପାଇଁ ଘରକୁ ଧାଇଁ ଆସିଲି। କୁଆମାନେ ମୋର ସବୁଦିନିଆ କୁଣିଆ। ଦୁଇପଟ ରୋଟି ସେମାନଙ୍କ ପାଇଁ ଥାଏ। ଯତ୍ନରେ ଖଣ୍ଡ ଖଣ୍ଡ କରାଯାଏ। କିଛି ମିକ୍ସଚର ଓ କେତୋଟି ବାଦାମ ମଞ୍ଜି ମା ଦିଅନ୍ତି। ଏହି ଲୋଭନୀୟ ଖାଦ୍ୟ ପାଇଁ ମଣିଷ ତ ବାଉଳା ହେବ। କୁଆମାନେ ସପରିବାର ଫରଫର ହୁଅନ୍ତି। ଶିଶୁକୁଆ ଥଂଟ ମଧ୍ୟରେ ମା ଖାଦ୍ୟ ଥୋଇଦିଅନ୍ତି। ବେଳେବେଳେ ବିଲେଇ ନିଜ ଖାଦ୍ୟ ପାଇଁ କଗିବସେ। ବାଡ଼ି ଖଣ୍ଡେ ଧରି ଠିଆ ହେଲେ ବିଲେଇ ଭାଗିଯାଏ ଓ କୁଆମାନେ ବାହାଦୁରୀ ଦେଖାଇ ମୋତେ ବିଛି ଦିଅନ୍ତି। ସେମାନଙ୍କର ଡେଣାର ପବନ ମୋ ଦେହରେ ବାଜେ ଓ ଆମେ ପରମ ଆନନ୍ଦ ଅନୁଭବ କରୁ।

ଆଜି ଏତିକି।

□□□

# ଦୁଷ୍ଟ ହୋଇ ଜଣେ ନାହିଁ କେହି

ମହତ ବାକ୍ୟ, ମହାନ୍ କବିଙ୍କର କେହି ଜଣେ ହେଲେ ଦୁଷ୍ଟ ହୋଇ ନାହିଁ। ଆନନ୍ଦଦାୟକ ଓ ଉତ୍ସାହ ସୃଷ୍ଟିକାରୀ ସେ ବାକ୍ୟ। ଶିହରଣ ଆସେ, ଚେତନା ଜାଗ୍ରତ କରେ।

ଦୁଷ୍ଟ ହୋଇ ନାହିଁ, ସେ ଜଣକ କିଏ ? ପିଲାମାନେ, ପୁଅ, ଝିଅ ସମସ୍ତେ। ବାଳ, ବୃଦ୍ଧ ଓ ଯୁବା-ସବୁ ବୟସର ସମସ୍ତେ। ସାଧୁ, ଶାନ୍ତ, ଧୀରସ୍ଥିର ହେବା ସମସ୍ତଙ୍କ ଅଧିକାର। ଏହି ଅଧିକାରକୁ ପଲ୍ଲବିତ କରି ରଖିବା ସମସ୍ତଙ୍କର ଦାୟିତ୍ୱ। ପିଲା, କିଶୋର, ଯୁବକ, ପ୍ରୌଢ଼, ବୃଦ୍ଧ ସଭିଙ୍କର ଦାବି ଓ ଦାୟିତ୍ୱ।

ସେ ଜଣକ କେଉଁଠାରୁ ? ଏଇ ଏଠାର। ଆମ ପରିବାରର, ରାଜ୍ୟର, ଦେଶ ଓ ବିଶ୍ୱର। ସମସ୍ତ ମାନବ ସମାଜର, ସବୁଠାର। ଜଳ, ସ୍ଥଳ, ଆକାଶର-ସକଳ ପ୍ରାଣୀଙ୍କର।

କୋଟି କୋଟି ଯୁଗର, ମନୁଷ୍ୟ, ଦେବତା, ସୁଜ୍ଞାନୀ, କୁଜ୍ଞାନୀଙ୍କର। ନକ୍ଷତ୍ରଗଣ, ଅରୁଣ, ଶଶାଙ୍କ, ସୁରପତି, ଦଶଦିଗପାଳ ଓ ସକଳ ସୃଷ୍ଟିର ଦାୟିତ୍ୱ ପରହିତ ପାଇଁ ରହିଛି। ଜଗତଯାକ ସମସ୍ତେ ସର୍ବ ସୃଷ୍ଟିର ହିତ କରୁଛନ୍ତି।

ଏଇ କେତେଦିନ ତଳେ ଜଣେ ପିଲା ଆମ ଘରକୁ ଆସିଥିଲେ। ତାଙ୍କର ପିତା, ମାତା ଅଛନ୍ତି ଓ ସେମାନଙ୍କ ପିତାମାତା୍‌ ସେ ପିଲାଟିକୁ ଆଣିଥାନ୍ତି। ସେ ସେ ବାପାଙ୍କ ପୁଅ, ଏପରି ପରିଚୟ ଦେବେ କି ? ତାଙ୍କ ଦେହ ଦୁର୍ବଳ ଓ ସେ ପରାମର୍ଶ ପାଇଁ ଆସିଛନ୍ତି। ସେ ସେ ସେହି ଦୁର୍ବଳ ଶରୀର-ଏହା ଧରି ହେବକି ? ସେ ପଞ୍ଚମ ଶ୍ରେଣୀର ଛାତ୍ର। ସେ ସେ ଏଇ ସ୍କୁଲ, ଏଇ ଶ୍ରେଣୀର ଏପରି ଜାଣିଲେ ଚଳିବ କି ? ତାଙ୍କର ଘର, ଗ୍ରାମ, ସହର ଏତିକି ଜାଣିଲେ ହେବ କି ? ସେ ସେ ବାଳକ, ବାଳିକା ନୁହନ୍ତି-ଏଇ ଚିନ୍ତା ମୋ ମନରେ ଆସି ନାହିଁ। ଖୁସି ଲାଗିଲା ପିଲାଟିକୁ ଦେଖି। ମୁଣ୍ଡରେ ହାତ ବୁଲାଇ କହିଲି- "ଭଲ ପିଲାଟି, ଆସ। ଆମ ପିଣ୍ଡାରେ ବସ।" ବାପା ଏକଥା ଶୁଣିବା ମାତ୍ରେ ଉତ୍ତର ଦେଲେ- "ସେ ଦୁଷ୍ଟ ଶିରୋମଣି। ଚଗଲାଙ୍କ ଓସ୍ତାଦ। ତା'ର ହାତଗୋଡ଼ ଥିର ନାହିଁ।" ବେଶୀ ଶୁଣିବାକୁ ଅପେକ୍ଷା ନକରି ପୁଣି କହିଲି- "ପିଲାର ମୁଖମଣ୍ଡଳ ଉଜ୍ଜ୍ୱଳ। ସେ ଭଲ କାମ କରିପାରେ। ସେ ଶାନ୍ତ ଶିଷ୍ଟ।" ମୋତେ ବାଧା ଦେଇ ବାପା କହିଲେ- "ଆପଣ ତାକୁ ମୋତେ ଜାଣନ୍ତି ନାହିଁ। ସ୍କୁଲରୁ ଆସିବ ସ୍ଥିର ହୋଇ ବସିବ ନାହିଁ। ବହି ବସ୍ତାନୀ ଫିଙ୍ଗି ଦେବ ଯ୍ୟକୁ ଧର, ତାକୁ ମାର। ଗଛରେ ଚଢ଼ିଯିବ। ଭଲ ଭଲ କୋଳି ତୋଳି ଖାଇବ ଓ ସାଙ୍ଗ ମାନଙ୍କୁ ଖୁଆଇବ। ଡାଳ ସବୁ ହଲାଇ ଦିଏ। କଞ୍ଚା, ପାଚିଲା ଦରପାଚିଲା କୋଳି ତକ ତଳେ ପଡ଼ିଯାଏ। ଗଛ ଚଢ଼ି ଜାଣି ନଥିବା ଲୋକମାନେ କାଉ ଅଇଁଠା ଖାଆନ୍ତି ବୁଢ଼ା ବୁଢ଼ୀ, ସାନ ବଡ଼ ପିଲା ସାଉଁଟି ଖାଆନ୍ତି। ଏଇଆ ସେ ପିଲା, ମହାଦୁଷ୍ଟ, ଦୁଷ୍ଟଙ୍କ ଗୁରୁ।"

କିପରି ? ସ୍କୁଲରୁ ବସି ବସି ଫେରେ। ବହିମାନେ କଥା କୁହନ୍ତି ନାହିଁ। ପିଲାଟିର ପାଟି ବନ୍ଦ। ଘରକୁ ଆସି ନିରାପଦ ହେଲା। ପାଟି ଚାଲିଲା, ଗୋଡ଼ ହାତ କଥା କହିଲେ। ଦୁଃସାହସିକତାର ଚିହ୍ନ ସ୍ୱରୂପ ଗଛ ଚଢ଼ିଲା। ଗଛ ପାଚିଲା କୋଳି ସେ ଖାଇଲା ଓ ସାଙ୍ଗକୁ ଖୁଆଇଲା। ଗଛ ଚଢ଼ିପାରୁ ନଥିବା ସାନ ବଡ଼ ପିଲା, ଦୃଷ୍ଟିହୀନ ପିଲା ଓ ବଡ଼ ମଣିଷ, ବୁଢ଼ାମାନେ ସମସ୍ତେ କୋଳି ଖାଇଲେ। ଯେଉଁ ପିଲା ଓ ଯଥାର୍ଥରେ ଅନ୍ୟମାନେ ଏପରି କରିପାରନ୍ତି, ସେମାନେ ଦୁଷ୍ଟ ହେବେ କିପରି ?ସମସ୍ତେ ଅମୃତର ସନ୍ତାନ।

ସୃଷ୍ଟିର ସର୍ବତ୍ର ପରମାତ୍ମା ରହିଛନ୍ତି। ଜୀବ ଓ ଅଜୀବ ସମସ୍ତଙ୍କ ଭିତରେ ଓ ବାହାରେ। ସୃଷ୍ଟି କର୍ତ୍ତା ପରମ ପିତା ସର୍ବବ୍ୟାପୀ ହୋଇ ଅଛନ୍ତି। ଉନବିଂଶ

ଶତାବ୍ଦୀର ଅନନ୍ୟ କାବ୍ୟକାର ଚିତ୍ରିତ କରିଛନ୍ତି ନିମ୍ନମତେ:-

ସ୍ଥାବରୁ ଜଙ୍ଗମ କୀଟରୁ ପତଙ୍ଗ ଚାହିଁଦେଲେ ଅନୁସରି ।
ସକଳ ଘଟରେ ପୂରି ସମାନରେ ନୋହେ ସାନ ବଡ଼ କରି ।।

*ସ୍ତୁତି ଚିନ୍ତାମଣି, ପଞ୍ଚଦଶ ବୋଲି*

ଅର୍ଥାତ୍ ବୃକ୍ଷ, ଭୂମି, ପର୍ବତାଦି ଓ ମରୁଭୂମି, ପଶୁ ଆଦି ଯଥାକ୍ରମେ ଅଚଳ ଓ ଚଳ ସୃଷ୍ଟିରେ ପୂରି ରହିଛନ୍ତି । ସେଠି ସାନ ବଡ଼ର ବିଚାର ନାହିଁ ।

ଠିକ୍ ସେପରି ମହାନ କବି, ସନ୍ଥକବି ଭଜନରେ ପରିସ୍ଫୁଟ କରିଛନ୍ତି :-

"ଶୂନ୍ୟ ସ୍ୱରୂପ ହେ, ଘୋଟିଅଛ ତ୍ରିଭୁବନ ମହୀ"। ସତେ ଯେପରି "ଈଶାବାସ୍ୟମିଦଂ ସର୍ବଂ ଯତ୍ କିଞ୍ଚିତ ଜଗତ୍ୟାଂ ଜଗତ"ର ଚିନ୍ତା ଓ ଚେତନା, ସ୍ପଷ୍ଟ ହୁଏ ଏଠାରେ । ଶୂନ୍ୟ ସ୍ୱରୂପ ତ୍ରିଭୁବନ ମହି ଘୋଟି ଅଛନ୍ତି । ଆକାଶ, ପାତାଳ ଓ ମହୀମଣ୍ଡଳକୁ ସେ ଶୂନ୍ୟ ସ୍ୱରୂପରେ ପୂର୍ଣ୍ଣ ହୋଇ ରହିଛନ୍ତି । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂସାରକୁ ସେ ପୂରି ରହିଛନ୍ତି । ସମସ୍ତେ ତାଙ୍କ ଭିତରେ ଓ ସେ ସମସ୍ତଙ୍କ ଭିତରେ । କେହି ଏଥିରୁ ବାଦ୍ ପଡ଼ି ନାହାନ୍ତି । ତେଣୁ "ଦୁଷ୍ଟ ହୋଇ କେହି ଜଣେ ନାହିଁ", ଏହା ଯେପରି ସତ୍ୟ "କିବା ଦୁଷ୍ଟ ସନ୍ଥ ଏକ ହୋଇ" ସେପରି ସତ୍ୟ । ସେ ସତ୍ୟର ସତ୍ୟ, ଚାରିଆଡ଼େ ଏକମାତ୍ର ସତ୍ୟ, ଅନ୍ୟ କେହି ନାହିଁ ।

ସୁର ଅସୁର ଦୁଇ ଛନ୍ତି ସମାନ ହୋଇ । ପରମାତ୍ମାଙ୍କ ସର୍ବବ୍ୟାପକତା ସର୍ବତ୍ର ସୁସ୍ପଷ୍ଟ ।

କାବ୍ୟକାର, କବି ଭୀମ ଭୋଇ ନିଜେ ହିଁ ନିଜର ଦୃଷ୍ଟାନ୍ତ । ଗୁରୁ ମହିମାଙ୍କର ଆଜ୍ଞାରେ କାବ୍ୟାଦର୍ଶ ଓ ଜୀବନାଦର୍ଶ ଏକ । ତେଣୁ ସେ ଶ୍ମଶାନ ତୁଳସୀ ନ ହୋଇ ବିଶ୍ୱ ଦର୍ଶନ, ସାହିତ୍ୟ ତଥା ସାମାଜିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ଧ୍ୟେୟ ହୋଇଛନ୍ତି । ଅନ୍ତର୍ଗତରେ ଭଜିଛନ୍ତି ଓ ଅନୁଭବରେ ହେଜିଛନ୍ତି । ଜ୍ଞାନଚକ୍ଷୁ ପାଇଛନ୍ତି । "ମୁଁ ପାପୀ ଜନ୍ମ ଅନ୍ଧ" ବୋଲି ଘୋଷଣା କରିଛନ୍ତି । ତାଙ୍କ ଜନ୍ମର ଦେଢ଼ ଶହ ବର୍ଷ ପରେ "ଦୁଷ୍ଟ ହୋଇ ଜଣେ ନାହିଁ କେହି" ଓ ଗୋଟିଏ ମୁଦ୍ରାର ଅନ୍ୟ ପାର୍ଶ୍ୱ ପରି "କିବା ଦୁଷ୍ଟ ସନ୍ଥ ଏକ ହୋଇ" ଆମ ପାଇଁ ନବତରଙ୍ଗ ସୃଷ୍ଟି କରେ । ସେ ଶୂନ୍ୟ ସ୍ୱରୂପ, ଧନ୍ୟ ସେ ପୁରୁଷ, ଶୂନ୍ୟ ଅବତୀର୍ଣ୍ଣ । ମାନବ ତନୁ ବହି ସକଳ ଦୃଷ୍ଟିକୁ ଉଦ୍ଧାର କରେ । କାହାକୁ ଅନ୍ତର ଚିତ୍ତେ ନାହିଁ ତାର । ଅଲେଖ ପୁରୁଷ ଦୀକ୍ଷା ବହି, ଏସବୁ ସ୍ମରଣ, ଚିନ୍ତନ, ମନନ, ସାରା ବ୍ରହ୍ମାଣ୍ଡରେ ଆଜି ସୁଦ୍ଧା ତରଙ୍ଗାୟିତ କରେ ସକଳ ସୃଷ୍ଟିକୁ ନବତରଙ୍ଗରେ ।

□□□

# ପରୀକ୍ଷାର ପରୀକ୍ଷା

ଏବେ ଆଉ ପରୀକ୍ଷା ନାହିଁ, କିନ୍ତୁ ଚାଲିଛି ଖୁବ୍ ନିର୍ମମ ଓ ନିଷ୍ଠୁର ଭାବରେ ସର୍ବତ୍ର ପରୀକ୍ଷାର ପରୀକ୍ଷା । ପରୀକ୍ଷାର ପଦ୍ଧତି ଓ ମାପକାଠି ଯେତେଦୂର ତ୍ରୁଟିଯୁକ୍ତ ଓ ବ୍ୟକ୍ତି-ସାପେକ୍ଷ ହେଉ ପଛକେ ଶିକ୍ଷା, ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାୟତନର ପରୀକ୍ଷା ହେବାର କଥା; କିନ୍ତୁ ତା ବଦଳରେ ଶିକ୍ଷା ସୋପାନର ତଳରୁ ତାଳୁ ପର୍ଯ୍ୟନ୍ତ ପରୀକ୍ଷାର ପରୀକ୍ଷା ଚାଲିଛି । କି ଭୀଷଣ ଓ ଭୟାବହ ପରିସ୍ଥିତି ।

ପରୀକ୍ଷା ଭସ୍ମାସୁର "ଆପଣା ଆୟତ୍ତ ପରକୁ ଦେଇ, ଶିବ ପଳାଇଲେ ଲଙ୍ଗଳା ହୋଇ ।" ପରୀକ୍ଷା ଶିକ୍ଷା ପ୍ରଣାଳୀର ସହଚର ଓ ସହାୟକ । ଯେଉଁଠି ପାଠ ସେଇଠି ପରୀକ୍ଷା, ପାଠ ଓ ପରୀକ୍ଷା ଅଙ୍ଗାଙ୍ଗୀ ଜଡ଼ିତ- ଏହା ଥିଲା ଓ ରହିବ । ପାଠ କିପରି ଚାଲିଛି, କେତେ ଦୂର ସଫଳ ହେଲା, ପାଠକୁ ପିଲାଏ କିପରି ଗ୍ରହଣ କଲେ ଓ ତଦ୍ୱାରା ପିଲାଙ୍କର କି ପରିବର୍ତ୍ତନ ହେଲା, ଏସବୁ ପରୀକ୍ଷାରୁ ଜାଣିବାର କଥା । କିନ୍ତୁ ପରୀକ୍ଷା ସହାୟକ ନ ହୋଇ ସଇତାନ ହୋଇଛି । (A good servant, but a bad master) ପରୀକ୍ଷା-ଭସ୍ମାସୁର ଆମ ଆୟତ୍ତରେ ନାହିଁ । ସତ୍ୟ ଶିବ ସୁନ୍ଦର ଆଜି ଶିକ୍ଷାୟତନ ଓ ସମାଜକୁ ଛାଡ଼ିଦେବାରେ ଦେଖାଯାଉଛି । ବରଂ ସମାଜର ଯାହା କିଛି ଅସତ୍ୟ, ଅଶିବ ଓ ଅସୁନ୍ଦର, ତାହା କ୍ରମେ ଶିକ୍ଷାୟତନକୁ ଗ୍ରାସ କରୁଛି ।

ହାଟଙ୍ଗ୍ କମିଟି (୧୯୧୬) An Examinationର examination (ପରୀକ୍ଷାର ପରୀକ୍ଷା) ପ୍ରସଙ୍ଗରେ ପରୀକ୍ଷକଙ୍କର ମନମୁଖୀ କାରବାର ବିଷୟ ଉତ୍‌ଥାପନ କରିଥିଲେ । ଗୋଟିଏ ପ୍ରଶ୍ନର ଉତ୍ତରର ମାନ ନିରୂପଣ କଲାବେଳେ ଦୁଇ ପରୀକ୍ଷକଙ୍କ ମଧ୍ୟରେ ଓ ଜଣେ ପରୀକ୍ଷକଙ୍କର ବିଭିନ୍ନ ସମୟର ମୂଲ୍ୟାଙ୍କନ ମଧ୍ୟରେ ଆକାଶ-ପାତାଳ ପ୍ରଭେଦ ଲକ୍ଷ୍ୟ କରି ମାନ ନିରୂପଣ କିପରି ବ୍ୟକ୍ତି ନିରପେକ୍ଷ (objective) ହେବ ସେ ପରାମର୍ଶ ଦେଇଥିଲେ । ସେ ପରାମର୍ଶ ସେନିଲୁ ତ ନାହିଁ, ଏହା ସଙ୍ଗ "ସାରସତ୍ୟ ପାଣୋରିଲୁଁ, ସାରିଲୁଁ ଆୟୁଷ ।" ବର୍ତ୍ତମାନ ଅବସ୍ଥାରେ ପରୀକ୍ଷାର ପରୀକ୍ଷା ପରୀକ୍ଷକ, ପରୀକ୍ଷା ପରିଚାଳକ, ନିର୍ଦ୍ଦେଶକ ଓ ନୀରିକ୍ଷକ, ଅଭିଭାବକ, ଶିକ୍ଷକ-ସମସ୍ତଙ୍କ ପାଇଁ ଭୟାବହ ପରିସ୍ଥିତି ସୃଷ୍ଟି କରିଛି । ସମସ୍ତେ ବ୍ୟଥିତ ଓ ଅସହାୟ । ଔଷଧ ରାଗରେ ବେଳେବେଳେ ତାଟିଆ ବି କାମୁଡ଼ା ଯାଉଛି । ପିଲାଏ ବି ଖରାପ ହେଲେଣି, ମାଷ୍ଟ୍ରମାନେ ଅସହାୟ ହେଲେଣି, ଶାସକ ଦୁର୍ବଳ, ପରୀକ୍ଷା ହଟିଯାଉ ଇତ୍ୟାଦି । ଯାହା ବି ଯେଉଁଠି ଅଧ୍ୟୟନ-ଅନୁରାଗ,

ବିଦ୍ୟାର୍ଜନ-ଶ୍ରଦ୍ଧା ଥିଲା ତାହାର ସ୍ୱୀକୃତି ନାହିଁ । ତାହା ବର୍ତ୍ତମାନ ସନ୍ଦେହର ବସ୍ତୁ । ମାତ୍ର ବିଲେଇ ବେକରେ ଘଣ୍ଟି ବାନ୍ଧୁଛି କିଏ ?

ଏହି ବ୍ୟର୍ଥତା ଓ ବ୍ୟଥାର କାରଣ କେତୋଟିର ଆଲୋଚନା କରାଯାଉ । ଆଜି ନୁହେଁ, କେତେ କାଳର ଉଦାସୀନତା, ଗୁଡ଼ୀବାଦିତା ଆଦି ବହୁ କାରଣରୁ ଅବସ୍ଥା ଏପରି କଟିଳ ଓ ସାଂଘାତିକ ହୋଇଛି ।

**(୧) ପରୀକ୍ଷା ଏକ କକ୍ଷଚ୍ୟୁତ ଧୂମକେତୁ ହେଲା**

ଉଦ୍ଦେଶ୍ୟ, ଉପାୟ ଓ ମୂଲ୍ୟାଙ୍କନ-ଶିକ୍ଷାର ଏହି ତିନୋଟି ବିଭାବ ମଧ୍ୟରେ ଏକ ଆପେକ୍ଷିକ ଓ କ୍ରିୟା-ପ୍ରତିକ୍ରିୟା ମୂଳକ ସମ୍ପର୍କ (intraction) ରହିଛି । ପ୍ରଥମେ ଉଦ୍ଦେଶ୍ୟ ନିଅନ୍ତୁ, ଶିକ୍ଷାର ସାଧାରଣ ଉଦ୍ଦେଶ୍ୟ ରହିଛି, ଭଲ ମଣିଷ ଗଢ଼ିବା, ଉପାର୍ଜନକ୍ଷମ ନାଗରିକ ପ୍ରସ୍ତୁତ କରିବା, କୌଶଳୀ କାରିଗର ସୃଷ୍ଟି କରିବା, ଜୀବନର ସର୍ବାଙ୍ଗୀନ ବିକାଶ ସାଧନ କରିବା ଇତ୍ୟାଦି । ଏସବୁ ଉଦ୍ଦେଶ୍ୟ ପରସ୍ପର ପୃଥକ୍ ନୁହେଁ, ପୁଣି ଶିକ୍ଷାର ସ୍ତର ଅନୁସାରେ ଉଦ୍ଦେଶ୍ୟରେ ତାରତମ୍ୟ ଥାଏ । ଏହା ଛଡ଼ା ବିଦ୍ୟାଳୟର ପ୍ରତ୍ୟେକ ବିଷୟ ଓ କାର୍ଯ୍ୟକଳାପର ମଧ୍ୟ ସ୍ୱତନ୍ତ୍ର ଓ ସାଧାରଣ ଲକ୍ଷ୍ୟର ପରିପୂରକ ଉଦ୍ଦେଶ୍ୟ ଥାଏ । ମୋଟ ଉପରେ ଶିକ୍ଷାର ଉଦ୍ଦେଶ୍ୟ ଅନୁସାରେ ଆମକୁ ପାଠ, ପ୍ରଣାଳୀ, ପରିବେଶ, ପାଠ ସହାୟକ ସାମଗ୍ରୀ, ସଂଗଠନ, ଶାସନ ଇତ୍ୟାଦିକୁ ସ୍ଥିର କରିବାକୁ ପଡ଼େ । ଏସବୁ ଉପାୟ ନାମରେ ଅଭିହିତ । ଯେଉଁସବୁ ଦ୍ୱାରା ଏପରିକି ଶିକ୍ଷକଙ୍କ ବ୍ୟକ୍ତିତ୍ୱ, ଅଭିରୁଚି, ଆଦର୍ଶ ଆଭିମୁଖ୍ୟ- ଆମ୍ଭେମାନେ ଛାତ୍ର ଜୀବନକୁ ପରିବର୍ତ୍ତିତ ଓ ପ୍ରଭାବିତ କରିପାରିବା ସେସବୁ ହେଲା ଉପାୟ । ଉପାୟକୁ ନିଶ୍ଚୟ ଉଦ୍ଦେଶ୍ୟମାର୍ଗୀ କରିବାକୁ ହେବ । ଗଣତାନ୍ତ୍ରିକ ମନୋଭାବ ସୃଷ୍ଟି କରିବା ଉଦ୍ଦେଶ୍ୟ ରଖି ଆମେ ଯଦି ପିଲାମାନଙ୍କୁ ନିସ୍ତୁକ ପ୍ରହାର କରିବା, ଏକଛତ୍ର ଶାସନର ସୁଫଳ ବିଷୟରେ ପାଠ ପଢ଼ାଇବା, ବକ୍ତୃତା କରି ପାଠର ବୋଝ ଲଦିଦେବା ତେବେ ଉଦ୍ଦେଶ୍ୟ ନିଶ୍ଚୟ ପଣ୍ଡ ହେବ । ତେବେ ଉଦ୍ଦେଶ୍ୟ ଅନୁରୂପ ଉପାୟ ଠିକ୍ କଲାପରେ ବର୍ତ୍ତମାନ ପ୍ରଶ୍ନ ହେଉଛି ଆମ ଉଦ୍ଦେଶ୍ୟ ସଫଳ ହେଲାକି ? ପରୀକ୍ଷାରେ ପ୍ରଶ୍ନ ଆସିଲା । ସେଥିରେ ବିଚାର ହେଉଛି, ପରୀକ୍ଷା ଲିଖିତ ହେବ ନାଁ ମୌଖିକ ହେବ କାଗଜରେ ଲେଖିବେ ନାଁ ହାତରେ କରିବେ, କାମଟି ଜଣକିଆ ହେବ ନାଁ ଦଳଗତ ହେବ, ଇତ୍ୟାଦି । ଆଚ୍ଛା, ସୁଚିନ୍ତିତ ପରୀକ୍ଷା ପଦ୍ଧତି ଓ ପରୀକ୍ଷାର କୌଶଳ ପ୍ରୟୋଗ କରି ଯେଉଁଫଳ ପାଇଲେ ତାକୁ ବିଶ୍ଳେଷଣ କରିବାର କଥା । ଯଦି ପରୀକ୍ଷାର ଫଳ ଆଶାନୁରୂପ ନୁହେଁ, ତେବେ ଉପାୟର ପରିବର୍ତ୍ତନ ଆବଶ୍ୟକ କି ? ଉଦ୍ଦେଶ୍ୟର କୌଣସି

ପରିବର୍ତ୍ତନ ଆବଶ୍ୟକ କି ? ଏହି ସମ୍ପର୍କକୁ Dr. B.S. Bloom ନିମ୍ନୋକ୍ତ ଚିତ୍ରରେ ବ୍ୟକ୍ତ କରନ୍ତି । ବାସ୍ତବ କ୍ଷେତ୍ରରେ ଆମ ପରୀକ୍ଷା ପ୍ରସ୍ତୁତି, ପ୍ରଣାଳୀ ଓ ଫଳର ବିଶ୍ଳେଷଣ ଏହି ପରିପ୍ରେକ୍ଷୀରେ ଆଦୌ କରାଗଲା ନାହିଁ । ପରୀକ୍ଷା ଏକ ଗୋଠଖଣ୍ଡିଆ ବା କକ୍ଷଚ୍ୟୁତ ଧୂମକେତୁ ହୋଇଗଲା । ଛୁଞ୍ଚିଦ୍ୱାରା ଶାବଳର କାମକରି ହେବ ନାହିଁ, କିମ୍ବା ଶାବଳ ଛୁଞ୍ଚିର କାମ କରି ପାରିବ ନାହିଁ । ଉଦ୍ଦେଶ୍ୟର ଅନୁରୂପ ଉପାୟ ଓ ମୂଲ୍ୟାଙ୍କନ ବିଧି ପ୍ରୟୋଗ କରି ଏହି ତିନି ବିଭବ ମଧ୍ୟରେ ଥିବା ସମ୍ପର୍କକୁ ମନେ ରଖିବାକୁ ହେବ ।




## (୨) ପରୀକ୍ଷା ଏକ ବିଡ଼ମ୍ବନାରେ ପରିଣତ ହେଲା

ବିଦ୍ୟାଳୟରେ ସମୂହ ଜୀବନଯାପନ, ଧନ୍ଦା ଆଦି ବୈଷୟିକ ବିଷୟର ପ୍ରବର୍ତ୍ତନ, ନୀତିଶିକ୍ଷା, ସାମାଜିକ ଶିକ୍ଷା, ଆନ୍ତର୍ଜାତିକ ମନୋଭାବ ସୃଷ୍ଟି ପାଇଁ ଶିକ୍ଷା ଆଦି କାର୍ଯ୍ୟକ୍ରମ ଓ ବିଭବ ଯେତେଦୂର ପ୍ରଗତିଶୀଳ ଚିନ୍ତାର ପରିଚାୟକ ହେଲେହେଁ ପରୀକ୍ଷାନ୍ତର୍ଭୁକ୍ତ ନ ହେଲେ ନିରର୍ଥକ ହେବ ବୋଲି ସାଧାରଣ ଧାରଣା ଦୃଢ଼ ହେଲା । ଏହାଦ୍ୱାରା ପରୀକ୍ଷାର ପ୍ରାଧାନ୍ୟ ବଢ଼ିଲା । ଭଲ କଥା । ବସ୍ତୁତଃ ପରୀକ୍ଷା ଯେପରି କରାଗଲା ତଦ୍ୱାରା ପ୍ରଗତିଶୀଳ ଚିନ୍ତାର ପ୍ରବର୍ତ୍ତନ ପାଇଁ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରାଗଲା । ଏଥିରେ ପ୍ରତ୍ୟନୁତ୍ତ (Feedback) ରହିବ ନାହିଁ । ମୌଳିକ ବିଦ୍ୟାଳୟର ପିଲାଙ୍କୁ ମୁହୂର୍ତ୍ତ, ଶୁଶ୍ରୂଷା, ମୃତ୍ୟୁ ଆଦି ଶବ୍ଦର ବନାନ ପଚାରି ମୌଳିକ ଶିକ୍ଷାର ମୂଲ୍ୟାଙ୍କନ କରାଗଲା । ବହୁମୁଖୀ ଶିକ୍ଷା ଯୋଜନା ଏନ୍.ସି.ସି., ବିଜ୍ଞାନ ଶିକ୍ଷା, କଲେଜରେ ତିନିବର୍ଷିଆ ଡିଗ୍ରୀ ପାଠର ପ୍ରବର୍ତ୍ତନ ଆଦି ସୁଦୂର ପ୍ରସାରୀ ଯୋଜନା ହେଲେ ସୁଦ୍ଧା ମାନଧାତିଆ ପରକ୍ଷା ଦ୍ୱାରା ଏସବୁକୁ ମାରି ଦିଆଯାଉଛି । ଶିକ୍ଷାର କଷଟିପଥର ପରୀକ୍ଷା, କିନ୍ତୁ ପରୀକ୍ଷା ମାଙ୍କଡ଼ା ପଥର ହେଲେ ଯେଉଁ ଶିକ୍ଷା ସୁନାକୁ ପରଖି ପାରିବ ? ଲୁହକୁ ଲିଟରରେ ମାପି ହେବ କି ? ପରୀକ୍ଷାକୁ ଛାଡ଼ି ପାରୁନାହୁଁ, କିନ୍ତୁ ଶିକ୍ଷାରେ କେତେ କଅଣ ପରିବର୍ତ୍ତନ ହେବା ସତ୍ତ୍ୱେ ପରୀକ୍ଷା କେଉଁ ସରୁଣା ଓ ପୁରାଣ ଯୁଗର ରହିଛି । ଏହା ଏକ ବିଡ଼ମ୍ବନା ନୁହେଁ କି ?

(୩) ପରୀକ୍ଷା ଏକ ବ୍ୟବସାୟ ହେଲା

ପ୍ରାଶ୍ନିକ, ପରୀକ୍ଷକ, ତତ୍ତ୍ୱାବଧାରକ ପ୍ରମୁଖ ଯେଉଁସବୁ ବ୍ୟକ୍ତି ଓ ଅନୁଷ୍ଠାନ ଏଥିରେ ସମ୍ପୃକ୍ତ ହେଲେ ସେମାନଙ୍କର ଏହା ହେଲା ବ୍ୟବସାୟ । ଖାତା ଖଣ୍ଡିକ ଭଲ କରି ଦେଖାଗଲା ନାହିଁ । କିଏ ଉତ୍ତର କାଗଜର ପୃଷ୍ଠା ସଂଖ୍ୟା ଗଣି କିଏ ବା ଅକ୍ଷରରେ ଟିକ୍‌ମାରି ଖାତା ଦେଖିବାର ଜଣାଯାଏ । ୭ମ ଶ୍ରେଣୀ ବୋର୍ଡ ପରୀକ୍ଷାରେ ସମ୍ବାଦପତ୍ର ପ୍ରବନ୍ଧ ୧୯୬୬, ୧୯୬୮ ଓ ୧୯୭୦ ମସିହାରେ, ବ୍ୟାୟାମ ୧୯୬୬ ଓ ୧୯୭୦ ମସିହାରେ ଇତ୍ୟାଦି ବିଷୟର ପୁନରାବୃତ୍ତି କରାଗଲା । ଟେଷ୍ଟ ପେପର, ପାଠ୍ୟପୁସ୍ତକ, ମାନେବହି, ସମ୍ଭାବିତ ପ୍ରଶ୍ନୋତ୍ତରରୁ ପ୍ରଶ୍ନ ଅବିକଳ ଉତ୍ତର ଦେବାର ବହୁ ଦୃଷ୍ଟାନ୍ତ ଅଛି । ଫଳରେ ଏହି ପ୍ରବଳ ବ୍ୟବସାୟର ବନ୍ୟାରେ ଶିକ୍ଷକ ତାଙ୍କର ନିଜତ୍ୱ ହରାଇ ଦେଲେ । ଶିକ୍ଷକ, ପ୍ରକାଶକ, ଅଭିଭାବକ ଆଦି ସମ୍ପୃକ୍ତ କର୍ମକର୍ତ୍ତା ଭଲ ଛାଡ଼ି ଭେଲରେ ମାତିଗଲେ । ସାର୍‌ଙ୍କ ପାଖରେ ଟିଉସନ ନକଲେ, ସାରଙ୍କ "ଗଣିତ ଶିକ୍ଷକ" ନ ପଢ଼ିଲେ ପାଠ ହେବ ନାହିଁ, ଏହି ଧାରଣା ପ୍ରବଳ ହେଲା । ବିନା ମାଡ଼ରେ ପାଠ ନାହିଁ ଯେପରି ପୁରୁଣା କଥାଟି ଆଜି ବି ନୂଆ, ସେହିପରି ବିନା ଟିଉସନରେ ପାଠ ନାହିଁ କଥାଟି ନୂଆ ହେଲେ ବି ସମସ୍ତଙ୍କର ଆଦର । ପରୀକ୍ଷକଙ୍କୁ ଧରାଧରି କରିବା ଏକ ବିଧିବଦ୍ଧ ବ୍ୟବସାୟ ହେଲାଣି । ଏ କୌଶଳ ଶିକ୍ଷା ଓ ପରୀକ୍ଷାର କୌଶଳକୁ ଟପିଗଲାଣି । ପରୀକ୍ଷା ବ୍ୟବସାୟରେ କଞ୍ଚା କଉଡ଼ି ପଖାଳ ଭାତ ।

(୪) ପରୀକ୍ଷା ପଥଭ୍ରଷ୍ଟ ପାପାଚାରୀ ହେଲା

ପରୀକ୍ଷାର ପ୍ରକୃତି ଓ ପ୍ରତିଶ୍ରୁତି ଯାହାବଳରେ ଏହା ପରୀକ୍ଷାରୁ ମୂଲ୍ୟାୟନ (from examination to evaluation) ହେଲା, ତାହା ବସ୍ତୁତଃ ଶବ୍ଦାଡ଼ମ୍ବର ମାତ୍ର । ଏହାର ତାତ୍ତ୍ୱିକ ବିଚାରରେ ଆମେ ଆକୃଷ୍ଟ ହେଲୁ ନାହିଁ । ସେ ସବୁ କଅଣ ?

(କ) ପୂର୍ବରୁ ସୂଚିତ ହୋଇଅଛି ଯେ ଶିକ୍ଷାନୁଭୂତି ଶିକ୍ଷାର ଉଦ୍ଦେଶ୍ୟ ଅନୁସାରେ ନିରୂପିତ ହୁଏ । ତେଣୁ ଏହି ଉଦ୍ଦେଶ୍ୟହିଁ ମୂଲ୍ୟାୟନର ବିଷୟବସ୍ତୁ ହେବ । ଛାତ୍ରର ବୁଦ୍ଧି, ଚରିତ୍ର ବା ସାଧାରଣ ସାମର୍ଥ୍ୟ ପ୍ରତି ଦୃଷ୍ଟି ଦିଆଗଲା ନାହିଁ । ଜ୍ଞାନ (Cognition) କର୍ମ (Conation) ଓ ଆବେଗ (affection) ଛାତ୍ରର ବୁଦ୍ଧି ଓ ବିକାଶର ମୂଲ୍ୟାୟନ ପାଇଁ ସୁଯୋଗ ରହିଲା ନାହିଁ । ଏହା ଫଳରେ ମୁଖସ୍ଥୀକରଣର ପ୍ରାବଲ୍ୟ, ବୈଫଲ୍ୟର ମାତ୍ରାଧିକ୍ୟ ଓ ଅସଦାଚରଣରେ ପ୍ରବୃତ୍ତି ବଢ଼ିବାକୁ ଲାଗିଲା ।

(ଖ) ଶିକ୍ଷାପ୍ରକ୍ରିୟା ପରି ମୂଲ୍ୟାୟନ ଏକ ନିରବଚ୍ଛିନ୍ନ କାର୍ଯ୍ୟକ୍ରମ ଅଟେ । ଯେ ଶିକ୍ଷକ, ସେହି ପରୀକ୍ଷକ ଓ ଯେଉଁଠି ଶିକ୍ଷା ସେଇଠି ପରୀକ୍ଷା, ଏହା ବରାବର ଚାଲିବ । ସପ୍ତମ ବା ଦ୍ୱାଦଶ ବା ତତ୍ତୁଲ୍ୟ ଶ୍ରେଣୀପରେ ପରୀକ୍ଷାଟିଏ କରିଦେଲେ ଆମ କାମ ହେବ ନାହିଁ । ସେଥିପାଇଁ ଅସାଧୁତା ଓ ଅସଦାଚରଣ ବଢ଼ି ଚାଲିଛି । ସେଥିପାଇଁ ୩୫ ରେ ଫେଲ୍ ଓ ୩୬ ରେ ପାଶ୍ । ଏଇଥି ଯୋଗୁଁ ମଧ୍ୟ ବିଦ୍ୟାଳୟରେ ଉପସ୍ଥାନ ଓ ଅନୁପସ୍ଥାନ ମଧ୍ୟରେ ପାର୍ଥକ୍ୟ ରହୁନାହିଁ । ଆଉ ମଧ୍ୟ ଶିକ୍ଷକ ଓ ଶିକ୍ଷାର୍ଥୀଙ୍କର ଶିକ୍ଷାପ୍ରକ୍ରିୟାରେ ଦାୟିତ୍ୱ ଓ ସହଯୋଗ ରହୁନାହିଁ । ମୂଲ୍ୟାୟନ ପାଇଁ ବିବରଣୀ (evidence) ସଂଗ୍ରହ କରାଯାଉ ଥିବ । ମୁଦାଲିଅର କମିସନ୍ ଏଥିପାଇଁ Cumulative Record କଥା କହିଗଲେ । ମାଧ୍ୟମିକ ଶିକ୍ଷାନୁଷ୍ଠାନ ପାଇଁ Card ପ୍ରସ୍ତୁତ ହୋଇ ଅଛି । ପ୍ରାଥମିକ ବିଦ୍ୟାଳୟକୁ ମୌଳିକ ଶିକ୍ଷାଭିମୁଖୀ କରିବା ଦୃଷ୍ଟିରୁ ଗୋଟିଏ Recrord cardର ନମୁନା ପ୍ରାଥମିକ ବିଦ୍ୟାଳୟରେ ପ୍ରଚଳନ କରିବା ପାଇଁ ଦିଆଯାଇଥିଲା । ଏଇ କେତେବର୍ଷ ତଳେ ଆମ ରାଜ୍ୟର ବୃତ୍ତି, ଶିକ୍ଷାନିର୍ଦ୍ଦେଶନା ସଂସ୍ଥା (State Bureo of Educational and vocational guidance) ଗୋଟିଏ ବିଧିବଦ୍ଧ ରେକର୍ଡ କାର୍ଡ ପ୍ରଣୟନ କରିଥିଲେ । ସେସବୁ ବି କାଗଜଚାଷ ଓ ସେଥିରେ ଉଇ ଚରୁଛି ।

(ଗ) ମୂଲ୍ୟାୟନ ପ୍ରକ୍ରିୟା ତେଣୁ କେବଳ ନିରବଚ୍ଛିନ୍ନ ହେବ ନାହିଁ, ଏହା ମଧ୍ୟ ବ୍ୟାପକ ହେବ । ପର୍ଯ୍ୟାପ୍ତ ହେବ । ଶିକ୍ଷାର ପ୍ରସ୍ତାବନା, ପ୍ରକ୍ରିୟା ଓ ପରିଣତି ପ୍ରତି ଦୃଷ୍ଟି ଦିଆଯିବ । ଶରୀର, ମନ ଓ ଆବେଗରେ ପରିବର୍ତ୍ତନ ସେଥିରେ ପ୍ରତିଫଳିତ ହେବ । ପାଠ ଓ ପାଠେତର ବିଷୟର ପରୀକ୍ଷା କରାଯିବ । ସେବେଳର ସପ୍ତମ ଶ୍ରେଣୀ ସାହିତ୍ୟ ବହିରେ ୧୧ଟି ଗଦ୍ୟ ଓ ୧୦ଟି ପଦ୍ୟ ଥିଲେ ସୁଦ୍ଧା ପ୍ରଶ୍ନରେ ନମ୍ବର ବିଭାଜନ ଯଥାକ୍ରମେ ୩୪ ଓ ୨୬ । କାହିଁକି ? ପୁଣି ୧୧ଟି ଗଦ୍ୟରୁ ବାଛି ସରଳାର୍ଥ ପାଇଁ ତିନୋଟି ଗଦ୍ୟ ପ୍ରଶ୍ନୋତ୍ତର ପାଇଁ ୪ଟି ଗଦ୍ୟ ପଢ଼ିଦେଲେ ଚଳିବ । ବାସ୍ତବରେ ଦୁଇଟି ସରଳାର୍ଥ ଓ ଗୋଟିଏ ପ୍ରଶ୍ନୋତ୍ତର କରିବାକୁ ପଡ଼େ । ଫଳରେ ୧୧ଟିରୁ ୩ଗୋଟି ଗଦ୍ୟ ପଢ଼ିଦେଲେ କାମ ଚଳିବ । ଏଥିପାଇଁ ଶିକ୍ଷା, ଶିକ୍ଷାୟତନ ଓ ଶିକ୍ଷକ ଦରକାର ନାହିଁ । ୧୧ଟିରୁ ୩ଟି ବାଛିବା ପାଇଁ ଦରକାର ଚତୁରତା, ଶଠତା ନୋହିଲେ ଜ୍ୟୋତିଷ ବିଦ୍ୟା । ତେଣୁ ମୂଲ୍ୟାୟନ ପର୍ଯ୍ୟାପ୍ତ ହେବା ପରିବର୍ତ୍ତେ ପରୀକ୍ଷାରେ ପାଠ୍ୟକ୍ରମ ପୂରାପୂରି ପ୍ରତି ହେଉ ନାହିଁ । ପ୍ରଶ୍ନ ବି ଏପରି ମାମୁଲି ଯେ ପାଠ ପଢ଼ିବାର ଆବଶ୍ୟକତା ନାହିଁ । "ଏହି ଗଦ୍ୟାଂଶଟି ଭୀମ ଭୋଇରୁ ଉଦ୍ଧୃତ ।" "ଆତ୍ମିକ ଶିକ୍ଷା ବଡ଼ କଠିନ ପାଠ"-ଇତ୍ୟାଦି ଉତ୍ତର ଦେବା ପାଇଁ ସ୍କୁଲ, କଲେଜର ଆବଶ୍ୟକତା ନାହିଁ । ଆବେଗ, ଆତ୍ମା, ମନୋଭାବ, ସୌନ୍ଦର୍ଯ୍ୟାନୁଭୂତି,

ଆତ୍ମୋପଲବ୍‌ଧି ନିଷ୍ଠା, ସାମାଜିକତା ଇତ୍ୟାଦି କଅଣ ପରୀକ୍ଷିତ ହେବ ନାହିଁ ? ଖଣ୍ଡିଏ ବି ପ୍ରଶ୍ନ ଆମ ଆଖିରେ ପଡ଼େ ନାହିଁ । ତେଣୁ ଆମ କଥା ଯେତେ ଆମ କାମ ସେତେ ନୁହେଁ ।

(ଘ) ମୂଲ୍ୟାୟନ ଗୋଟିଏ ଶିକ୍ଷଣୀୟ ପ୍ରକ୍ରିୟା । ପାରମ୍ପରିକ ପରୀକ୍ଷାରେ 'ପଦ ପଠିତମ୍ ତଦ ଶ୍ରୀ ଗୁରବେ ନିବେଦିତମ୍' ପରି, ମୂଲ୍ୟାୟନରେ ପରିବର୍ତ୍ତନ ବରଂ ଦୃଢ଼ ହୁଏ । ମୂଲ୍ୟାୟନ ଓ ଶିକ୍ଷଣପ୍ରକ୍ରିୟା ମଧ୍ୟରେ ଘାତ-ପ୍ରତିଘାତ କ୍ରିୟା ଚାଲେ । (Evaluation Learning process) ପାଠଶାଳା ଓ ପରିବାର ମଧ୍ୟରେ ସମ୍ପର୍କ ବଢ଼େ । ଦୋଷଲଦିବା, ଗାଳିଦେବା ପରି ଅସୁସ୍ଥ ପରିବେଶ ରହେ ନାହିଁ ।

(ଙ) ମୂଲ୍ୟାୟନ ଯେ କେବଳ ବିଦ୍ୟାର୍ଥୀର କୃତିର ମାନ ନିର୍ଦ୍ଧାରଣ କରେ ତାହାନୁହେଁ, ଏହା ମଧ୍ୟ ଉନ୍ନତି ବିଧାନ କରେ । ପାଠ୍ୟ ତାଲିକା, ପାଠ୍ୟପୁସ୍ତକ, ପଠନ-ପାଠନ-ପ୍ରକ୍ରିୟା ଓ ମୂଲ୍ୟାୟନର ମଧ୍ୟ ମାନନିର୍ଦ୍ଧାରଣ କରାଯାଏ । ଏଥିରେ ଥିବା ଦୋଷତ୍ରୁଟି ଦୂର କରାଯାଏ । ଛାତ୍ରମାନଙ୍କର ଯେଉଁ ଦୁର୍ବଳତା ଥାଏ ତାହା ସ୍ଥିର କରାଯାଇ ଦୂର କରିବାର ଉଦ୍ୟମ ହୁଏ । ଉନ୍ନତି ବିଧାନପାଇଁ ମୂଲ୍ୟାୟନ, ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମାର୍ଗ ଦର୍ଶନ (Guidance) ଏବଂ ବିଦ୍ୟାଳୟ ଉନ୍ନୟନ କାର୍ଯ୍ୟକ୍ରମ (School improvement programme) ଏହି କଥାରୁ ଆରମ୍ଭ କରାଯାଇ ପାରିବ । ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ ବୋର୍ଡ ଆଦି ଶିକ୍ଷାସଂସ୍ଥା ଓ ବିଭିନ୍ନ ଶିକ୍ଷାସଂଗଠନ ଦ୍ୱାରା ବିଭିନ୍ନ ପରୀକ୍ଷା ହେଉଛି, କିନ୍ତୁ କାହିଁ ? ଦିନେ ହେଲେ ମୂଲ୍ୟାୟନର ଏହି ଦିଗ ଅର୍ଥାତ୍ ପ୍ରତ୍ୟୁନୁଭ ବିଷୟରେ ବିଚାର କରାଯାଉ ନାହିଁ । ବୈଫଲ୍ୟର ପରିମାଣ ଯେତେ ହେଉପଛକେ, କୌଣସି ଅନୁଷ୍ଠାନର ସବୁ ପିଲା ଫେଲ ହୁଅନ୍ତୁ ବା ତୃତୀୟ ଶ୍ରେଣୀରେ (Third class) ନାମକୁ ମାତ୍ର ପାଶ କରନ୍ତୁ ଏସବୁ ପର୍ଯ୍ୟାଲୋଚନା କରି (୧) ଉଦ୍ଦେଶ୍ୟ ଅସାଧ୍ୟ ହେଲାକି, (୨) ଉପାୟ ଦୁର୍ବଳ ହେଲା କି ? କିମ୍ବା (୩) ମୂଲ୍ୟାୟନ ଯଥାର୍ଥ ହେଲା ନାହିଁ କି ? ବିଚାରିବାର କଥା ।

(ଚ) ମୂଲ୍ୟାୟନରେ ପ୍ରୟୋଗାତ୍ମକ ମନୋଭାବ ରହିବ । ଏହା ଏକ ବୈଜ୍ଞାନିକ ପ୍ରକ୍ରିୟା ଓ ଏଥିପାଇଁ କୁଶଳୀ ଓ ଅଭିଜ୍ଞ ଲୋକ ରହିବା ଉଚିତ । ଏହାର ବିଧି, ବ୍ୟବସ୍ଥା ଓ କୌଶଳକୁ ଶାଣିତ ଓ ମାର୍ଜିତ କରିବାକୁ ହେବ । ଏହାକୁ କେବଳ ବ୍ୟକ୍ତିନିରପେକ୍ଷ (objective) କଲେ ଚଳିବ ନାହିଁ । ବରଂ ଗୁରୁତ୍ୱ ଦିଆଯିବ, ଏହାକୁ ଉଦ୍ଦେଶ୍ୟାଭିମୁଖୀ କରିବା ପାଇଁ । ସେଥିପାଇଁ ପ୍ରାଶ୍ନିକମାନଙ୍କୁ ଟ୍ରେନିଂ ଦିଆଯାଉଛି । ପ୍ରତ୍ୟେକ ରାଜ୍ୟରେ ମୂଲ୍ୟାୟନ ସଂସ୍ଥା ଗଠନ କରାଯାଉଛି ।

## (୫) ପରୀକ୍ଷା-ଅଷ୍ଟିଚ୍ଛୁରୀ ତଣ୍ଟି କାଟୁଛି

ମୂଲ୍ୟାୟନ ପ୍ରକ୍ରିୟା ଶିକ୍ଷକ, ଅଭିଭାବକ, ଅଧ୍ୟକ୍ଷଙ୍କ ସହଯୋଗିତାରେ ହେବା ଉଚିତ। ଏହା ଏକ ନିରବଚ୍ଛିନ୍ନ ଧାରା ହୋଇ ରହିବ ବୋଲି ପୂର୍ବରୁ ଆଲୋଚନା କରାଯାଇ ଅଛି। ସେ ଦୃଷ୍ଟିରୁ (External examination) ଯେତେ କମ୍ ହେବ ବୋଲି ସୁପାରିଶ କରାଯାଇଛି। ମୁଦାଲିଅର କମିଶନ୍ ବାହାର ପରୀକ୍ଷାର ସଂଖ୍ୟା କମାଇ ଦେବା ପକ୍ଷରେ ଯୁକ୍ତି ବାଢ଼ି କହନ୍ତି ଯେ, ମାଟ୍ରିକ୍ୟୁଲେସନ ଶେଷ ପର୍ଯ୍ୟନ୍ତ ଗୋଟିଏ ବାହାର ପରୀକ୍ଷା ହେବା ଉଚିତ। କୋଠାରୀ କମିଶନ ସେହି ମତ ପୋଷଣ କରି କୌଣସି କୌଣସି ସ୍କୁଲ ଯଦି ବାହାର ପରୀକ୍ଷା ଗ୍ରହଣ କରିବାକୁ ନ ଚାହାନ୍ତି, ସେହି ସ୍ୱାଧୀନତା ଦେବା ପକ୍ଷରେ ସୁପାରିଶ କରିଛନ୍ତି।

ଏହାର ଅର୍ଥ କେବେହେଁ ନୁହେଁ ଯେ ପରୀକ୍ଷାର ସ୍ଥାନ ନାହିଁ। ନାଁ, ପରୀକ୍ଷାର ସ୍ଥାନ ନିଶ୍ଚୟ ରହିବ। ଆଭ୍ୟନ୍ତରୀଣ ମୂଲ୍ୟାୟନ (Internal assessment) ବିଧିବଦ୍ଧ ଭାବରେ ହେବ। ଏହାଦ୍ୱାରା ଅଧ୍ୟୟନ ପ୍ରବୃତ୍ତି ବଢ଼ିବ। ଅଧ୍ୟୟନ-ଅଧ୍ୟାପନାର ସିନା ମୂଲ୍ୟାୟନ ହେବ; ଏହା ନଥିଲେ ପରୀକ୍ଷା କଅଣ କରିବ ? ଏବେ ଶିରୋନାସ୍ତି କିନ୍ତୁ ଅତି ଉତ୍କଟ ଶିରୋବ୍ୟଥା। ଅଧ୍ୟୟନ-ଅଧ୍ୟାପନା-ମୂଲ୍ୟାୟନର ନିଗୂଢ଼ ସମ୍ପର୍କ ବୁଝି ତାକୁ ପ୍ରତିଷ୍ଠା କରିବାକୁ ହେବ। ଶିକ୍ଷାପ୍ରଶାସନ ମଧ୍ୟ ସୁଦୃଢ଼ ହେବ।

ଆଭ୍ୟନ୍ତରୀଣ ମୂଲ୍ୟାଙ୍କନ ସମ୍ବନ୍ଧରେ ଅଧିକ ଚିନ୍ତା ଦେବାକୁ ହେବ। ଆମ ବିଶ୍ୱବିଦ୍ୟାଳୟରେ ଏହାର ପରୀକ୍ଷା କରାଯାଇ ଥିଲା। ଏଥିରେ ଆମ ବୈଫଲ୍ୟ ବଡ଼ ଯନ୍ତ୍ରଣାଦାୟକ ହେବାର କଥା। ନୀତି ନିର୍ଦ୍ଧାରଣ ପାଇଁ କାର୍ଯ୍ୟକାରୀ ପନ୍ଥା ସ୍ଥିର କରିବାକୁ ହେବ।

ଏଇ କେତେ ବର୍ଷ ହେଲା ବହୁ ବିଚାର ଚାଲିଛି। ରାଧାକୃଷ୍ଣନ୍‌ଙ୍କ (୧୯୪୯) ମତରେ ଆମେ ଯଦି ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଗୋଟିଏ ସଂସ୍କାର କଥା ଭାବୁ ସେଇଟା ହେବ ପରୀକ୍ଷାରେ ସଂସ୍କାର। ଏହାଠାରୁ ଅଧିକ ଉତ୍କଟତା ପ୍ରକାଶ କରିବାର ଭାଷା ହୋଇ ନ ପାରେ। ଭାରତ ସରକାର ମଧ୍ୟ ନାନା ପରୀକ୍ଷା, ପ୍ରୟୋଗ ଓ ପ୍ରଚେଷ୍ଟା କରିଛନ୍ତି। ୧୯୬୭ ମସିହା ଡିସେମ୍ବର ୨୭ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ ଆକମିରଠାରେ ଦେଶର ମାଧ୍ୟମିକ ଶିକ୍ଷାବୋର୍ଡର ସଭାପତି ଓ ସମ୍ପାଦକମାନଙ୍କର ସମ୍ମିଳନୀ ହୋଇଥିଲା। ସେଥିରେ ପରୀକ୍ଷା ପଦ୍ଧତିରେ ସଂସ୍କାର କରିବା ପାଇଁ ଯେଉଁ କେତୋଟି ସର୍ବନିମ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଗଲା ସେସବୁ ନିମ୍ନରେ ଲେଖା ଯାଉଛି।

□□□

# ସାନ ପିଲାଠାରୁ ବଡ଼ ମନୁଷ୍ୟ

ଏହି ଶିରୋନାମା ସାଧନାର ସ୍ମାରକୀ ଅଟେ । ସାନ ବୟସର ନମନୀୟତାକୁ କିପରି ବଡ଼ ମନୁଷ୍ୟ ହେବାରେ ସହାୟକ କରିହେବ ଏହାର ସୂଚନା ମିଳେ । ସ୍ୱୀୟ ଜୀବନକୁ ତଥା ଶିକ୍ଷାର୍ଥୀ ଜୀବନକୁ ଏକ ଘାତ ପ୍ରତିଘାତ ପ୍ରକ୍ରିୟାରେ ପ୍ରଭାବିତ କରି ଶିକ୍ଷକ ପୁନିର୍ଦ୍ଦେଶିତ କରି ପାରନ୍ତି । ନିଜ ଜୀବନଦର୍ଶନକୁ ପ୍ରଭାବିତ କରି ପାରନ୍ତି ଓ ବିଦ୍ୟାର୍ଥୀମାନଙ୍କୁ ମାନବିକ ମୂଲ୍ୟବୋଧ ଦେଇପାରନ୍ତି । ଏପରି ଦୃଷ୍ଟିକୋଣରୁ ଏହି ଆଲୋଚନା ଶିକ୍ଷକଙ୍କ ପାଇଁ ଉପାଦେୟ ହେଲେ ହେଁ ଏ ଦିଗରେ ଅଗ୍ରସର ହେବା ଏହି ପ୍ରବନ୍ଧର ଲକ୍ଷ୍ୟ ନୁହେଁ ।

ପୁନଶ୍ଚ ସାଧନା ଓ ସିଦ୍ଧିକୁ ଛାଡ଼ି କେବଳ ବୟସର ଅଗ୍ରଗତିରେ ମନୁଷ୍ୟ ନିଜ ଜୀବନରେ ସାନରୁ ବଡ଼ ହୁଏ । ଅପ୍ରାପ୍ତ ବୟସର ବାଳକ କାଳକ୍ରମେ ବୟଃପ୍ରାପ୍ତି ହୋଇଥାଏ । ଏହି ପ୍ରକ୍ରିୟାର ଅଭିଜ୍ଞତା ନିଜ ଜୀବନର ପୁଞ୍ଜି ହୋଇ ରହେ ଏବଂ ଅନ୍ୟ ଜୀବନଯାତ୍ରୀ ମାନଙ୍କ ପାଇଁ ମାର୍ଗ ଦର୍ଶନ ଦିଏ । କିନ୍ତୁ ଅଭିଜ୍ଞତା ଭିନ୍ନ ଭିନ୍ନ ହେଲେ ହେଁ ବୟଃପ୍ରାପ୍ତିର ପ୍ରକ୍ରିୟାରେ ବିଭିନ୍ନ ଅବସ୍ଥା ଗୁଡ଼ିକ ନିରବଛିନ୍ନ କ୍ରମରେ ରହିଯାଏ, ଏହାହିଁ ସତ୍ୟ । କୌଣସି ଦୁଇ କ୍ରମାଗତ ଅବସ୍ଥା ମଧ୍ୟରେ ଦୁର୍ଭେଦ୍ୟ ପ୍ରାଚୀର ନ ଥାଏ । ସେ ଗୁଡ଼ିକ କ୍ରମିକ ଓ କ୍ରମାଗତ ଭାବରେ ନିରବଛିନ୍ନ । ଏ ପ୍ରକାର ଆଲୋଚନା ପାଇଁ ଆବଶ୍ୟକତା ଥିଲେ ହେଁ ଏ ପ୍ରବନ୍ଧର ଲକ୍ଷ୍ୟ ଭିନ୍ନ ଅଟେ ।

ଶିକ୍ଷାୟତନ ଆଜି ସୀମିତ ନୁହେଁ । ଏହାର ପରିସର ସୁଦୂରପ୍ରସାରୀ ହୋଇଅଛି । ଏଗାର ବର୍ଷ ବୟସ ହେବା ଯାଏଁ ଶିଶୁ ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରିଥାଏ । ସେହିପରି ତେର ଓ ଚଉଦ ବର୍ଷ ହେବାଯାଏଁ ଶିକ୍ଷାର୍ଥୀ ମିଡ୍‌ଲ ସ୍କୁଲ ଓ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରିବାର କଥା । ସେହିପରି ପ୍ରତ୍ୟେକ ଶିକ୍ଷାୟତନ ପାଇଁ ବା ଶିକ୍ଷାର ସ୍ତର ପାଇଁ ଶିକ୍ଷାର୍ଥୀର ବୟସ ସୀମା ନିରୂପିତ ହୋଇଥାଏ । ଅତଏବ ଶିକ୍ଷାୟତନର ସନ୍ନିବେଶ ସେହି ବୟସସୀମା ମଧ୍ୟରେ ନିର୍ଦ୍ଦିଷ୍ଟ ଥାଏ । ଏହା ଆଜି ଅସତ୍ୟ ପ୍ରମାଣିତ ହୋଇଛି । ସତ୍ୟ ହେଉଛି, ଜୀବନର ଯେ କୌଣସି ମୁହୂର୍ତ୍ତ ଜୀବନ ଯାତ୍ରାର ଏକ ବିନ୍ଦୁ । ସେହି ମୁହୂର୍ତ୍ତର ଅତୀତ ଅଛି, ଭବିଷ୍ୟତ ଅଛି ଓ ବର୍ତ୍ତମାନ ଆମେ ଦେଖୁଛୁଁ । ଜୀବନଯାତ୍ରା ହେଉଛି ଗୋଟିଏ ବିକାଶର ଧାରା । ଏହା ଏକ ଗତିଶୀଳ ପ୍ରବାହ । ଜଳ ପ୍ରବାହରେ କୌଣସି ଗୋଟିଏ ସ୍ଥାନର ବିନ୍ଦୁର ବିଚାର ପ୍ରବାହଠାରୁ ବିଛିନ୍ନ କରି କରାଯାଇ ପାରେ ନାହିଁ । ସେହିପରି ଜୀବନ ଯାତ୍ରାରେ କୌଣସି ଗୋଟିଏ ସମୟର ଅବସ୍ଥାକୁ କ୍ଷିପ୍ରତର ବା ମନ୍ଥର କରିବା, ନିର୍ଦ୍ଦେଶିତ କରିବା, ପ୍ରଭାବିତ କରିବା ବା ମୋଡ଼ି

ଦେବା ପାଇଁ ଅତୀତ ଓ ଭବିଷ୍ୟତର ବିଚାର ନେବାକୁ ପଡ଼ିବ । ବିକାଶର ସ୍ରୋତ ନିରବଚ୍ଛିନ୍ନ ଗତିରେ ଚାଲିଛି ।

ଏହାହିଁ ଏହି ପ୍ରବନ୍ଧର ପ୍ରଥମ ଦିଗ । ଦ୍ୱିତୀୟ ଦିଗଟି ହେଉଛି, ଯେ କୌଣସି ବିଦ୍ୟାୟତନର ବିଦ୍ୟାର୍ଥୀ ଜଣକ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ବ୍ୟକ୍ତିସତ୍ତା ନୁହନ୍ତି । ପୂର୍ବରୁ ସୂଚିତ ହୋଇଛି ସେ ଏହି ବିଦ୍ୟାର୍ଥୀଙ୍କର ସାନ ବେଳ ଥିଲା ଓ ବଡ଼ ମନୁଷ୍ୟ ହେବାର ସମୟ ଓ ସମ୍ଭାବନା ଅଛି । ଏହାଛଡ଼ା, ସେ ଏହି ମୁହୂର୍ତ୍ତ ଅନ୍ୟମାନଙ୍କ ସହିତ ସଂପୃକ୍ତ । ପିତାମାତାଦି ଗୁରୁଜନ ଅଛନ୍ତି ଓ ଭାଇ ଭଗିନୀ ଆଦି ସାନ ସାନ ପିଲା ଅଛନ୍ତି । ସେ ଏପରି ଗୋଟିଏ ସମାଜର ପ୍ରାଣୀ, ଯେଉଁଠି ତାଙ୍କ ଠାରୁ ଛୋଟ, ତାଙ୍କ ବୟସର ଓ ବଡ଼ ଅନେକ ପ୍ରାଣୀ ଅଛନ୍ତି । ସେ ଯେଉଁ ମୁହୂର୍ତ୍ତରେ ଶିକ୍ଷା ପାଉଛନ୍ତି, ସେ ମୁହୂର୍ତ୍ତରେ ବା ଅନ୍ୟ ମୁହୂର୍ତ୍ତରେ ତାଙ୍କ ଭଳି ଓ ତାଙ୍କ ବୟସର ଅନ୍ୟ ପିଲା ଶିକ୍ଷା ପାଉଛନ୍ତି ବା ଶିକ୍ଷା ପାଇବାକୁ ଆଗ୍ରହୀ ହୋଇ ରହିଛନ୍ତି । ତାଙ୍କଠାରୁ ସାନ ଓ ଖୁବ୍ ସାନ, ବଡ଼ ଓ ବୟସ୍କ ଏପରି ବିଭିନ୍ନ ବୟସର ଶିକ୍ଷାର୍ଥୀମାନେ ଜ୍ଞାନ ପାଉଛନ୍ତି ବା ଜ୍ଞାନପିପାସା ମେଣ୍ଟାଇ ପାରୁ ନାହାନ୍ତି । ସେ ଯେଉଁ ଶିକ୍ଷାନୁଷ୍ଠାନରେ ଶିକ୍ଷା ପାଉଥିଲେ, ଆଜି ସେଠାରେ ବି ଶିକ୍ଷା ଚାଲିଛି ଓ ପୁଣି ସେ ଯେଉଁ ଅନୁଷ୍ଠାନରେ ଯୋଗ ଦେବାର କଥା, ସେଠି ଶିକ୍ଷା ଦିଆଯାଉଛି । ସାନ ପିଲାଠାରୁ ବଡ଼ ମନୁଷ୍ୟ ପର୍ଯ୍ୟନ୍ତ ସଂପୃକ୍ତ ହୋଇ ସମସ୍ତେ ରହିଛନ୍ତି, ସମ୍ପର୍କ ମଧ୍ୟ ସୀମିତ ନୁହେଁ ।

ତୃତୀୟ ଦିଗଟି ହେଉଛି, ସମାଜ କେବଳ ପରସ୍ପର ସଂପୃକ୍ତ ନୁହେଁ, (ବ୍ୟକ୍ତିର ନିଜ ଦୃଷ୍ଟିରୁ ଓ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ) ଏହା ମଧ୍ୟ ଗତିଶୀଳ । ଏହା ସ୍ଥାଣୁ ଓ ସ୍ଥିର ନୁହେଁ । ଯେପରି ବ୍ୟକ୍ତିର ପ୍ରତି ମୁହୂର୍ତ୍ତ ଅଜଣା ଓ ଅନାୟାସରେ ଅତୀତର ଅପାଶୋରା ଅନ୍ତମଧ୍ୟକୁ ଚାଲିଯାଉଛି ଓ ଅନାଗତ ତଥା ଅଚିନ୍ତ୍ୟ ଭବିଷ୍ୟତରୁ ମୁହୂର୍ତ୍ତମାନ କ୍ଷରି ଆସି ବର୍ତ୍ତମାନର ଆସନ ମାଡ଼ି ବସୁଛି । ଠିକ୍ ସେହିପରି ସମାଜର ଚକ୍ର ଅବିରତ ଗଡ଼ି ଚାଲିଛି । ଯେତେବେଳେ ବ୍ୟକ୍ତିର ସମଷ୍ଟିରେ ସମାଜ ତଥା ସମାଜର ଉପାଦାନ ଭାବରେ ବ୍ୟକ୍ତି, ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ଅଛି, ସେତେବେଳେ ସମାଜର ଗତିଶୀଳତା ଯେ କେତେ ଦୂର ଜଟିଳତା ଓ କଞ୍ଜାଳ ସୃଷ୍ଟି କରୁଥିବ, ଏହା ସହଜରେ ଅନୁମେୟ ।

ଉଲ୍ଲିଖିତ ଆଲୋଚନାରୁ ଏହା ସ୍ପଷ୍ଟ ହୁଏ ଯେ ଶିକ୍ଷାର ସ୍ୱରୂପରେ ବୈପ୍ଳବିକ ପରିବର୍ତ୍ତନ ହୋଇଅଛି । ଶିକ୍ଷା ଏକ ଜୀବନବ୍ୟାପୀ ପ୍ରକ୍ରିୟାରେ ପରିଣତ ହୋଇଅଛି ଓ ଆମ୍ଭେମାନେ କ୍ରମେ ଗୋଟିଏ ଶିକ୍ଷଣ ସମାଜ (Learning Society) ଆଡକୁ ଅଗ୍ରସର ହେଉଅଛୁଁ । ଊନବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଏପରି ଏକ ଧାରଣା ସର୍ବବାଦୀସମ୍ମତ ଥିଲା ଯେ ବ୍ୟକ୍ତିର ଜୀବନ କାଳକୁ ଦୁଇ ଭାଗରେ ବିଭକ୍ତ

କରିହେବ । ଏହି ଦୁଇ ଭାଗ ଅସମାନ, ପ୍ରଥମ ଭାଗ ସାଧାରଣତଃ ଛୋଟ । ଜନ୍ମରୁ ଆରମ୍ଭ ହୋଇ ପ୍ରଥମ ଭାଗ ଏପରି ଏକ ବୟସରେ ଶେଷ ହୁଏ, ଯେଉଁ ସମୟକୁ ପ୍ରତ୍ୟେକ ଦେଶ ନିଜର ସମ୍ବଳ ଓ ସୁବିଧା ଦୃଷ୍ଟିରୁ ସ୍ଥିର କରେ । ଏହି ସମୟକୁ ସ୍କୁଲ ଛାଡ଼ିବା ବୟସ କୁହାଯାଏ । ଜୀବନର ଏହି ପ୍ରଥମ ଭାଗରେ ଅର୍ଥାତ୍ ସ୍କୁଲ ଛାଡ଼ିବା ବୟସ ହେବା ଯାଏଁ ଜ୍ଞାନ ଅର୍ଜନ କରିବାକୁ ପଡ଼େ, ନୂତନ ଧାରଣା ଗ୍ରହଣ କରିବାକୁ ହୁଏ ଓ ଉନ୍ନତ ଆଚରଣର ଅଭ୍ୟାସ ଗଠନ କରାଯାଏ । ଏହା ଆଶା କରାଯାଇଥାଏ ଯେ ଏହି ସବୁ ଜ୍ଞାନ, ଧାରଣ, ଅଭ୍ୟାସ ଓ ତାଲିମ ଫଳରେ ମନୁଷ୍ୟ ସ୍ୱୀୟ ଜୀବନର ଯେ କୌଣସି ସ୍ଥିତି ପାଇଁ କର୍ତ୍ତବ୍ୟ କରି ପାରିବ ଓ ସମର୍ଥ ହୋଇପାରିବ । ସ୍କୁଲ ଛାଡ଼ିବା ବୟସ ସବୁ ଦେଶରେ ସମାନ ନଥିଲା ଓ ବର୍ତ୍ତମାନ ସମାନ ନୁହେଁ । କିନ୍ତୁ ଏଇଠାରେ ଜୀବନର ପ୍ରସ୍ତୁତି ପର୍ଯ୍ୟାୟ ସରୁ ଥିଲା ଓ ସେଠାରୁ ଦ୍ୱିତୀୟ ଭାଗ ବା ବୟସ୍କ ଜୀବନ ଆରମ୍ଭ ହେଉଥିଲା । ଅତଏବ ଥରେ ଓ ଗୋଟିଏ ପର୍ଯ୍ୟାୟରେ ତାଲିମ ପାଇଗଲେ ଏହା କାଳ କାଳ ପାଇଁ ଯଥେଷ୍ଟ ହେଉଥିଲା । ଏହା ଫଳରେ ଏହି ଥରକର ଓ ପ୍ରଥମ ପର୍ଯ୍ୟାୟର ଜ୍ଞାନକୁ ସର୍ବାଧିକ ଓ ପର୍ଯ୍ୟାପ୍ତ କରିବା ପାଇଁ ଦୃଷ୍ଟି ରଖାଯାଉଥିଲା । ଏହା ଜୀବନ ପାଇଁ ପ୍ରସ୍ତୁତିର ପର୍ବ । ଆଉ ଏହା ମିଳିବ ନାହିଁ । ତେଣୁ ଏହି ପ୍ରଥମ ପର୍ଯ୍ୟାୟକୁ ପ୍ରାଥମିକ, ନିମ୍ନମାଧ୍ୟମିକ, ମାଧ୍ୟମିକ ସ୍କୁଲ ଆଦି କହୁଁ ପଛକେ ଯେତେ ବେଶୀ ପାଠ ଓ ଯେତେ ଅଧିକ ପାଠର ସମୟ ଦେଇ ହେବ ସେଥିପାଇଁ ଯତ୍ନ କରାଯାଉଥିଲା । ଗୋଟିଏ ଶିକ୍ଷା ସ୍ତରରୁ ଅନ୍ୟ ସ୍ତର ମଧ୍ୟରେ ଦ୍ୱିରୁକ୍ତି ଯଥେଷ୍ଟ ଥିଲା । ପ୍ରତ୍ୟେକ ସ୍ତରର ପାଠ ଯେପରି ଜୀବନର ପ୍ରସ୍ତୁତିରେ ସହାୟକ ହେବ ସେଥିପାଇଁ ଧ୍ୟାନ ରହିଥିଲା । ଏହାକୁ ଅନୁସରଣ କରି କେତେ ବର୍ଷ ତଳେ ଆମ ମାଇନର ସ୍କୁଲ ପିଲା ବସ୍‌ରେ ଜମି ମାପିବା, ଚିକିତ୍ସା କରିବା ଆଦି ଜ୍ଞାନ ପାଇଥିଲା । ସ୍କୁଲ ପାଠ ସରିଗଲେ ଆଉ ପାଠ ପଢ଼ିବାର ସୁଯୋଗ ମିଳିବ ନାହିଁ, ଏହା ଶିକ୍ଷାର୍ଥୀ, ଶିକ୍ଷକ ଓ ଅଭିଭାବକଙ୍କ ପାଇଁ ପ୍ରେରଣାଦାୟକ ଥିଲା । ଆମ ରାଜ୍ୟରେ ସ୍କୁଲ ପାଠର ସମୟ ୧୨ ବର୍ଷ ଥିଲା, ଏବେ ଏହା ୧୦ ବର୍ଷ ହୋଇଛି ।

ଏହା ସତ୍ୟ ଯେ ଜଣେ କେହି ସ୍କୁଲର ନିୟମିତ ଅଧ୍ୟୟନ ଛାଡ଼ି ଦେଲେ ତଥା ଜୀବନ ଓ ଜୀବିକା କ୍ଷେତ୍ରରେ ପଦାର୍ପଣ କଲେ ତାଙ୍କ ଶିକ୍ଷା ଶେଷ ହୁଏ ନାହିଁ । ବସ୍ତୁତଃ ଶିକ୍ଷା ହେଉଛି ଏକ ନିରବଛିନ୍ନ ପ୍ରକ୍ରିୟା ଓ ଏହା ଜୀବନଟା ଯାକ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଚାଲିଛି । ଶିକ୍ଷାର ଏହି ନିରବଛିନ୍ନ ଓ ଜୀବନବ୍ୟାପୀ ନୀତି ଫଳରେ ସାନ ପିଲାଠାରୁ ବଡ଼ ମନୁଷ୍ୟ ଯାଏଁ ସମସ୍ତଙ୍କ ପାଇଁ ସମୁଚିତ ଶିକ୍ଷା ବ୍ୟବସ୍ଥା କରିବାକୁ ହେବ । ପ୍ରସିଦ୍ଧ ନୃତତ୍ତ୍ୱ ବିଶାରଦା ମାର୍‌ଗାରେଟ୍ ମିଡ୍ (Margaret

mead) ତେଣୁ ଘୋଷଣା କରନ୍ତି, "ଆମ୍ଭେମାନେ ବର୍ତ୍ତମାନ ଏପରି ବେଳରେ ପହଞ୍ଚିଛୁ ଯେତେବେଳେ ଗତକାଲି ଯାହା କାହାରିକୁ ଜଣା ନଥିଲା ସେ ବିଷୟରେ ଲୋକମାନଙ୍କୁ ଆଜି ଶିକ୍ଷା ଦେବାକୁ ପଡ଼ିବ। ଆହୁରି ମଧ୍ୟ ଯାହା ଏଯାଏଁ କାହାରିକୁ ଜଣା ନାହିଁ କିନ୍ତୁ ଯାହା କେତେକ ଲୋକଙ୍କୁ କାଲି ଅବଶ୍ୟ ଜାଣିବାକୁ ପଡ଼ିବ, ସେଥିପାଇଁ ଲୋକମାନଙ୍କୁ ଆମ ବିଦ୍ୟାଳୟରେ ପ୍ରସ୍ତୁତ କରିବାକୁ ହେବ।"

ଏହି ପରିସ୍ଥିତିରେ ଆମ ମିଡ଼ିଲ ସ୍କୁଲ ଓ ଶ୍ରେଣୀଗୁଡ଼ିକର ଭୂମିକା ସମ୍ବନ୍ଧରେ ସବିଶେଷ ବିଚାର କରିବା ଏହି ପ୍ରବନ୍ଧର ଅନ୍ୟତମ ଉଦ୍ଦେଶ୍ୟ। ୧୯୭୮ ମସିହା ସେପ୍ଟେମ୍ବର ସୁଦ୍ଧା ଏ ସବୁର ସଂଖ୍ୟା ହେଉଛି:-

| | | |
|---|---|---|
| (୧) | ଷଷ୍ଠ ଓ ସପ୍ତମ ଶ୍ରେଣୀ ବିଶିଷ୍ଟ ସ୍କୁଲ | ୪୧୦୫ |
| (୨) | (କ) ପ୍ରଥମରୁ ୭ମ ଶ୍ରେଣୀ ଓ | |
| | (ଖ) ୪ର୍ଥରୁ ୭ମ ଶ୍ରେଣୀ ବିଶିଷ୍ଟ ସ୍କୁଲ .... | ୨୪୦୧ |
| (୩) | ଷଷ୍ଠ, ସପ୍ତମ ଶ୍ରେଣୀ ସଂଲଗ୍ନ ହାଇସ୍କୁଲ .... | ୫୫୫ |
| | ମୋଟ .... | ୭୦୬୧ |

ଏହି ତ୍ରିବିଧ, ଯଥାର୍ଥରେ ଚତୁର୍ବିଧ ସ୍ଥିତି ହେତୁ ଶିକ୍ଷାର ଏହି ସ୍ତର ପ୍ରତି ଯେତିକି ଦୃଷ୍ଟି ଦେବାର କଥା ତାହା କରାଯାଇ ନାହିଁ। ଗୁଣର ତଥ୍ୟ ସଂଖ୍ୟାର ବିକାଶ ପ୍ରତି ଆମ ଯୋଜନାରେ ସମୁଚିତ ଦୃଷ୍ଟି ଦିଆଯାଇ ନାହିଁ। ପ୍ରଥମ ସ୍ତରର ଶିକ୍ଷାକୁ ସାର୍ବଜନୀନୀକରଣ କରିବା ଦୃଷ୍ଟିରୁ ଏହି ସ୍କୁଲ/ଶ୍ରେଣୀଗୁଡ଼ିକର ଗୁରୁତ୍ୱ ଉପଲବ୍ଧି କରାଯାଇ ନାହିଁ। ଗାନ୍ଧି ପରିକଳ୍ପିତ ଆଠ ଶ୍ରେଣୀ ବିଶିଷ୍ଟ ସମନ୍ୱିତ ଶିକ୍ଷାକ୍ରମର ଅନୁକରଣରେ ସ୍କୁଲର ପୁନଃବିନ୍ୟାସ କରାଗଲେ ସାର୍ବଜନୀନୀକରଣ ପାଇଁ ସହାୟକ ହୋଇପାରନ୍ତା। ଏ ଦୃଷ୍ଟିରୁ ଶ୍ରେଣୀ ଗୁଡ଼ିକୁ ସୁବିନ୍ୟସ୍ତ କରିବା ପାଇଁ ଉଦ୍ୟମ ହୋଇ ନାହିଁ। ୨(କ) ପ୍ରକାର ସ୍କୁଲ ଅର୍ଥାତ୍ ୧ମ ଶ୍ରେଣୀରୁ ୭ମ ଶ୍ରେଣୀ ବିଶିଷ୍ଟ ସ୍କୁଲ କରିବା ଦ୍ୱାରା ସାର୍ବଜନୀନୀକରଣ ଉଦ୍ୟମ କେତେଦୂର ସଫଳ ହୋଇ ପାରୁଛି ବା ଅନ୍ୟ କି ଫଳ ମିଳୁଛି ଏହା ଅନୁଧ୍ୟାନ କରିନାହୁଁ।

**(କ) ମିଡ଼ିଲ ସ୍କୁଲର ସଂଖ୍ୟା ବୃଦ୍ଧି-**

ସ୍କୁଲ ନଥିବା ଗାଁ ଅନେକ ଅଛି। N.C.E.R.T. ଯେଉଁ ତୃତୀୟ ସର୍ବ ଭାରତୀୟ ଶିକ୍ଷା ସର୍ବେକ୍ଷଣ କରିଥିଲେ ସେଥିରୁ ଜଣାଯାଏ ଯେ, ସାରା ଭାରତରେ ୯.୫୪ ଲକ୍ଷ ଗାଁ (habitations) ମଧ୍ୟରୁ ୩.୮୯ ଲକ୍ଷ ଗାଁରେ କିମ୍ବା ଏସବୁ ଗାଁଠାରୁ ୫ କିଲୋମିଟର ଦୂରରେ ମିଡ଼ିଲ ସ୍କୁଲ ଶିକ୍ଷାର ବ୍ୟବସ୍ଥା ନଥିଲା। ଆମ ରାଜ୍ୟ ଏ ଦୃଷ୍ଟିରୁ ଦେଶରେ ସର୍ବନିମ୍ନ ସ୍ଥାନ ଅଧିକାର କରିଛି। ଅବଶ୍ୟ ଆମ ସହିତ

ଆନ୍ଧ୍ରପ୍ରଦେଶ୍ ରହିଛନ୍ତି । ଆନ୍ଧ୍ର ପ୍ରଦେଶର ଶତକଡ଼ା ୩୩ ଭାଗ ଓ ଆମ ରାଜ୍ୟରେ ଶତକଡ଼ା ୩୨ ଭାଗ ଗାଁରେ ବା ଏସବୁ ଗାଁଠାରୁ ୫ କିଲୋମିଟର ଦୂରରେ ଏହି ଶିକ୍ଷା ବ୍ୟବସ୍ଥା ନାହିଁ । ଏସବୁ ଗାଁ ଛୋଟ ଛୋଟ ହୋଇପାରେ । ତେଣୁ ଏହାଦ୍ୱାରା ଆମ ସାର୍ବଜନୀନୀକରଣ ପ୍ରକଳ୍ପ ଯେ ବାଧା ପାଉଛି ଏହା ଜଣା ପଡ଼ିବ ନାହିଁ । କିନ୍ତୁ ଉକ୍ତ ସର୍ବେକ୍ଷଣରୁ ମଧ୍ୟ ଜଣାଯାଏ ଯେ ୫୦୦ ଓ ଏହାଠାରୁ ଅଧିକ ଲୋକସଂଖ୍ୟା ବିଶିଷ୍ଟ ଗାଁମାନଙ୍କ ମଧ୍ୟରୁ ଶତକଡ଼ା ୧ ରୁ ୫୪ ଭାଗ ଗାଁରେ ବା ଏହାଠାରୁ ୫ କିଲୋମିଟର ଦୂରରେ ମାଇନର ସ୍କୁଲ ଶିକ୍ଷା ବ୍ୟବସ୍ଥା ନାହିଁ । ଆମ ରାଜ୍ୟରେ ଏହା ଶତକଡ଼ା ୮ ଅଟେ । ଆହୁରି ମଧ୍ୟ ଆମ ଶିକ୍ଷା ନିର୍ଦ୍ଦେଶାଳୟଙ୍କ ଦ୍ୱାରା ପ୍ରକାଶିତ ୧୯୭୯ କୋରାପୁଟ ଜିଲ୍ଲା ଶିକ୍ଷା Profileରେ ଉଲ୍ଲେଖ ଅଛି ଯେ ତୃତୀୟ ସର୍ବେକ୍ଷଣ ଅନୁଯାୟୀ ସମଗ୍ର ରାଜ୍ୟର ଶତକଡ଼ା ୫୩.୭୯ ଭାଗ, କଟକରେ ଶତକଡ଼ା ୯୧.୪୯ ଭାଗ, ବାଲେଶ୍ୱର ଜିଲ୍ଲାରେ ଶତକଡ଼ା ୮୮.୪୫ ଭାଗ ଓ ପୁରୀ ଜିଲ୍ଲାରେ ଶତକଡ଼ା ୮୦.୮୧ ଭାଗ ଗ୍ରାମ ମାଇନର ସ୍କୁଲ ଶିକ୍ଷା ସୁଯୋଗ ପାଉଥିବା ସ୍ଥଳେ କୋରାପୁଟ ଜିଲ୍ଲାରେ ଏହା ଶତକଡ଼ା ୭.୮୮ ଥିଲା । ଅର୍ଥାତ୍ କୋରାପୁଟ ଜିଲ୍ଲାରେ ଶିକ୍ଷା ସୁଯୋଗ ପାଉ ନଥିବା ଗାଁର ଶତକଡ଼ା ଭାଗ କଟକ, ପୁରୀ ଆଦି ଶିକ୍ଷା ସୁଯୋଗ ପାଉଥିବା ଗାଁର ଶତକଡ଼ା ଭାଗକୁ ଟପିଅଛି । ୧୯୭୭ ମସିହା ଡିସେମ୍ବର ମାସ ୩୧ ତାରିଖରେ କରାଯାଇଥିବା ସର୍ବେକ୍ଷଣ ଅନୁସାରେ କୋରାପୁଟ ଜିଲ୍ଲାର ୩.୨୬% ଗାଁରେ ମାଇନର ସ୍କୁଲ ଶିକ୍ଷା ବ୍ୟବସ୍ଥା ଅଛି ଓ ଶତକଡ଼ା ୨୧.୭୦ ଗାଁର ତିନି କିଲୋମିଟର ଦୂରରେ ଏହି ଶିକ୍ଷା ସୁଯୋଗ ମିଳି ପାରିବ । ଏପରି ସ୍ଥଳରେ କୋରାପୁଟ ଜିଲ୍ଲାରେ କେବେ ୧୪ ବର୍ଷ ବୟସ ଯାଏଁ ପିଲାମାନଙ୍କ ପାଇଁ ଶିକ୍ଷା ସାର୍ବଜନୀନ ହୋଇ ପାରିବ ? ତିନି କିଲୋମିଟର ଦୂରତା କୋରାପୁଟରେ କେତେ, ଆମେ ଅନୁମାନ କରିବା ସହଜ ନୁହେଁ । ନଈ, ନାଳ, ବଣ ଜଙ୍ଗଲ ରହିଛି । ସେ ଦୃଷ୍ଟିରୁ ସେ ଜିଲ୍ଲାର ମାଇନର ସ୍କୁଲକୁ ଆବାସିକ କରିବାକୁ ପଡ଼ିବ । ଆଞ୍ଚଳିକ ଭିତ୍ତିରେ ନିର୍ଦ୍ଦିଷ୍ଟ ଆଦିବାସୀ ସମ୍ପ୍ରଦାୟର ଆବଶ୍ୟକତାକୁ ଆଖି ଆଗରେ ରଖି ଯୋଜନା କରିବା ଉଚିତ । ପଢ଼ିବା ପାଇଁ ସ୍ଥାନ ବ୍ୟବସ୍ଥା ସାର୍ବଜନୀନୀକରଣର ପ୍ରଥମ ଓ ପ୍ରଧାନ ଆବଶ୍ୟକତା ।

**(ଖ) ପାଠଛଡ଼ା ପିଲାଙ୍କ (Drop-outs) ପାଇଁ ଶିକ୍ଷା ବ୍ୟବସ୍ଥା-**

ପଢ଼ିବା ପାଇଁ ସ୍ଥାନ ବୃଦ୍ଧିର ବ୍ୟବସ୍ଥା ସମ୍ପର୍କରେ ଆଲୋଚନା କରାଯାଇଛି । ଏହିସବୁ ସ୍ଥାନ ଖାଲି ପଡ଼ିବ ନାହିଁ, ଅର୍ଥାତ୍ ଅଧିକ ସଂଖ୍ୟକ ପିଲାଙ୍କୁ ସ୍କୁଲରେ ନାମ ଲେଖାଇବା ପାଇଁ ଉତ୍ସାହିତ କରାଯିବ । ଏହାର ବିଭିନ୍ନ ଦିଗ ରହିଛି ଓ ମାଇନର ସ୍କୁଲ ଏ ଦିଗରେ ନେତୃତ୍ୱ ନେଇ ପାରିବେ । ବର୍ତ୍ତମାନ ସମସ୍ୟା ହେଉଛି ନାମ ଲେଖା

ପିଲାଙ୍କୁ କିପରି ଅଟକାଇବାକୁ ହେବ । ଏହାର ଦୁଇଟି ଦିଗ ଅଛି- (୧) ପିଲାଙ୍କୁ ଧରି ରଖିବାର ଶକ୍ତି ବଢ଼ାଇବାକୁ ପଡ଼ିବ ? ଓ (୨) ପାଠଛଡ଼ା ପିଲାଙ୍କ ପାଇଁ କଅଣ କରାଯିବ ? ୧) ଓ ୨) ପରସ୍ପର ପରିପୂରକ ହୋଇଥିବାରୁ ଏକକାଳୀନ ଉଭୟ ଦିଗରୁ ପଦକ୍ଷେପ ନିଆଯିବା ଉଚିତ । ଅପଚୟକୁ କମାଇ ଦେବା ଅତ୍ୟନ୍ତ ଭୟାବହ । (କ) ଅନୁଛେଦରେ ଉଲ୍ଲିଖିତ Profile ରୁ ଜଣାପଡ଼େ ଯେ କୋରାପୁଟ ଜିଲ୍ଲାରେ ସେମିଲୀଗୁଡ଼ା ବ୍ଲକରେ ୪୦,୪୯୦ ଲୋକ ଅଛନ୍ତି । ସେଠି ୮୬ଟି ପ୍ରାଥମିକ ବିଦ୍ୟାଳୟ, ୧୨ଟି ମାଇନର ସ୍କୁଲ ଓ ୩ଟି ହାଇସ୍କୁଲ ଅଛି । ୬ ରୁ ୧୧ ବର୍ଷ ବୟସର ପିଲାମାନଙ୍କ ମଧ୍ୟରୁ ଶତକଡ଼ା ୬୬.୪୭ ସ୍କୁଲରେ ନାମ ଲେଖାଇଛନ୍ତି । କିନ୍ତୁ ୧ମ ଶ୍ରେଣୀର ନାମ ଲେଖା ପିଲାଙ୍କର ଶତକଡ଼ା ୨.୯୫ ମାତ୍ର ପଞ୍ଚମ ଶ୍ରେଣୀରେ ରହନ୍ତି । ସବୁ ବ୍ଲକ ତୁଳନାରେ ଏହା ସର୍ବନିମ୍ନ । ଏହି ବ୍ଲକରେ ଗୋଟିଏ ହାଇସ୍କୁଲ ପାଇଁ ୪ଟି ମାଇନର ସ୍କୁଲ ଓ ୨୯ଟି ପ୍ରାଥମିକ ବିଦ୍ୟାଳୟ ତଥା ଗୋଟିଏ ମାଇନର ସ୍କୁଲ ପାଇଁ ୭ଟି ପ୍ରାଥମିକ ବିଦ୍ୟାଳୟ ପଡ଼ୁଛି । ଅଣ ଆନୁଷ୍ଠାନିକ ଶିକ୍ଷାର ବ୍ୟବସ୍ଥା କରି ଅପଚୟର ମାତ୍ରା କ୍ରମେ କ୍ରମେ କମାଇ ଦେବା ଯୋଜନା କରିବା ଉଚିତ୍ । ବ୍ଲକ ସ୍ତରରେ ଏହି ଯୋଜନା ହେଲେ ଭଲ । କେତେକ ଆଦିବାସୀ ସମ୍ପ୍ରଦାୟର ଶିକ୍ଷାରେ ଏହି ଅପଚୟ ସମସ୍ୟା ଅତି ଉତ୍କଟ । ୧୧,୩୬୯ ଜଣ ବିଶିଷ୍ଟ କଣ୍ଡାତୋରା ଆଦିବାସୀଙ୍କ ମଧ୍ୟରେ ଏହି ଅପଚୟ ଶତକଡ଼ା ୯୮.୦୩ । କିନ୍ତୁ ଏମାନେ ବିଭିନ୍ନ ବ୍ଲକରେ ବାସ କରୁଥିବା ହେତୁରୁ ବ୍ଲକ ସ୍ତରୀୟ ଯୋଜନା ଭଲ ହେବ । ସାତୋଟି କରି ପ୍ରାଥମିକ ବିଦ୍ୟାଳୟକୁ ନେଇ ଗୋଟିଏ ଗୋଟିଏ ମାଇନର ସ୍କୁଲର ନେତୃତ୍ୱରେ ଅଣଆନୁଷ୍ଠାନିକ ଶିକ୍ଷାର ବ୍ୟବସ୍ଥା କରିବା ଉଚିତ । ଏହାଦ୍ୱାରା ୧୪ ବର୍ଷ ଯାଏଁ ପିଲାଙ୍କ ପାଇଁ ଶିକ୍ଷାକୁ ସାର୍ବଜନୀନ କରିବା ଯୋଜନା ବେଶ୍ କ୍ଷିପ୍ରତର ହୋଇପାରିବ ।

**(ଗ) ଖଡ଼ିଛୁଆଁ ହୋଇ ନଥିବା ପିଲାଙ୍କ ପାଇଁ ଅଣଆନୁଷ୍ଠାନିକ ଶିକ୍ଷା-**

ଏମାନଙ୍କୁ non-attender କୁହାଯାଏ । ଏମାନେ ସ୍କୁଲରେ ଆଦୌ ନାଁ ଲେଖାଇ ନାହାନ୍ତି । ଦାରିଦ୍ର୍ୟ, କୁସଂସ୍କାର, ଶିକ୍ଷାପ୍ରତି ଉଦାସୀନତା ଇତ୍ୟାଦି ନାନା କାରଣରୁ ଏମାନେ ସ୍କୁଲ ମାଟି ମାଡ଼ି ନଥାନ୍ତି । ପାଠ ପଢ଼ିବା ଭଳି ପିଲାଙ୍କ ସଂଖ୍ୟାର ଏମାନେ ପ୍ରାୟ ଶତକଡ଼ା ୨୦ ଭାଗ ଅଟନ୍ତି । (ଖ) ଅନୁଛେଦରେ ବର୍ଣ୍ଣିତ ପାଠଛଡ଼ା ପିଲା (drop-out) ଏମାନଙ୍କ ଅନ୍ତର୍ଭୁକ୍ତ ନୁହନ୍ତି । ପ୍ରତ୍ୟେକ ସ୍କୁଲ ଅଞ୍ଚଳକୁ ସର୍ଭେ କରି ଅଣଆନୁଷ୍ଠାନିକ ଶିକ୍ଷାର ବ୍ୟବସ୍ଥା ମାଇନର ସ୍କୁଲର ନେତୃତ୍ୱରେ କରାଯାଇ ପାରିବ । ଶିକ୍ଷାର ସମୟ ଓ ମିଆଦ ପିଲାଙ୍କ ସୁବିଧାନୁସାରେ ହେବ । ପରିବେଶକୁ ଆଧାରିତ ଶିକ୍ଷା ଦିଆଯିବା ଉଚିତ । (ଖ) ଓ (ଗ) ବର୍ଣ୍ଣିତ ବ୍ୟବସ୍ଥା ଫଳରେ

ସ୍କୁଲରେ ପୁନଃ ପ୍ରବେଶ ପାଇଁ ବ୍ୟବସ୍ଥା ରହିବା ଉଚିତ। ଶିକ୍ଷାକୁ ସାର୍ବଜନୀନ କରିବାରେ ମାଇନର ସ୍କୁଲର ନିଶ୍ଚିତ ଭୂମିକା ରହିଛି। ଏଥିରେ ସନ୍ଦେହ ନାହିଁ।

**(ଘ) ବିଦ୍ୟାଳୟ ସଙ୍ଗମ (School-Complex) ଯୋଜନାରେ ମାଇନର ସ୍କୁଲର ସହଯୋଗ**

୬ ରୁ ୧୧ ଓ ୧୧ ରୁ ୧୪ ବର୍ଷ ବୟସ ଯାଏଁ ଦୁଇ ପ୍ରକାରର ଯୋଜନା କରି ସେଥିରେ ୬ ରୁ ୧୧ ବର୍ଷ ବୟସ ପ୍ରତି ଅଧିକ ଅଗ୍ରାଧିକାର ଦେବା ସହାୟକ ପଦକ୍ଷେପ ହୋଇନାହିଁ। ୬ ରୁ ୧୪ ବର୍ଷକୁ ଏକକ ଧରି ଆଠ ବର୍ଷର ସମନ୍ୱିତ ପାଠ୍ୟକ୍ରମକୁ କାର୍ଯ୍ୟକାରୀ କରାଗଲେ ଏହା ଦ୍ୱାରା ଶିକ୍ଷାର ମାନବୃଦ୍ଧି ସାଧିତ ହୁଅନ୍ତା। ଏକାଧିକ ଶିକ୍ଷକଙ୍କର ଏକତ୍ରୀକରଣ ଦ୍ୱାରା ବହୁବିଧ କାର୍ଯ୍ୟକ୍ରମ ହାତକୁ ନେଇ ହୁଅନ୍ତା। ଏହାଦ୍ୱାରା ସମଗ୍ର ଗାଁ ପ୍ରଭାବିତ ହୋଇ ପାରନ୍ତି। ଶିକ୍ଷାନୁଷ୍ଠାନ ଗୁଡ଼ିକ ମଧ୍ୟରେ ଶିକ୍ଷା ସହାୟକ ସମ୍ପର୍କରେ ଅଭିବୃଦ୍ଧି ହୋଇ ପାରନ୍ତା। ପୂର୍ବରୁ ସୂଚିତ କୋରାପୁଟ ପ୍ରୋଫାଇଲ୍‌ରୁ ଜଣାଯାଏ ଯେ କୋରାପୁଟର ମୋଟ ଗାଁ ସଂଖ୍ୟାର ଶତକଡ଼ା ୧୬.୪୫ ଭାଗ ଅର୍ଥାତ୍ ୧୦୪୨ଟି ଜନବସତିରେ ସ୍କୁଲ ଥାଇ ସୁଦ୍ଧା କୌଣସି ପିଲା ପଢ଼ନ୍ତି ନାହିଁ। ବିଦ୍ୟାଳୟ ଶିକ୍ଷା ସଙ୍ଗମ ଦ୍ୱାରା ଏହି ଦୟନୀୟ ଅବସ୍ଥାର ଉନ୍ନତି କରାଯାଇ ପାରନ୍ତା।

ଓଡ଼ିଶା ସରକାରଙ୍କ ଚିଠା ଷଷ୍ଠ ପଞ୍ଚବାର୍ଷିକ ଯୋଜନା (୧୯୭୮-୮୩)ର ରିପୋର୍ଟରୁ ନିମ୍ନରେ ଦୁଇଟି ଟେବ୍‌ଲ ଉଦ୍ଧାର କରାଯାଉଛି।

**District-wise Institutional Mix, 1977**

| ଜିଲ୍ଲା | ଗୋଟିଏ ମିଡ଼ିଲ ସ୍କୁଲ ପିଛା ବିଦ୍ୟାଳୟର ସଂଖ୍ୟା | ଗୋଟିଏ ହାଇସ୍କୁଲ ପିଛା ମିଡ଼ିଲ ସ୍କୁଲର ସଂଖ୍ୟା |
|---|---|---|
| ୧। ବାଲେଶ୍ୱର | ୩ | ୩ |
| ୨। ବଲାଙ୍ଗୀର | ୬ | ୪ |
| ୩। କଟକ | ୩ | ୩ |
| ୪। ଢେଙ୍କାନାଳ | ୪ | ୪ |
| ୫। ଗଞ୍ଜାମ | ୬ | ୩ |
| ୬। କଳାହାଣ୍ଡି | ୯ | ୩ |
| ୭। କେଉଁଝର | ୨୪ | ୩ |
| ୮। କୋରାପୁଟ | ୧୩ | ୪ |
| ୯। ମୟୂରଭଞ୍ଜ | ୫ | ୩ |
| ୧୦। ଫୁଲବାଣୀ | ୧୦ | ୫ |

| | | |
|---|---|---|
| ୧୧ । ପୁରୀ | ୪ | ୩ |
| ୧୨ । ସମ୍ବଲପୁର | ୫ | ୪ |
| ୧୩ । ସୁନ୍ଦରଗଡ଼ | ୫ | ୩ |
| ଓଡ଼ିଶା | ୫ | ୩ |
| ଭାରତ | ୫ | ୨.୩ |

**Teacher-Pupil Ratio, 1977**

| ଜିଲ୍ଲା | ପ୍ରାଥମିକ ସ୍କୁଲ ସ୍ତର | ମିଡ଼ିଲ ସ୍କୁଲ ସ୍ତର | ହାଇସ୍କୁଲ ସ୍ତର |
|---|---|---|---|
| ୧ । ବାଲେଶ୍ୱର | ୧:୪୮ | ୧:୨୦ | ୧:୧୧ |
| ୨ । ବଲାଙ୍ଗୀର | ୧:୨୮ | ୧:୧୪ | ୧:୯ |
| ୩ । କଟକ | ୧:୪୧ | ୧:୨୫ | ୧:୧୩ |
| ୪ । ଢେଙ୍କାନାଳ | ୧:୨୯ | ୧:୧୬ | ୧:୧୦ |
| ୫ । ଗଞ୍ଜାମ | ୧:୩୨ | ୧:୨୪ | ୧:୧୧ |
| ୬ । କଳାହାଣ୍ଡି | ୧:୨୯ | ୧:୧୨ | ୧:୭ |
| ୭ । କେଉଁଝର | ୧:୩୨ | ୧:୧୭ | ୧:୧୦ |
| ୮ । କୋରାପୁଟ | ୧:୨୯ | ୧:୧୫ | ୧:୮ |
| ୯ । ମୟୁରଭଞ୍ଜ | ୧:୨୭ | ୧:୧୭ | ୧:୯ |
| ୧୦ । ଫୁଲବାଣୀ | ୧:୨୪ | ୧:୧୫ | ୧:୭ |
| ୧୧ । ପୁରୀ | ୧:୪୦ | ୧:୨୬ | ୧:୧୨ |
| ୧୨ । ସମ୍ବଲପୁର | ୧:୩୦ | ୧:୧୮ | ୧:୧୧ |
| ୧୩ । ସୁନ୍ଦରଗଡ଼ | ୧:୩୦ | ୧:୨୦ | ୧:୧୫ |
| ଓଡ଼ିଶା | ୧:୩୪ | ୧:୨୦ | ୧:୧୧ |
| ଭାରତ | ୧:୫୦ | ୧:୨୪ | ୧:୧୨ (ଅସ୍ଥାୟୀ) |

ଏହି ଦୁଇଟି ଟେବ୍‌ଲରୁ ଯୋଜନାବଦ୍ଧ ଶିକ୍ଷା ବିକାଶର ଧାରା ପରିଲକ୍ଷିତ ହୁଏ ନାହିଁ। ପ୍ରଥମ ସ୍ତରର ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ପରିକଳ୍ପନା କରାଯାଇଥିଲେ ପ୍ରାଥମିକ ଶିକ୍ଷାନୁଷ୍ଠାନର ସଂଖ୍ୟା, ସ୍ଥାନ ସଂଖ୍ୟା ଓ ଉପସ୍ଥାନର ପ୍ରକ୍ଷେପଣ (projection) କରି ପରବର୍ତ୍ତୀ ସ୍ତର ତଥା ଶ୍ରେଣୀର ଶିକ୍ଷା ବ୍ୟବସ୍ଥା କରାଯାଇ ପାରିଥାନ୍ତା। କିନ୍ତୁ ଆମ ଜାତୀୟ ଜୀବନରେ ସର୍ବତ୍ର ଯେପରି, ଶିକ୍ଷାରେ ମଧ୍ୟ ସେହିପରି-ଆମ ବିକାଶରେ କୌଣସି ବିଧିବଦ୍ଧତା ଓ ପ୍ରାସଙ୍ଗିକତା ନାହିଁ।

ବର୍ତ୍ତମାନ ଆମେ ଯଦି କେତେକ ଜିଲାରେ ଅଧିକ ସଂଖ୍ୟକ ମାଇନର ବା ହାଇସ୍କୁଲ ପ୍ରତିଷ୍ଠା କରି ଦେବା, ଆମ ବିଚାରଧାରା ସେହିପରି ଧାରାବାହିକତାରୁ ବଞ୍ଚିତ ହେବ। ବର୍ତ୍ତମାନ ଜିଲାର ଛୋଟ ଛୋଟ ଅଞ୍ଚଳକୁ ଭିତ୍ତି କରି ବିଦ୍ୟାଳୟ ଶିକ୍ଷା ସଙ୍ଗମ ଆରମ୍ଭ କରିବା ଉଚିତ। ଏହି ବିଦ୍ୟାଳୟ ଶିକ୍ଷା ସଙ୍ଗମକୁ କେନ୍ଦ୍ର କରି ସଂଖ୍ୟା ଓ ଶିକ୍ଷାମାନ ପ୍ରତି ଦୃଷ୍ଟି ଦେଇ ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ କୌଶଳର ଆଶ୍ରୟ ନେବା ଦରକାର। ଏହା ଭିତରେ ନୂତନ ଅନୁଷ୍ଠାନ ପ୍ରତିଷ୍ଠା କରିବା ଉଚିତ। କୋଠାରୀ କମିଶନଙ୍କ ସୁପାରିଶ ଅନୁସାରେ ଆବଶ୍ୟକତାକୁ ଲକ୍ଷ୍ୟ କରି ବରଂ ସଂଖ୍ୟାର ଅଭିବୃଦ୍ଧିକୁ କିଛି ସମୟ ପାଇଁ ପଛାଇ ଦିଆ ଯାଇପାରେ।

ସ୍ଥାନର ବ୍ୟବସ୍ଥା, ଛାତ୍ର ପ୍ରବେଶ, ସେମାନଙ୍କୁ ଅଟକାଇବା, ଆବଦ୍ଧତା ଓ ଅପଚୟକୁ କମାଇବା, ଆନୁଷ୍ଠାନିକ ଧାରଣ କ୍ଷମତାର ଅଭିବୃଦ୍ଧି, ଅଣଆନୁଷ୍ଠାନିକ ଶିକ୍ଷା, ଉପଯୁକ୍ତ ଶ୍ରେଣୀରେ ପୁନଃପ୍ରବେଶ, ପାଠ୍ୟକ୍ରମ ଓ ପରୀକ୍ଷାର ପରିବର୍ତ୍ତନ ଇତ୍ୟାଦି ହେଉଛି ସାର୍ବଜନୀନୀକରଣର ବିଭିନ୍ନ ପଦକ୍ଷେପ। ଲୋକଶିକ୍ଷା ପ୍ରତି ଗୁରୁତ୍ୱ ଦିଆଯିବ। ଆନ୍ଧ୍ରରାଜ୍ୟରେ ସପ୍ତମ ଶ୍ରେଣୀ ଯାଏଁ ଆବଦ୍ଧତା ବନ୍ଦ କରିଦିଆଯାଇଛି। ଅବଶ୍ୟ ଏହା ସହିତ ସହାୟକ ବହୁ ପଦକ୍ଷେପର ବ୍ୟବସ୍ଥା କରାଯାଇଛି। ବିଦ୍ୟାଳୟ ପ୍ରବେଶ ପୂର୍ବବର୍ତ୍ତୀ ଶିକ୍ଷାନୁକୂଳ ବହୁବିଧ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ। ୧୪ ବର୍ଷ ବୟସ ହେବା ଯାଏଁ ଶିକ୍ଷାକୁ ସମସ୍ତଙ୍କ ପ୍ରତି ଲାଗୁ କରାଇବାର ସାମ୍ବିଧାନିକ ଶପଥକୁ ଏକାକାଳୀନ ସବୁ ଦିଗରୁ ନିଷ୍ଠା ସହକାରେ କାର୍ଯ୍ୟକାରୀ କରିବାକୁ ପଡ଼ିବ। ନିକର ସମ୍ବଳ, ସୁଯୋଗ ଓ ସୁବିଧା ଦୃଷ୍ଟିରୁ ମିଡ଼ିଲ ସ୍କୁଲ ପ୍ରାଥମିକ ଶିକ୍ଷାକୁ କବଳିତ ନକରି ବା ହାଇସ୍କୁଲ ପାଖରେ ଏସବୁକୁ ଉତ୍ସର୍ଗ ନ କରି ସାନ ପିଲାଠାରୁ ବଡ଼ ମନୁଷ୍ୟ ଯାଏଁ ବ୍ୟକ୍ତି ଓ ସମାଜର ସାକ୍ଷରତା ସାଧନ କରାଯାଇ ପାରିବ।

**(ଙ) ଲୋକଶିକ୍ଷାରେ ମାଇନର ସ୍କୁଲର ଭୂମିକା**

ଏହା ସତ୍ୟ ଯେ ଆମ ସମୃଦ୍ଧି ଯେପରି ସୁସ୍ଥିର ଓ ସୁସଂହତ ନୁହେଁ, ଆମ ସଛୁଆମି ସେହିପରି ସର୍ବବ୍ୟାପୀ। ଯେଉଁଠି ସାନପିଲାଙ୍କ ଶିକ୍ଷା ପଛାଇଛି, ସେଠାରେ ଜନଶିକ୍ଷା ମଧ୍ୟ ଆଗେଇପାରିନାହିଁ। ତେଣୁ ଶିଶୁ ଶିକ୍ଷା ଯେପରି ପ୍ରୟୋଜନୀୟ, ପ୍ରୌଢ଼ଶିକ୍ଷା ସେହିପରି ସ୍ୱାଭାବିକ। ଅତଏବ ଶିଶୁଶିକ୍ଷା ସହିତ ପ୍ରୌଢ଼ ଶିକ୍ଷାର ସମନ୍ୱୟହିଁ ଶିକ୍ଷାକୁ ସାର୍ବଜନୀନ କରିବାରେ ସହାୟକ ହେବ। ଶିକ୍ଷାକୁ ମରୁଭୂମିର ମରୁଦ୍ୟାନ ବୋଲି ବିଚାରିବା ଅନୁଚିତ। ସମୃଦ୍ଧ ସମାଜ ରଚନାର ଏହା ଅଙ୍ଗ ଓ ଆଭିମୁଖ୍ୟ ଅଟେ। ପୂର୍ବେ ଯାହା ଗ୍ରାମ ଚାଟଶାଳୀ ଥିଲା, ଏବେ ତାହା ସର୍ବଶିକ୍ଷାସ୍ଥଳୀ। ସେ ଦୃଷ୍ଟିରୁ ପ୍ରତ୍ୟେକ ଶିକ୍ଷାୟତନ କେବଳ ନିଜ

ସୀମିତ ପରିସର ମଧ୍ୟରେ ଆବଦ୍ଧ ନରହି ସାନ ପିଲାଠାରୁ ବଡ଼ ମନୁଷ୍ୟ ହେବା ଯାଏଁ ସମଗ୍ର ସମାଜ ପାଇଁ ଶିକ୍ଷାକୁ ଆଜୀବନ କରିବା ପାଇଁ ଓ ସମାଜକୁ ଶିକ୍ଷଣ ସମାଜରେ ପରିଣତ କରିବା ପାଇଁ ଭୂମିକା ସ୍ଥିର କରିବାକୁ ହେବ।

ତାହାହେଲେ ଶିକ୍ଷା ଯଥାର୍ଥତଃ ଗ୍ରାମର ଶିକ୍ଷା ହେବ। ଗ୍ରାମର ସମୂହ ବିକାଶ ପାଇଁ ଏହାର ପରିସର ଉନ୍ମୁକ୍ତ ରହିବ। ବିକାଶ ସାଧନକାରୀ ସମସ୍ତ ବିଭାଗ ସହିତ ଶିକ୍ଷା ମିଶି ପାରିବ ଓ ତ୍ୱରାନ୍ୱିତ କରିପାରିବ। ଏହା ଫଳରେ ବିଭିନ୍ନ ଯୋଜନା ପରସ୍ପରଠାରୁ ବିଚ୍ଛିନ୍ନ ହେବ ନାହିଁ। ଏସବୁ ଗୋଟିଏ ଗୋଟିଏ ଉପଯୋଜନା ହେବ। ଫଳରେ ଶିକ୍ଷା ଗ୍ରାମବାସୀଙ୍କ ଦ୍ୱାରା ସମୃଦ୍ଧ ହେବ।

ଏସବୁ ଦିଗରୁ ମାଇନର ସ୍କୁଲ ଶିକ୍ଷାର ବିକାଶ ପାଇଁ ତଥା ସମଗ୍ର ଶିକ୍ଷାର ବିକାଶ ପାଇଁ ଅପରିମିତ ସମ୍ଭାବନା ରହିଛି। ଗୃହ, ଆସବାପତ୍ର, ଶିକ୍ଷକ, ଶିକ୍ଷକ-ଛାତ୍ର ଅନୁପାତ ଓ ସମ୍ପର୍କ, ପୁସ୍ତକାଗାର, ଗ୍ରାମସମ୍ପର୍କ ଇତ୍ୟାଦି ଦୃଷ୍ଟିରୁ ଏହାକୁ ଦୃଢ଼ କରିବା ଓ ଏହାର ସମ୍ପୂର୍ଣ୍ଣ ବିନିଯୋଗ କରିବା ଏକାନ୍ତ ବାଞ୍ଛନୀୟ।

□□□

# ଶିକ୍ଷାର ଆଭିମୁଖ୍ୟ, ଶିକ୍ଷକ ଓ ଶିକ୍ଷକ ସଙ୍ଗଠନ

**(ଶିକ୍ଷକ ମହାସଂଘର ଏକାଦଶ ସାମ୍ବିଧାନିକ ସମ୍ମିଳନୀର ଶିକ୍ଷାର ଆଭିମୁଖ୍ୟ, ଶିକ୍ଷକ ଓ ଶିକ୍ଷକ ସଙ୍ଗଠନ ଶୀର୍ଷକ ଆଲୋଚନା ଚକ୍ରରେ ଉପସ୍ଥାପିତ ଭିତ୍ତିପତ୍ର)**

ଏବେବି ଶିକ୍ଷାର ଆଭିମୁଖ୍ୟ କଥା ଶୁଣିଲେ ଅନେକ ନାକ ଟେକନ୍ତି ଓ କହନ୍ତି, "ରଖ, ରଖ ଏ ସବୁ ଟ୍ରେନିଂ କଲେଜରେ କହିବ।" ଆଉ ଯେତେ ଜଣ କାନ ଡେରନ୍ତି, ସେମାନଙ୍କୁ ଆଈମା କାହାଣୀ ପରୀ ରାଇଜ କଥାପରି ଲାଗେ ଓ ସେମାନେ ଶୁଣୁ ଶୁଣୁ ଶୋଇ ପଡ଼ନ୍ତି। ବାସ୍ତବରେ ଶିକ୍ଷାର ଆଭିମୁଖ୍ୟ ସମ୍ବନ୍ଧୀୟ ବର୍ଣ୍ଣନା ଆଡ଼ମ୍ବରପୂର୍ଣ୍ଣ। ସେସବୁ ଆମ କମିଟି ଓ କମିଶନଙ୍କ ନଥିପତ୍ରରେ ଶୋଭାପାଉଛି। ସେଥିରେ ବିଦ୍‌ବତ୍ତା ଏପରି ପୂରି ଯାଇଛି ଯେ, ସେଥିରୁ କିଛି କିଛି ରପ୍ତାନୀ କରିବାର ବେଳ ଆସିଛି। ସେଥିରେ ଟ୍ରେନିଂ ସ୍କୁଲ ଓ କଲେଜରେ ବଢ଼ିଆ

ପ୍ରଶ୍ନ କରାଯାଏ । ତେଣୁ ଗୁରୁ ଛାତ୍ରମାନେ ସେଗୁଡ଼ିକୁ ଅକ୍ଷରେ ଅକ୍ଷରେ ଘୋଷ ଦେଇ ପରୀକ୍ଷାରେ ବାନ୍ତି କରି ଦିଅନ୍ତି । କାର୍ଯ୍ୟତଃ କପି ରହେ ନାହିଁ ।

ଶିକ୍ଷାରେ ପରୀକ୍ଷାର ପ୍ରଭୁତ, ଜୀବନରେ ପରମୁଖାପେକ୍ଷିତା, ସମାଜପ୍ରତି ବିମୁଖତା ଓ ଅଧ୍ୟୟନର ଜଗତ ତଥା ଜୀବନ-ଜୀବିକା ଜଗତ ମଧ୍ୟରେ ବିଛିନ୍ନତା ସବୁକୁ ସତ୍ୟାନାଶ କରିଛି । ଶିକ୍ଷାର ଆଭିମୁଖ୍ୟ ମୂଳରେ କୁଠାରଘାତ କରିଛି । ଉଦ୍ଦେଶ୍ୟବିହୀନ ହୋଇ ପାଠ୍ୟ ତାଲିକା କେବଳ କେତେକ ବିଷୟ ସୂଚୀରେ ପରିଣତ ହୋଇଛି । ଏତକ ବି ଯଦି ସବୁ ଶିକ୍ଷାୟତନରେ ଶିକ୍ଷାର୍ଥୀ, ଶିକ୍ଷାଭିଭାବକ ଶିକ୍ଷକ ଆଦି ସଂପୃକ୍ତ ସମସ୍ତଙ୍କ ପାଇଁ ମିଳିଯାଆନ୍ତା, ତେବେ ବିଭିନ୍ନ ବିଷୟର ପରିସର ଓ ଆନୁପାତିକ ଗୁରୁତ୍ୱ ଜଣା ପଡ଼ନ୍ତା । ଗୋଟିଏ ବିଷୟାନ୍ତର୍ଗତ ଓ ବିଭିନ୍ନ ବିଷୟର ସଂପୃକ୍ତ ପାଠ୍ୟ ଏକକ ମଧ୍ୟରେ ସମ୍ପର୍କ ଜାଣିହୁଅନ୍ତା ଏହାହିଁ ବସ୍ତୁତଃ ହୁଅନ୍ତା courses of studies, କାରଣ ଏହା course ଅର୍ଥାତ୍ ଗତିପଥ ନିର୍ଦ୍ଦେଶିତ କରନ୍ତା । ଅବଶ୍ୟ ଏଥିରେ ଗତି କେଉଁଠାକୁ ଏହା ନାହିଁ । ତେଣୁ ଏହା ପାଠ୍ୟକ୍ରମ curriculum ନୁହଁ, କାରଣ ଏହା ସଙ୍ଗଠିତ, ସଂହତି ଓ ସୁପରିକଳ୍ପିତ ଶିକ୍ଷଣ ଅଭିଜ୍ଞତା ନୁହଁ, ସେଥିରେ ଶିକ୍ଷାର ଉଦ୍ଦେଶ୍ୟ ନ ଥାଏ । ଆମେ ଏମିତି ଘାଣ୍ଟି ହେଉଛୁ ଓ ଏସବୁକୁ ଛାଡ଼ି ପାଠ୍ୟ ପୁସ୍ତକକୁ ଜାବୁଡ଼ି ଧରିଛୁ । ଆମେ ଶିକ୍ଷାର୍ଥୀଙ୍କ ଶିକ୍ଷକ ନୋହୁଁ । ଆମେ ହେଉଛୁ ପାଠ୍ୟ ପୁସ୍ତକର ଶିକ୍ଷକ । "ପଳାଇ ଆସିଲି ମାଉସୀ ଘରେ, ମାଉସୀ ମାଇଲେ ବି-ପାହାରେ" ପରି ପାଠ୍ୟପୁସ୍ତକ ମଧ୍ୟ ଉଦ୍ଦେଶ୍ୟସିଦ୍ଧିର ଉପଯୁକ୍ତ ଓ ପର୍ଯ୍ୟାପ୍ତ ସାଧନ ନୁହେଁ, କାରଣ ଏହା ଉଦ୍ଦେଶ୍ୟ ପ୍ରଧାନ ନୁହଁ, ଏହାର ପ୍ରସ୍ତୁତି ପରିକ୍ଷୀତ ନୁହଁ । ଏହା ଅନେକାଂଶରେ କେବଳ ପ୍ରତିଷ୍ଠିତ ବୟସ୍କ ଲୋକଙ୍କର ପ୍ରତିଷ୍ଠାର ପ୍ରତିଫଳନ । ଉଦ୍ଦେଶ୍ୟ ଆଧାରିତ ବ୍ୟବହାର ପାଇଁ ପରାମର୍ଶ ପୁସ୍ତକ ସହିତ ହେଉ ବା ସ୍ୱତନ୍ତ୍ର ହେଉ ଦିଆଯାଇ ନଥାଏ । ଶିକ୍ଷାର ସ୍ତର ଅନୁସାରେ ଓ ପ୍ରତ୍ୟେକ ସ୍ତରର ବିଭିନ୍ନ ବିଷୟ ଅନୁସାରେ ଉଦ୍ଦେଶ୍ୟ ସୂଚୀତ ହୋଇଥାଏ । ଉଭୟ ପ୍ରକାର ଉଦ୍ଦେଶ୍ୟର ବିଶ୍ଳେଷଣ କରାଯାଇ ପାଠ୍ୟପୁସ୍ତକର ରଚନା କରାଯାଏ ନାହିଁ । ଫଳରେ ଏହାର ପ୍ରୟୋଗ ବଳଦିଆ ହୋଇଯାଏ । ଶେଷରେ ପରୀକ୍ଷା ପାଖେଇ ଆସିଲେ ଏହାର ଭରଷା ଛାଡ଼ି ପତିତପାବନ ହୋଇପଡ଼େ "ପ୍ରଶ୍ନୋତ୍ତର" । ଛାତ୍ର ଶିକ୍ଷକ, ଅଭିଭାବକ, ପ୍ରଭୃତି ସମସ୍ତଙ୍କ ଆଖିରେ ଏହାହିଁ ହୁଏ "ଚତୁର୍ଦ୍ଧାମୂର୍ତ୍ତି" ।

ତେବେ ଶିକ୍ଷାର କାହିଁକି କାହିଁ ? ଶିକ୍ଷାର ଆଭିମୁଖ୍ୟକୁ କିଏ ରଖିଛି ? ଶିକ୍ଷକ, ଶିକ୍ଷାର୍ଥୀ, ଅଭିଭାବକ, ପ୍ରଶାସକ, ନୀତିନିର୍ଦ୍ଧାରକ ଆଦି ସମସ୍ତଙ୍କୁ ଏହିପରି

ଗୋଟି ଗୋଟି କରି ପଚାରିଲେ ପରସ୍ପର ଠରାଠରି ହୁଅନ୍ତି । ଜଣେ ହୁଏତ ଅନ୍ୟ ଜଣଙ୍କୁ ବତାଇ ଦିଅନ୍ତି । କିଛିଟା ଅସ୍ପଷ୍ଟ ଉତ୍ତର ମିଳେ । ଯଦି କେହି ଯିଦଖୋରିଆ ଲୋକ କାହିଁକିର କାହିଁ ପାଇବାକୁ ଲାଗିପଡ଼ନ୍ତି, ତେବେ ଅତୀତରେ ଯାହା ଘଟିଥିଲା ଏବେ ତାହା ଘଟିପାରେ-ଶିକ୍ଷାର ଆଭିମୁଖ୍ୟ ଫାଇଲ୍‌ରେ ବନ୍ଧା ହୋଇ ପଡ଼ିଥିବ । ଅବୋଧ ଫାଇଲ୍ ରକ୍ଷକର ଏ ବିଷୟରେ ଚିନ୍ତା ଓ ଚେତନା ନଥିବ, ଏହାତ ସ୍ୱାଭାବିକ କଥା ସବୁଠାରୁ ବେଶୀ ଅସ୍ୱାଭାବିକ ଓ ଅସମ୍ଭବ କଥା ହେଉଛି, ଆମ ସମସ୍ତଙ୍କର ଚେତା ନାହିଁ । ଆମ ଗାଢ଼ ନିଦ ଭାଙ୍ଗି ଯାଉଛି ଯେତେବେଳେ ଆସୁଛି; ସଙ୍କଟ, ଗୁଣର ପରିମାଣର, ଚରିତ୍ରର, ଆସୁଛି ବିଭ୍ରାଟ । ଆମେ ଯେତେବେଳେ ଉଠିପଡ଼ି, ପ୍ରଶ୍ନ କରୁଛୁ, ଶିକ୍ଷା କାହିଁକି ? ପୁଣି ଖୋଜା ଚାଲିଛି ସେ ଫାଇଲ୍ ରକ୍ଷକଙ୍କୁ, ସେ କିନ୍ତୁ ଧରାପଡ଼ି ନାହାନ୍ତି । ଆଲୋଚନା ହେଉଛି, ଶିକ୍ଷାର ଫଳ କ'ଣ ? ଫଳ ହେଉଛି ଆଭିମୁଖ୍ୟର ଆଚରଣ ଗତ ପରିବର୍ତ୍ତନ । ବ୍ୟକ୍ତିର ପରିବର୍ତ୍ତନ ଓ ସମାଜର ପରିବର୍ତ୍ତନ, ବ୍ୟକ୍ତି ସମାଜକୁ ଓ ସମାଜ ବ୍ୟକ୍ତିକୁ ପରିବର୍ତ୍ତିତ କରୁଛି । ଶିକ୍ଷା ଫଳରେ ଓ ଶିକ୍ଷା ସମସ୍ତ ବିକାଶର ସାଧ୍ୟ ଓ ସାଧନ ହେବା ଫଳରେ ଏହା ହେଉଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଏହି କାହିଁକିର କାହିଁକି ? ଆଭିମୁଖ୍ୟର ଆବଶ୍ୟକତା କ'ଣ ? ଏ ବିଷୟରେ ପୂର୍ବରୁ ପରୋକ୍ଷ ଆଲୋଚନା କରାଯାଇଛି । ପ୍ରତ୍ୟକ୍ଷ ଭାବରେ କହିବାକୁ ଗଲେ ଶିକ୍ଷା ଓ ସାମାଜିକ ପ୍ରଗତି ଅଙ୍ଗାଙ୍ଗୀ ଜଡ଼ିତ ଓ ଦୁହେଁ ଉଦ୍ଦେଶ୍ୟ-ପ୍ରଧାନ । ଉଦ୍ଦେଶ୍ୟକୁ ବିଶ୍ଳେଷଣ କରି ଛାତ୍ରମାନଙ୍କ ଆଚରଣରେ କେଉଁ ପ୍ରକାର ପରିବର୍ତ୍ତନ ଆଶା କରିବାର କଥା ଏହା ସ୍ଥିର କରାଯାଇ ଅନୁରୂପ ଶିକ୍ଷଣ ଅଭିଜ୍ଞତା ପ୍ରସ୍ତୁତ କରାଯାଏ । ଏହା ପାଠ୍ୟକ୍ରମ ନାମରେ ଅଭିହିତ । ଶିକ୍ଷାର ଅନ୍ୟଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ମୂଲ୍ୟାୟନ । ଉଦ୍ଦଶ୍ୟାନୁକୂଳ ମୂଲ୍ୟାୟନ ପଦ୍ଧତି ସୂଚିତ ହୁଏ । ବହୁ ଶିକ୍ଷା ଶାସ୍ତ୍ରୀ ଏପରି ମତ ପ୍ରଦାନ କରିଛନ୍ତି । ସେମାନଙ୍କ ମଧ୍ୟରେ B.S.Bloom ଙ୍କ ପ୍ରଣୀତ Texonomy Educational objections ଶୀର୍ଷକ ପୁସ୍ତକରେ ଶିକ୍ଷାର ଉଦ୍ଦେଶ୍ୟକୁ (1) Cognitive (2) Affective and (3) Psychomotor domain ରେ ବିଭକ୍ତ କରିଛନ୍ତି । ଉଦ୍ଦେଶ୍ୟ, ଶିକ୍ଷଣ ଅଭିଜ୍ଞତା ଓ ମୂଲ୍ୟାୟନକୁ ଗୋଟିଏ ସମବାହୁ ତ୍ରିଭୁଜର ଗୋଟିଏ ଗୋଟିଏ ଶୀର୍ଷବିନ୍ଦୁରେ ଅବସ୍ଥାପିତ କରି ଏମାନଙ୍କ ମାଧ୍ୟରେ ସମ୍ପର୍କ ସୂଚିତ କରାଯାଇଛି । ଏହା ଅବଶ୍ୟ ସର୍ବସ୍ୱୀକୃତ ଯେ ଶିକ୍ଷାର ଆଭିମୁଖ୍ୟ ଶିକ୍ଷକଙ୍କ ପକ୍ଷରେ ଧ୍ରୁବତାରା ସଦୃଶ ଦିଗ ନିୟାମକ । ଶିକ୍ଷା ବିଷୟରେ ଲୋକମାନେ କେଉଁ ଆଶା ପୋଷଣ କରନ୍ତି ଏହା ସେଥିରୁ ସୂଚିତ ହୁଏ । ଶିକ୍ଷକ ତଥା ଶିକ୍ଷାୟତନର କାର୍ଯ୍ୟ କେଉଁ ଦିଗରୁ ମୂଲ୍ୟାୟନ

କରାଯିବ ଏହା ମଧ୍ୟ ଜଣାପଡ଼େ । ଶିକ୍ଷାର୍ଥୀମାନଙ୍କ କାର୍ଯ୍ୟ ଓ କୃତିର ମୂଲ୍ୟାୟନ ମଧ୍ୟ ସେଥିରୁ କରାଯାଇ ପାରିବ ।

ଶିକ୍ଷାର ଉଦ୍ଦେଶ୍ୟାବଳୀକୁ ଶିକ୍ଷାର୍ଥୀ ଓ ଅଭିଭାବକ ମଧ୍ୟ ଜାଣିବାର କଥା । ସେସବୁ ନବୁଝିଲେ ଆବଶ୍ୟକ ପ୍ରେରଣା ଆସିବ ନାହିଁ । ଜଣେ ଶିକ୍ଷାବିତ୍‌ଙ୍କ ମତରେ "ଉତ୍ତମ ଶିକ୍ଷକ ହେଉଛନ୍ତି ସେ ଯେ ପିଲାମାନଙ୍କୁ ସର୍ବାଧିକ କୁଶଳତା ଓ ଶିକ୍ଷଣର ସ୍ଥାୟୀତ୍ୱ ସହକାରେ ଶିକ୍ଷାର ଆଭିମୁଖ୍ୟ ସାଧନ କରିପାରନ୍ତି ।" ଏହା ଫଳରେ ତାଙ୍କ ବ୍ୟକ୍ତିଗତ ଆତ୍ମସନ୍ତୋଷ ସଙ୍ଗେ ସଙ୍ଗେ ସାମାଜିକ ନିପୁଣତା ବଢ଼ିବ । ଶିକ୍ଷାଗତ ସମସ୍ତ ସୁପରାମର୍ଶ ଓ ସୁପାରିଶ ପଛରେ ଆଦର୍ଶ ଓ ଆଭିମୁଖ୍ୟ ରହିଛି । ଆଦର୍ଶକୁ ଛାଡ଼ିଦେବା ଓ ସମାଜକୁ ନ ସଜାଡ଼ିବା ଫଳରେ ସୁପାରିଶ ଧରିବା ଦ୍ୱାରା ଏହା କାର୍ଯ୍ୟତଃ ବଳଦିଆ ହୋଇଯାଉଛି । ଏହି ପ୍ରସଙ୍ଗରେ ଏକ ଜ୍ୱଳନ୍ତ ଉଦାହରଣ ମୌଳିକ ଶିକ୍ଷା । ଏହାର ବିପର୍ଯ୍ୟୟ କାହାକୁ ଅଜଣା ନୁହଁ । ମୂଲ୍ୟାୟନ, ମାର୍ଗଦର୍ଶନ ବିଦ୍ୟାଳୟ ସଙ୍ଗମ ଆଦି ଯୋଜନା ତ୍ରୁଟିମୁକ୍ତ ନୁହେଁ । ଆହୁରି ମଧ୍ୟ କୁହାଯାଇ ପାରେ ଯେ ଦଶ, ଯୁକ୍ତ ଦୁଇ, ଯୁକ୍ତ ତିନି (୧୦+୨+୩) ଶିକ୍ଷା ଯୋଜନା କେବେ ହେଁ ଗଣିତର ବିଷୟ ନୁହଁ । ଏହା ପଛରେ ବୈପ୍ଳବିକ ଆଭିମୁଖ୍ୟ ରହିଛି ଓ ଆଭିମୁଖ୍ୟକୁ ଛାଡ଼ିଦେଲେ ବିପ୍ଳବ ବିଫଳ ହେବାର ଆଶଙ୍କା ଜଳ ଜଳ ଦିଶୁଛି ।

ଶିକ୍ଷକ କାୟମନବାକ୍ୟରେ ଶିକ୍ଷାର ଉଦ୍ଦେଶ୍ୟ ଦ୍ୱାରା ଅନୁପ୍ରାଣିତ ହେବା ଉଚିତ । ସେଥିପାଇଁ ଶିକ୍ଷକ ଓ ଶିକ୍ଷାୟତନ ଏ ଦିଗରେ ଯଥେଷ୍ଟ ପ୍ରେରଣା, ପ୍ରଣାଳୀ ଓ କୌଶଳ ଯୋଗାଇବା ଉଚିତ । ସେବା କାଳୀନ ଓ ପ୍ରାକ୍‌ସେବା କାଳୀନ ଶିକ୍ଷା ଏହି ଆଭିମୁଖ୍ୟରେ ରଞ୍ଜିତ ହେବା ଆବଶ୍ୟକ । କିନ୍ତୁ ଶିକ୍ଷକ-ଶିକ୍ଷାୟତନଗୁଡ଼ିକରେ ଶିକ୍ଷାର ଆଭିମୁଖ୍ୟ ସମ୍ପର୍କରେ ଯେତେ ତତ୍ତ୍ୱ ବିନିମୟ ଓ ଶାସ୍ତ୍ର ଉଦ୍ଧାର କରାଯାଏ କାର୍ଯ୍ୟରେ ତାହା ହୁଏ ନାହିଁ । ପାଠଟିକା ଗୁଡ଼ିକର ନିଶ୍ଚିତ ଅଙ୍ଗ ହେଉଛି ସାଧାରଣତ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟର କଥନ । ଏହି ଅନୁସାରେ ଶିକ୍ଷା ଅଭିଜ୍ଞତା, ଶିକ୍ଷା ପ୍ରଣାଳୀ ଓ ମୂଲ୍ୟାୟନ କିପରି ସୁସଂହତ ହୋଇ ରହିବ, ଏଥିପାଇଁ ମୁହୂର୍ତ୍ତକର ଚିନ୍ତା ପ୍ରକାଶ କରାଯାଏ ନାହିଁ କହିଲେ ଚଳେ । ଏହି ବ୍ୟତିକ୍ରମ ଅନେକଙ୍କୁ ବିଚଳିତ କରେ । ଶାସ୍ତ୍ରନିଷ୍ଠ ଅଳ୍ପ କେତେ ଜଣ ଗୁରୁ ଛାତ୍ର ଶିକ୍ଷକ ନିଯୁକ୍ତି ପରେ ଛାତ୍ରଙ୍କୁ ପୁସ୍ତକ-କୀଟ କରି ଗଠନ କରିବାର ସହଜ ସରଳ ଓ ସିଧା ସିଧା ଆଦର୍ଶର ଲୋଭ ଛାଡ଼ି କିପରି ସମସ୍ତ ଶିକ୍ଷାର ପାଠକୁ ଯତ୍ ପଠିତ ତତ୍ ଶିକ୍ଷକ ଶିକ୍ଷାୟତନ ଗୁରୁ ନିବେଦିତ କିର ରହିଯାଆନ୍ତି । ଏହି ଦୁରବସ୍ଥା, ବିପର୍ଯ୍ୟୟ ଓ ଅପଚୟକୁ ସୁଧାରି ନେବା ପାଇଁ ଶିକ୍ଷା ପ୍ରଶାସନରେ ସମୟ, ଶକ୍ତି, ସ୍ୱତନ୍ତ୍ରଟ୍ରେନିଂ ବା ଦୃଷ୍ଟିକୋଣ ନଥାଏ ।

ଏପରି ସ୍ଥଳରେ ଶିକ୍ଷକ ସଙ୍ଗଠନ କରିବେ ବା କ'ଣ ? ସେମାନେ ଅପାଂକ୍ତେୟ। ଏହି ଅର୍ଥରେ ଏହା କୁହାଯାଇଛି ଯେ, ଶିକ୍ଷା ସମ୍ବନ୍ଧୀୟ ନୀତି ନିର୍ଦ୍ଧାରଣ, ଆଇନ୍ ପ୍ରଣୟନ, ନବ ପ୍ରବର୍ତ୍ତନ ଆଦି ବିଷୟରେ ସେମାନେ କେବେ ନିୟନ୍ତ୍ରିତ ହେବା ଶିକ୍ଷା ଇତିହାସରେ ବିରଳ। ସେମାନେ ଅଖୋଜା ଅଲୋଡ଼ା ଯଦିଏ ଶିକ୍ଷାର ମୂଳ ସମୂଳ ଶିକ୍ଷକ ହୋଇ ଥିବାରୁ ସେହି ସମ୍ଭାବନା ଭରପୂର ହୋଇଛି ଶିକ୍ଷକ ସଙ୍ଗଠନରେ। ଯଦି କେହି ଶିକ୍ଷକ ସଙ୍ଗଠନର ଜନ୍ମ ଜାତକ ଦେଖନ୍ତି ତେବେ ଗ୍ରହାଧିପତି ନିଚସ୍ଥ ହୋଇ ଥିବାରୁ ଦୁଇଟି ଭୁଲବୁଝାମଣା ସେମାନଙ୍କ ଜାତକରେ ସୁସ୍ପଷ୍ଟ। ଏହା କେତେକାଳ ରହିବ ପୁଣି କାତକ ଦେଖିଲେ ଜଣାପଡ଼ିବ। (ଯାହାହେଉ ସେ ଦୁଇ ଭୁଲ୍ ବୁଝାମଣା ମଧ୍ୟରୁ ଗୋଟିଏ ହେଉଛି ବିରୋଧ କରିବା ଏମାନଙ୍କର କାମ। ଲଢ଼ିବା ହେଉଛି ଏମାନଙ୍କର ଧର୍ମ। ଅବୁଝା ହେବା ମର୍ମ। ଦ୍ୱିତୀୟଟି ହେଉଛି ଦାୟିତ୍ୱ ନସମ୍ଭାଳି ଦାବୀ ଉପସ୍ଥାପନ କରିବା ଏମାନଙ୍କ କର୍ତ୍ତବ୍ୟ।)

ଯାହାହେଉ, ଆଲୋଚ୍ୟ ପ୍ରସଙ୍ଗରେ ଶିକ୍ଷାର ସଂସ୍କାର କରି ସମସ୍ତ ଶିକ୍ଷାର କ୍ରମକୁ ଉଦ୍ଦେଶ୍ୟ ଆଧାରିତ କରିବାପାଇଁ କେତେକ ସୂଚନା ଦିଆ ଯାଇପାରେ। ଗୋଟିଏ ସୂଚନା ହେଉଛି ଶିକ୍ଷକ ସଙ୍ଗଠନ ସହୁତ କାର୍ଯ୍ୟ କରିବାର ଷ୍ଟ୍ରାଟେଜି ବାହାର କରିବାକୁ ହେବ। ସଙ୍ଗଠିତ ଶିକ୍ଷକ ସଂସ୍ଥାର ସଦୁପଯୋଗ କରାଯିବା ଉଚିତ୍। ଶିକ୍ଷା ବ୍ୟାପକ ଓ କଟିଳ ପକ୍ରୀୟା, ତେଣୁ ଏହାର ସଫଳତା ପାଇଁ ସମସ୍ତଙ୍କ ସହଯୋଗ ଏକାନ୍ତ ଆବଶ୍ୟକ। ଜଣେ ପ୍ରଶାସକଙ୍କ କର୍ତ୍ତୃତ୍ୱ କାହିର ଅପେକ୍ଷା ଶତଗୁଣ ଫଳପ୍ରଦ ଓ ପ୍ରେରଣା ଦାୟକ ହେଉଛି ସମୂହ ଆଦର୍ଶ। ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ପ୍ରତିଷ୍ଠା କାଳରେ ପ୍ରତିଟି ବ୍ଲକର ଶିକ୍ଷକ ସଙ୍ଗଠନର ସହଯୋଗରେ ଅନେକ ସୁବିଚାର ଓ ଶିକ୍ଷାର ଗୁଣାତ୍ମକ ବିକାଶ ଦୃଷ୍ଟିରୁ କାର୍ଯ୍ୟକ୍ରମ ସହଜରେ କରାଯାଇ ପାରିଥିଲା। ଗ୍ରୁପ୍ ଡାଇନାମିକ୍ସ (Group Dynamics) ସଂକ୍ରାନ୍ତରେ ଅନେକ ଗବେଷଣା ଲବ୍ଧ ସିଦ୍ଧାନ୍ତ ରହିଛି। ଶିକ୍ଷକ ସଙ୍ଗଠନର ସଂଗ୍ରାମୀ ଭୂମିକା ସହିତ ବର୍ତ୍ତମାନ ପରିସ୍ଥିତିରେ ସହଯୋଗର ସେତୁ ମଧ୍ୟ ଉଦ୍‌ଭାବନ କରାଯିବା ଉଚିତ୍।

(୨) ଶିକ୍ଷକ ଓ ଶିକ୍ଷକ ସଙ୍ଗଠନ ଉଦ୍ଦେଶ୍ୟର ଫର୍ମୁଲେସନ ଓ ବିକାଶରେ ଭାଗନେବା ଉଚିତ। ଉଦ୍ଦେଶ୍ୟ ଗୁଡ଼ିକର ରୂପାୟନ ଓ ଛାତ୍ର ଜୀବନର ଆଚରଣ ଗତ ପରିବର୍ତ୍ତନ ଶୀର୍ଷକ ବିଶ୍ଳେଷଣରେ ସେମାନେ ଅଂଶ ଗ୍ରହଣ କରିବେ। ଏହା ଏକ ସମ୍ମିଳିତ ପ୍ରକ୍ରିୟା ହେବ ଓ ଏଥିରେ ଉଦ୍ଦେଶ୍ୟାବଳି ସ୍ଥିରୀକରଣର ବିଷାରଦ, ଶିକ୍ଷାଶାସ୍ତ୍ରୀ, ସମ୍ବିଧାନ, ଶାସ୍ତଜ୍ଞ, ରାଜନୈତିକ ମନସ୍ୱୀ, ଶିକ୍ଷକ ଓ ଶିକ୍ଷା ସଙ୍ଗଠନ ସହଯୋଗ କରିବେ।

(୩) ଉଦ୍ଦେଶ୍ୟ ଆଧାରିତ ବିଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ କରାଯିବ । ଯେପରକୁ ହେଉଛି ଜାତୀୟ ସଂହତି, ଜାତୀୟ ଚରିତ୍ର, ଗଣତନ୍ତ୍ର, ଅବୈତନିକ ବାଧ୍ୟତାମୂଳକ ଶିକ୍ଷା, ପ୍ରୌଢ଼ଶିକ୍ଷା, ସମାଜବାଦୀ ଶିକ୍ଷା ଓ ସମାଜ ଇତ୍ୟାଦି । ଜାତୀୟ ସ୍ତରରେ ସ୍ଥିରୀ କୃତ ଲକ୍ଷ୍ୟ ଗୁଡ଼ିକର ପରିସୀମା ମଧ୍ୟରେ ପ୍ରତ୍ୟେକ ଶିକ୍ଷାୟତନ ନିଜର ଶକ୍ତି ଓ ସମ୍ବଳ ଅନୁସାରେ କାର୍ଯ୍ୟକାରୀ କରିବେ । ଏହାର ପ୍ରତ୍ୟନୁଭବ ଯୋଗୁଁ ସାଧ୍ୟ ତଥା ସହଜ ସାଧ୍ୟ ଲକ୍ଷ୍ୟଗୁଡ଼ିକୁ ଚିହ୍ନଟ କରାଯାଇ ପାରିବ । ଲକ୍ଷ୍ୟର ପୁନଃ ସ୍ଥିରୀକରଣରେ ମଧ୍ୟ ସାହାଯ୍ୟ ମିଳିବ ।

(୪) ସ୍କୁଲ ସ୍ତରରେ ଶିକ୍ଷକମାନେ ସ୍ୱାଧୀନ ହୋଇ ବ୍ୟକ୍ତିଗତ ଦାୟିତ୍ୱ ଓ ଅଭିକ୍ରମ ପ୍ରକାଶ କରିବାର ସୁଯୋଗ ପାଇବେ । ଆମର ସମୂହ ନିଷ୍ପତ୍ତି ଓ ସହଯୋଗ ସୂତ୍ରରେ ଯୋଜନା କରାଯିବ । କିନ୍ତୁ ସ୍କୁଲ ସ୍ତରରେ ଶିକ୍ଷକମାନେ ନିଜ ନିଜ ଶକ୍ତି ଅନୁସାରେ କାର୍ଯ୍ୟକରିବେ । ପ୍ରଣାଳୀ ପାଠ୍ୟକ୍ରମ, ପାଠ୍ୟପୁସ୍ତକ ଆଦି ଉଦ୍ଦେଶ୍ୟ ସାଧନ ସହାୟକ ଉପାଦାନ ଗୁଡ଼ିକର ବିକଳ୍ପ ସେଟ୍ ଗୁଡ଼ିକୁ ନେଇ ଶିକ୍ଷାୟତନ ପରିବେଶ ଓ ଶିକ୍ଷାର୍ଥୀମାନଙ୍କ ପୃଷ୍ଠ ଭୂମିର ବିଭିନ୍ନତା ଦୃଷ୍ଟିରୁ ପ୍ରୟୋଗ କରାଯିବ । ଏ ସବୁଥିର Rigidity ହେତୁ ଉଦ୍ଦେଶ୍ୟ ସାଧିତ ହୋଇ ପାରୁନାହିଁ । ଶିକ୍ଷାୟତନ, ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ସୃଜନାତ୍ମକ ବିକାଶ କରାଯାଇ ପାରୁନାହିଁ । କେଉଁଝର ଠାରୁ କୋରାପୁଟ ଯାଏଁ ଆଜି ସର୍ବତ୍ର ସମାନ ।

(୫) ଉଲ୍ଲିଖିତ ଶିକ୍ଷା ଉଦ୍ଦେଶ୍ୟ ସହାୟକ ବିକଳ୍ପ ଉପାଦାନ ଗୁଡ଼ିକ ବିଭିନ୍ନ ଶିକ୍ଷାୟତନରେ ଶିକ୍ଷକ ଓ ଶିକ୍ଷକ ସଂଗଠନ ଦ୍ୱାରା କରାଯାଇ ପାରିଲେ ରାଜ୍ୟ ଓ ରାଜ୍ୟାନ୍ତର ମଧ୍ୟରେ ଆଦାନ ପ୍ରଦାନ କରାଯାଇ ପାରିବ । ଶିକ୍ଷା ବିଭାଗର ସୀମିତ ସମ୍ବଳ ଏହି ବିରାଟ କାର୍ଯ୍ୟ ସମ୍ଭାଳି ପାରିବେ ନାହିଁ । ବରଂ ଶିକ୍ଷକ ଓ ଶିକ୍ଷକ ସଙ୍ଗଠନର ଉଦ୍ଦେଶ୍ୟ ଦ୍ୱାରା ସମୃଦ୍ଧ ହେବେ । ଏହା ଫଳରେ ଶିକ୍ଷକ ଓ ଶିକ୍ଷକ ସଙ୍ଗଠନ କେବଳ ଦାବୀପତ୍ର ଉପସ୍ଥାପନର ଅନୁଷ୍ଠାନ ନହୋଇ ଶିକ୍ଷାର ଗୁଣାତ୍ମକ ବିକାଶର ସୁଦୃଢ଼ ସ୍ତମ୍ଭ ହୋଇ ପାରିବେ । ରାଜ୍ୟ ଓ ରାଜ୍ୟାନ୍ତରରେ ଏ ପ୍ରକାର ଆଦାନପ୍ରଦାନ ଦ୍ୱାରା ସଂହତି ଓ ସମ୍ପର୍କ ବୃଦ୍ଧି ପାଇବ ଓ ଶିକ୍ଷାର ମାନ ଉନ୍ନତ ହେବ ଏହାହିଁ ହେଉଛି ନୂତନ ଶିକ୍ଷା ପଦ୍ଧତିର ଉଦ୍ଦେଶ୍ୟ ।

(୬) ଶିକ୍ଷାର ଉଦ୍ଦେଶ୍ୟକୁ ଯାହାକୁ ଗୋଟିଏ କଥାରେ କୁହାଯାଇଛି "ବାନା ଉପରେ ଅବନା" କରି ଛାଡ଼ିଦେଲେ ଚଳିବ ନାହିଁ । କିମ୍ବା ଏହାକୁ ସେହି ଫାଇଲର ରକ୍ଷକଙ୍କ ଫାଇଲର ନାଲିଫିତାରେ ବାନ୍ଧି ଦିଆଯିବ ନାହିଁ । ଏହା ଶିକ୍ଷାର୍ଥୀ ଓ ଅଭିଭାବକଙ୍କ ହାତ ପାହାନ୍ତିରେ ରହିବ । ସେ ଦୃଷ୍ଟିରୁ ସଚେତନ ଶିକ୍ଷକ ଓ ଶିକ୍ଷକ ସଙ୍ଗଠନ ବଳିଷ୍ଠ ଭୂମିକା ଗ୍ରହଣ କରିପାରିବେ । ଜାତୀୟ ଓ ସାମ୍ବିଧାନିକ

ଲକ୍ଷ୍ୟଗୁଡ଼ିକୁ ଶିକ୍ଷାୟତନ ସ୍ତରରେ ବାସ୍ତବ ରୂପ ଦିଆଯିବ । ଏପରିକି ଅଭିଭାବକ ଶିକ୍ଷକ ଓ ଶିକ୍ଷାର୍ଥୀ, ବିଶେଷକରି ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ସହଯୋଗରେ ଲକ୍ଷ୍ୟର ସ୍ଥିରୀକରଣ ଅଭ୍ୟୁଦୟ କରାଯାଇ ପାରିବ ।

□□□

# ବେରବୋଇ ଏକ ପାବନ ପୀଠର ପବିତ୍ର ସ୍ମୃତି ଚାରଣ

ପ୍ରଖ୍ୟାତ ପୁରୀ ଜିଲ୍ଲାର ଅଖ୍ୟାତ ପଲ୍ଲୀ ବେରବୋଇ ବିଶେଷ କରି ଦେଶର ମୁକ୍ତି ସଂଗ୍ରାମ ଓ ଦେଶ ଗଠନର ଇତିବୃତ୍ତିରେ ଐତିହାସିକ ଭୂମିକା ଆଜିର ସମୟରେ ଉଲ୍ଲେଖନୀୟ । ସରକାରୀ ଉଚ୍ଚ ବିଦ୍ୟାଳୟ, ବେରବୋଇ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଏହା ସ୍ମରଣୀୟ ।

ବିସ୍ମୟାଭିଭୂତ ହେବାକୁ ପଡ଼େ, ଯେତେବେଳେ ଆମେ ମନେ ପକାଇବା ଜାତିର ଜନକ ବାପୁ ଏଠି ତାଙ୍କ ପାଦ ରଖିଥିଲେ । ତାଙ୍କ ସହିତ ମା କସ୍ତୁରବା ବି ଥିଲେ । ଆହୁରି ମଧ୍ୟ ସ୍ତମ୍ଭୀଭୂତ ହେବାକୁ ପଡେ ଯେତେବେଳେ ଆମେ ଜାଣିଲୁ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଏଠାକୁ ଆସିଛନ୍ତି । ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ମନ୍ତ୍ରୀ ମଣ୍ଡଳରେ ଯେଉଁମାନେ ଦେଶକୁ ନେତୃତ୍ୱ ଦେଇଛନ୍ତି ସେମାନଙ୍କ ମଧ୍ୟରୁ ସରଦାର ବଲ୍ଲଭ ଭାଇ ପଟେଲ, ମୌଲାନା ଆବୁଲ କାଲାମ ଆଜାଦ, ପଣ୍ଡିତ ଗୋବିନ୍ଦ ବଲ୍ଲବ ପନ୍ଥ ପଦାର୍ପଣ କରିଛନ୍ତି । ବିଶିଷ୍ଟ ଜନସେବକ ଓ ଚିନ୍ତା ନାୟକ ହୃଦୟ ନାଥ କୁଞ୍ଜୁରୁ, ଆଚାର୍ଯ୍ୟ କେ.ବି. କପାଳିନୀ, ଡକ୍ଟର ପ୍ରଫୁଲ୍ଲ ଘୋଷ, କିଶୋର ଲାଲ ମଶ୍ରୁବାଲା, ଗଙ୍ଗାଧର ରାଓ କେଶପାଣ୍ଡେ, ସାହେବ କାଲେଇ କର, ଦାଦା ଧର୍ମାଧିକାରୀ, ଆର ଆର ଦିବାକର, ମହାଦେବ ଦେଶାଇ ଓ କ୍ଷତୀଶ ରାୟ ଚୌଧୁରୀ ଆସିଛନ୍ତି । ଆହୁରି ମଧ୍ୟ ଯୋଗ ଦେଇଛନ୍ତି ମା ` ରମା ଦେବୀ, ଆଚାର୍ଯ୍ୟ ହରିହର ପ୍ରମୁଖ ଆମ ରାଜ୍ୟର ସ୍ୱଦେଶବତ୍ସଳ ଗାନ୍ଧୀବାଦୀ ମନୀଷୀଗଣ ତା ୨୫-୩-୧୯୩୮ ମସିହାରୁ ସାତଦିନ ବ୍ୟାପୀ ଅଖିଳ ଭାରତୀୟ ଗାନ୍ଧୀସେବା ଦ୍ୱିତୀୟ ସଂଘ ଅଧିବେଶନ ଅନୁଷ୍ଠିତ ହେଉଥାଏ । ସେ ପୁଷ୍କରିଣୀ ଆଜି ମଧ୍ୟ ଅଛି । ବିଭିନ୍ନ ସମୟରେ ପଙ୍କୋଦ୍ଧାର ସତ୍ତ୍ୱେ ଏହାର ଆୟତନ ଓ ଗଭୀରତା ଏହି ବାଷଠି ବର୍ଷ ମଧ୍ୟରେ କମି ଯାଇଥାଇପାରେ । ଅବକ୍ଷୟର କ୍ରୂର ଚକ୍ଷୁ ଛାଡି ନଥିବ । ନଶ୍ୱର ମନୁଷ୍ୟର ସକଳ ପ୍ରଚେଷ୍ଟା ପରାଭୂତ ହୋଇଥିବ । ଯେଉଁମାନେ ଦେଖିଛନ୍ତି ସେମାନେ ସାକ୍ଷ୍ୟ ଦିଅନ୍ତି, ପୋଖରୀ ତୁଠରେ

ବାପୁ ଲୁଗା କାଚୁଥାନ୍ତି ସ୍ନାନ କରୁଥାନ୍ତି ପ୍ରତ୍ୟୁଷରେ। ଏହି ଦୃଶ୍ୟ ଦେଖୁଥାନ୍ତି ପୋଖରୀର ବିପରୀତ ତୁଠାରେ ପ୍ରବଳ ଭିଡ ମଧ୍ୟରେ ନରନାରୀ, ବାଳ, ବୃଦ୍ଧ ଓ ଯୁବା। ବାଙ୍ଗର ପିଲାମାନେ ଡେଙ୍ଗା ମଣିଷଙ୍କ କାନ୍ଧରେ ବସି ବା ତେରା ହୋଇ ସେହି ଦୃଶ୍ୟ ଦେଖୁଥାନ୍ତି। ବର୍ଷକ ପୂର୍ବରୁ ସ୍ଥାନ ନିର୍ବାଚନ କରାଇଥାନ୍ତି ସ୍ୱୟଂ ମହାତ୍ମାଜୀ ଓ ତାଙ୍କ ନିର୍ଦ୍ଦେଶରେ ଶିବିରାର୍ଥୀ ମାନଙ୍କ ପାଇଁ କ୍ଷୀର, ଚାଉଳ, ପନିପରିବା ଆଦି ଯାହା ଆବଶ୍ୟକ ସେ ସବୁ ବାହାରୁ ନ ଆସି ସେହି ଅଞ୍ଚଳରୁ ଉତ୍ପାଦନ କରାଯାଉଥାଏ।

ଏହି ପୃଷ୍ଠଭୂମିରେ ଆମେ ସ୍ମରଣ କରିବା ୧୯୫୦ ମସିହା ସେପ୍ଟେମ୍ବର ମାସ ପ୍ରଥମଦିନ। ପୂର୍ବ ମୌଳିକ ଓ ପ୍ରଥମ ସୋପାନକୁ ଧରି, ଦୁଇଜଣ ତାଲିମ ପ୍ରାପ୍ତ ଗୁରୁଜୀଙ୍କୁ ନେଇ ମୌଳିକ ଶିକ୍ଷାର ଶୁଭାରମ୍ଭ କରାଯାଏ। ଆଦର୍ଶ ଭାବରେ ଥାନ୍ତି ସେହି ଚିର ନମସ୍ୟ ମହାମାନବ ମହାତ୍ମାଜୀ ଓ ତାଙ୍କ ସହକର୍ମୀଗଣ। ୧୯୩୮ ମସିହାରୁ ପ୍ରତିଷ୍ଠିତ ଆଶ୍ରମ ମଧ୍ୟ ଥାଏ। ଏହାର ପରିଚାଳନା କରୁଥାନ୍ତି ସ୍ୱପ୍ନବାଦୀ ପଣ୍ଡିତ କୃପାସିନ୍ଧୁ ହୋତା ଯେ କୋଡି କୋଦାଳରେ ବିଶ୍ୱବିଦ୍ୟାଳୟର ସ୍ୱପ୍ନ ଦେଖୁଥାନ୍ତି ଓ ସେଦିଗରେ ବିଶ୍ୱାସ ରଖି କହି ଚାଲିଥାନ୍ତି।

୧୯୫୦ ମସିହା ବେଳକୁ ଶ୍ରୀ ନବକୃଷ୍ଣ ଚୌଧୁରୀ ରାଜ୍ୟର ଆବଶ୍ୟକତା ଅନୁସାରେ ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କରନ୍ତି ଓ ଏହି ଅକିଞ୍ଚନ ଲେଖକ ଆମ ରାଜ୍ୟର ମୌଳିକ ଶିକ୍ଷା ସଂଗଠକର ଦାୟିତ୍ୱ ବହନ କରିଥାଏ। ମୋ ପାଇଁ ଅସମ୍ଭବ ଓ ଅସମ୍ଭାଳ ହେଲେ ହେଁ ମୋ ଶିକ୍ଷକ ଓ ହିତାକାଂକ୍ଷୀ ଡକ୍ଟର ବଳଭଦ୍ର ପ୍ରସାଦ D.Sc (London)ଙ୍କ ଉପଦେଶ ଅନୁସାରେ ଲାଗି ପଡିଥାଏ। ଆମ ସଦର ମହକୁମା ଅନୁଗୁଳ, ସେଠୁ କୋରାପୁଟ ଜିଲ୍ଲା ନବରଙ୍ଗପୁର ମୌଳିକ ଶିକ୍ଷା ସଘନ ଅଞ୍ଚଳ ପରିଦର୍ଶନ କରିବାର ଏକମାତ୍ର ଯାତ୍ରା ପଥ ଥିଲା ବସରେ ମେରାମଣ୍ଡଳୀ ଯାଇ ସେଠୁ ରେଳ ଯୋଗେ ବିଜୟ ନଗର ଷ୍ଟେସନରେ ଓହ୍ଲାଇ ବସ ଯୋଗେ ଯିବାକୁ ପଡ଼ିବ। ଶୁଣିବାମାତ୍ରେ ପ୍ରାଣ ଉଡ଼ିଯାଉଥାଏ। ବେରବୋଇରେ ମୌଳିକ ବିଦ୍ୟାଳୟ ଖୋଲିବା ଫଳରେ ତାଳଚେର ପୁରୀ ଗାଡ଼ିରେ ସକାଳେ ଡେଲାଙ୍ଗ ଷ୍ଟେସନରେ ଓହ୍ଲାଇ ବେରବୋଇରେ କିଛୁ କାମ ଓ ବିଶ୍ରାମ ନେଇ କଟଣୀ ମେଲଗାଡି ଧରିପାରିଛି। ଆକସ୍ମିକ ପରିଦର୍ଶନ ହୋଇପାରିଛି, କର୍ତ୍ତବ୍ୟ ନିଷ୍ଠ ହୋଇପାରିଛି। ଠାକୁର ଦେଖା ଓ କଦଳୀ ବିକା ପରି ନବରଙ୍ଗପୁର ଯାତ୍ରା ସହିତ ବେରବୋଇ ଅଗ୍ରଗତି ଲକ୍ଷ୍ୟକରି ପରାମର୍ଶ ଦେଇଛି ତଥା ମିତବ୍ୟୟିତା ଅବଲମ୍ବନ କରିଛି। ଦି ପ୍ରହର ଫୁରୁସତ ବେଳାରେ ଗ୍ରାମବାସୀଙ୍କ ସହିତ ଦୁଃଖ ସୁଖ ହେଉଁ ହେଉଁ ସହଯୋଗ ପାଇଛି।

ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଲେଖାଟିଏ ପ୍ରସ୍ତୁତ କଲାବେଳେ ପରିଦର୍ଶନ ମନ୍ତବ୍ୟ ଥାଇପାରେ ବୋଲି ଚିନ୍ତା କରୁ କରୁ ସୌଭାଗ୍ୟକ୍ରମେ ବେରବୋଇ ମୌଳିକ ବିଦ୍ୟାଳୟ ପରିଦର୍ଶନ ମନ୍ତବ୍ୟ ମୋ ହସ୍ତଗତ ହୋଇଛି। ଆନନ୍ଦର ସହିତ ସେଥିରୁ କେତେକ ଉଦ୍ଧୃତ ନିମ୍ନରେ ଦେଇଛି। ମନେହୁଏ ସେଗୁଡ଼ିକ ଆଜି ଶିକ୍ଷା, ଶିକ୍ଷକ, ଶିକ୍ଷାର୍ଥୀ, ଶିକ୍ଷା ପରିଦର୍ଶକ, ଅଭିଭାବକ ଓ ଶିକ୍ଷା ଯୋଜନା ପ୍ରଣୟନକାରୀ ମାନଙ୍କ ପାଇଁ ଉପାଦେୟ ହୋଇପାରେ।

ତା୩୧-୧୦-୫୦

୧୯୫୦ ମସିହା ସେପ୍‌ଟେମ୍ବର ପହିଲାରେ ଏଠାର ମୌଳିକ ବିଦ୍ୟାଳୟ ସ୍ଥାପିତ ହେଲା। ସ୍ଥାନର ପରମ୍ପରା, ଭୂମି ପରିମାଣ, ଜଳର ସୁବିଧା ଏବଂ ପାରିପାର୍ଶ୍ୱିକ ଅବସ୍ଥା ଦୃଷ୍ଟିରୁ ଏଠାରେ ଗୋଟିଏ ଆଦର୍ଶ ବିଦ୍ୟାଳୟ ସ୍ଥାପିତ ହୋଇପାରିବ। ଉତ୍ସାହୀ କର୍ମୀ, ନିଷ୍ଠାପର ଶିକ୍ଷକଙ୍କ ତତ୍ତ୍ୱାବଧାନ ଉପରେ ଏହାର ଭବିଷ୍ୟତ ନିର୍ଭର କରେ।.....

ତକଲି ଅଭାବରୁ ଧନ୍ଦାକାମ ଆରମ୍ଭ ହୋଇନାହିଁ। ଶୀଘ୍ର ତକଲି ଓ ଅନ୍ୟାନ୍ୟ ଉପକରଣ କିଣାଯାଇ ବିଦ୍ୟାଳୟ ସୂଚାରୁରୂପେ ଚାଲିବ। ଧନ୍ଦା କାର୍ଯ୍ୟ ନକଲେ ମୌଳିକ ଶିକ୍ଷାର ବୈଶିଷ୍ଟ୍ୟ କେଉଁଠାରେ ରହିଲା। ପିଲାମାନେ ବଗିଚାକାମ କିଛି କିଛି କରୁଛନ୍ତି। ବଗିଚା ଆୟର ହିସାବ ରଖିବାକୁ ହେବ।

ବିଦ୍ୟାଳୟ ପାଇଁ ପ୍ରଦତ୍ତ ଜମି ଦେଖିଲି। ନୂଆ ଜାଗାରେ ଘର, ବଗିଚା, ବାଟ ଆଦିର ନକ୍‌ସାଲି। ବଗିଚା ସ୍ଥାନରେ ଗଛ ଲଗାଇବାକୁ ହେବ। ନଡ଼ିଆ, ଲେମ୍ବୁ, କଦଳୀ, ଅମୃତଭଣ୍ଡା, ଆଦି ଗଛ ଲଗାଇବା ଉଚିତ। ପୋଖରୀ ହୁଡ଼ାରେ କଦଳୀ, ନଡ଼ିଆଗଛ ଲଗାଇବା ଉଚିତ। ଏଠାରେ ଜଳର ଅଭାବ ନାହିଁ। ଭୂମି ଉର୍ବର। ତେଣୁ ବିଦ୍ୟାଳୟଟି କିପରି ସ୍ୱାବଲମ୍ବୀ ହୋଇପାରିବ ସେ ଦିଗରେ ଆଜଠୁଁ ଯତ୍ନ କରିବା ଉଚିତ। ଗ୍ରାମବାସୀ ଓ ଶିକ୍ଷକମାନେ ସମୟ ନଷ୍ଟ ନକରି ଶୀଘ୍ର କାର୍ଯ୍ୟ କଲେ ବିଦ୍ୟାଳୟଟି ବଢ଼ିବା ସଙ୍ଗେ ସଙ୍ଗେ ସ୍ୱାବଲମ୍ବୀ ହୋଇପାରିବ। ବିଦ୍ୟାଳୟ ପ୍ରତି ନିଜର ସହାନୁଭୂତି ନିଦର୍ଶନ ସ୍ୱରୂପ ଗ୍ରାମବାସୀ ଆଜଠୁଁ କିଛି କିଛି ଗଛ ଲଗାଇବେ।

x x x

ଏଠାରେ କାମ କରିବାର ଯଥେଷ୍ଟ ସୁଯୋଗ ଅଛି। ବର୍ତ୍ତମାନ ଆଶ୍ରମର ଯେଉଁ ବଗିଚା ଅଛି ତାହା ହିଁ ଆମ ଆଦର୍ଶ ହେବା ଉଚିତ। ତାହାହେଲେ ଆମ ଦେଶର ଛାତ୍ରମାନେ "ବାସ୍ତବପାଠ" ଅଧ୍ୟୟନ କରିବେ ଓ ବାପୁଜୀଙ୍କ ବାଣୀ ସାର୍ଥକ ହେବ।

ଗୃହଗୁଡ଼ିକ ଆହୁରି ସୁରୁଚି ସମ୍ପନ୍ନ ହେବ। ପିଲାମାନେ ନୂତନ ବାତାବରଣ ପାଇବେ ଓ ଅନୁଷ୍ଠାନରେ ରହିବାକୁ ଆନନ୍ଦ ପ୍ରକାଶ କରିବେ। ଗୁରୁଜୀମାନେ ଏ ଦିଗରେ ଚିନ୍ତା କରିବେ ା ଗୋଟିଏ ମୂତ୍ରଶାଳା ବନ୍ଦ ହେବା ପୂର୍ବରୁ ଅନ୍ୟ ଗୋଟିଏ ତିଆରି କରାଯିବ। ଗୋଟିଏ ବନ୍ଦ କରି ଅନ୍ୟଟିର ନିର୍ମାଣ ପାଇଁ ସମୟ ରଖିବା ଅସଙ୍ଗତ। କମ୍ପୋଷ୍ଟଖତ ଯଥାରୀତି ପ୍ରସ୍ତୁତ ହେବ। ଏହି ଆଶ୍ରମର ପାଇଖାନା, ମୂତ୍ରଶାଳା, ସଫାଇ ଓ ସ୍ୱଚ୍ଛତା ଦୃଷ୍ଟିରୁ ଆଦର୍ଶ ସ୍ଥାନୀୟ ମୁଁ ମନେ କରେ।

x x x

ସୂତ୍ରଯଜ୍ଞରେ ଯୋଗଦାନ କଲି। ବଳଣାଗୁଡ଼ିକ ଠିକ୍ ଢଙ୍ଗରେ କରାଯାଇନାହିଁ। ଓକନ ଅତି କମ୍, ଟାଣ ନୁହେଁ, ତୁଳା ସଫା କରାଯାଇନାହିଁ। ଏ ସବୁ ପ୍ରତି ଗୁରୁଜୀଙ୍କ ନଜର ନଦେବା ପରିତାପର ବିଷୟ। ସୂତ୍ରଯଜ୍ଞ ବେଳରେ ଶାନ୍ତିରକ୍ଷା ପ୍ରତି ଦୃଷ୍ଟି ଦିଆଯିବ। ପିଲାମାନେ ଧାଡ଼ି କରି ବସିବେ। ନିମ୍ନସୋପାନରେ ସୂତାକାମ ଆରମ୍ଭ କରୁଥିବା ଛାତ୍ରମାନଙ୍କୁ ସାହାଯ୍ୟ ଦିଆଯିବ।

ଗତବର୍ଷ କୃଷିରୁ ଟ.୧୬୩ ଆୟ କରାଯାଇ ଟ୍ରେଜେରୀରେ ଦାଖଲ କରାଯାଇଥିଲା। ଟ.୬୬ (ସତଷଠି ଟଙ୍କା ପନ୍ଦର ଅଣା ତିନି ପାହି) ଦାମର ସାମଗ୍ରୀ ଜଳଖିଆ ଆକାରରେ ଦିଆଯାଇଥିଲା। ନଡ଼ିଆ ଗଛ ଲଗାଇବା ପାଇଁ ଗତବର୍ଷ ଟ.୧୦୦.୦୦ ମିଳିଥିଲା। ୧୦୨ ଟି ନଡ଼ିଆ ଗଛ ଲଗା ଯାଇଥିଲା। ବର୍ତ୍ତମାନ ୯୮ ଟା ଗଛ ବଞ୍ଚିଛି। ଏହି ଗଛ ଗୁଡ଼ିକର ଯତ୍ନ ନେବା ଉଚିତ। ଏଗୁଡ଼ିକ ବଢ଼ିଗଲେ ଉତ୍ପାଦନ ଯଥେଷ୍ଟ ବଢ଼ିବ। ଅନୁଷ୍ଠାନର ଆୟରୁ ପିଲାମାନେ ପ୍ରତିଦିନ ଖାଇବାକୁ ପାଇବେ। ଏପରି ଅନୁଷ୍ଠାନ ବର୍ତ୍ତମାନ ଆଲୋଚନାର କଥା ବସ୍ତୁ ହୋଇଅଛି। ଗୁରୁଜୀମାନେ ଏହାକୁ କାମରେ ଦେଖାଇବେ। ନଡ଼ିଆ ଗଛ ପାଇଁ ମିଳିଥିବା ଟଙ୍କାରୁ ଟ.୧୪ଙ୍କା ବାକି ଅଛି। ଏହା କିପରି ଖର୍ଚ୍ଚ କରାଗଲା ଗୁରୁଜୀ ଜଣାଇବେ। ଅନୁଷ୍ଠାନର ସମସ୍ତ ଜମିରେ ଫସଲ ଲାଗିଛି ଆନନ୍ଦର କଥା।

ବଗିଚାରେ ଲାଗିଥିବା ଯେ କୌଣସି ଗୋଟିଏ ଗଛ ବା ଫସଲର ଦୈନିକ ବିବରଣୀ ପିଲାମାନେ ଲେଖି ରଖିବେ। ପ୍ରତିଦିନ ସେହି ଗଛର କି ପ୍ରକାର ବୃଦ୍ଧି ହେଲା ଓ ଚାଷ ପାଇଁ କି ପ୍ରକାର କାମ କରାଗଲା ଏହା ଟିପା ଯିବ। ପିଲାମାନେ ଏସବୁ ଏପରି ପର୍ଯ୍ୟବେକ୍ଷଣ କରିବେ ଯେ-

(୧) କେତେଦିନ ପରେ ଫୁଲ ଧରିଲା।

(୨) ଫଳ ପାଚିଲା।

(୩) ଗଛ ବଢ଼ିବାର ଗତି କେତେ ?

(୪) ମୋଟ ଉତ୍ପାଦନ କେତେ ? ଇତ୍ୟାଦି ପ୍ରଶ୍ନର ଉତ୍ତର ଦେଇ ପାରିବେ । ଏ ପ୍ରକାର କାମ ୩ୟ ବା ତଦୂର୍ଦ୍ଧ୍ୱ ସୋପାନରେ କରାଯିବ, କିନ୍ତୁ ତଳ ସୋପାନରେ ପ୍ରାରମ୍ଭିକ କାର୍ଯ୍ୟ କରାଯାଇପାରେ । ମୂଳୋଦ୍ୟୋଗରେ ଟ.୫୧ (ଏକାବନଟଙ୍କା ବାରଅଣା) ଖର୍ଚ୍ଚ କରାଯାଇ ସେ ସାତଟଙ୍କା ପନ୍ଦରଅଣା ସୂତା ଉତ୍ପାଦନ କରାଯାଇଥିଲା । ଆୟବ୍ୟୟ ଯଥାକ୍ରମେ ଟ.୨୯ଙ୍କା ଓ ଟ.୫୧ (ଏକାବନ ଟଙ୍କା ବାରଅଣା) ହୋଇଥିଲା । ବ୍ୟୟ ତୁଳନାରେ ଆୟ କମ୍ । ଏହାର କାରଣ ଗୁରୁଜୀ ଅନୁସନ୍ଧାନ କରି ମୋତେ ଜଣାଇବେ । କପା ଆମଦାନୀ ଗତବର୍ଷ ପ୍ରାୟ କିଛି ନଥିଲା । ଏହା ଉପରେ ଏବର୍ଷ ଜୋର ଦିଆଯିବ । କେତେ ଗଛ ଭେଣ୍ଡି ବା ବାଇଗଣ ବନ୍ଦ କରି ସେ ସ୍ଥାନରେ କପା ଲଗାଇବା ଉଚିତ । ଗୁରୁଜୀ ଏହାର ଗୁରୁତ୍ୱ ମନେ ରଖିବେ । ଏହି ଧନ୍ଦାର ଆୟ ସ୍ୱରୂପ ଟ.୨୨ (ବାଇଶ ଟଙ୍କା ଆଠଅଣା) ଟ୍ରେଜେରୀରେ ଜମା ଦିଆଯାଇଥିଲା । ଏବର୍ଷ ଜମା ଥିବା ସମସ୍ତ ସୂତା ଓ ଲୁଗା ବିକ୍ରୟ କରି ଆସନ୍ତା ମାର୍ଚ୍ଚମାସ ପୂର୍ବରୁ ଟଙ୍କା ଟ୍ରେଜେରୀରେ ଜମା ଦିଆଯିବ । ପ୍ରତ୍ୟେକ ସୋପାନରେ ଜଣପିଛା ଉତ୍ପାଦନ କେତେ ହେଉଛି ଗୁରୁଜୀମାନେ ହିସାବ କରି ଦେଖିବେ । ପାଠ୍ୟ ତାଲିକାରେ ସୂଚିତ ମାନରୁ ଊଣା ବେଶୀ ଦେଖାଯାଇ କାରଣ ନିର୍ଦ୍ଦେଶ କରାଯିବ । ଗୁରୁଜୀମାନେ ଆଗ ପଛକୁ ଅନାଇ ସ୍ୱ ସ୍ୱ ଅନୁଭୂତିକୁ ବିଶ୍ଳେଷଣ କରିବେ ।

ଦୈନିକ ବିବରଣୀ ଗତାନୁଗତିକ ରୀତିରେ ଓ ନିରର୍ଥକ ଭାବରେ ଲେଖାଯାଉଛି । ଏହାକୁ ବାଗେଇବା ପାଇଁ ଉପଦେଶ ଦେଲି । ପ୍ରତ୍ୟେକ ଲିଖିତ କାମ ନିୟମିତ ଭାବରେ ସଂଶୋଧନ ହେବ । ପିଲାଙ୍କ ହସ୍ତାକ୍ଷର ପ୍ରତି ନଜର ଦିଆଯିବ । ପ୍ରତ୍ୟେକ ସୋପାନ ପାଇଁ ଗୁରୁଜୀମାନେ ସ୍କିମ କରିବେ ।

ଗୁରୁଜୀମାନେ ଅନୁଷ୍ଠାନଟିକୁ ଠିକ୍ ଢଙ୍ଗରେ ଚଳାଇବା ପାଇଁ ଚିନ୍ତା କରିବେ ।

**ତା୧୨-୧୨-୧୯୫୩**

ସୋପାନ ଗୃହ, ବାରଣ୍ଡା ଓ ବାହାରର ସଫାଇପ୍ରତି ଅଧିକ ଦୃଷ୍ଟି ଦିଆଯିବ । ପ୍ରତ୍ୟେକ ଦ୍ରବ୍ୟର ସୁସଜ୍ଜା ଏକାନ୍ତ ଆବଶ୍ୟକ । ଅନାବନା ହୋଇ ଜିନିଷ ପଡ଼ି ରହିବା ଉଚିତ ନୁହେଁ । ସୁସଜ୍ଜିତ ବାତାବରଣ ଫଳରେ ସୌନ୍ଦର୍ଯ୍ୟ ଜ୍ଞାନ ଜନ୍ମାଇବାକୁ ହେବ । ପୂର୍ବ ମୌଳିକ ସୋପାନର ପିଲାମାନଙ୍କର ସଫାଇ ପ୍ରତି ନଜର ଦିଆଯିବାରେ ସେମାନେ ପରୁଆ ଜଣା ପଡ଼ିଲେ । ସେମାନେ ପ୍ରଫୁଲ୍ଲ ଓ ସ୍ଫୂର୍ତ୍ତିଯୁକ୍ତ । ୨ୟ ଓ ୩ୟ ସୋପାନ ଦ୍ୱୟରେ ଧନ୍ଦା ସମ୍ପର୍କୀତ ଆଲୋଚନା ଉନ୍ନତ ଧରଣର ହେବ । ପିଲାମାନଙ୍କର ସ୍ପଷ୍ଟ ଧାରଣା ରହିବ । ବଳଣା ଗୁଡ଼ିକ ଭଲ ହେବ । ୪ର୍ଥ ଓ ୫ମ ସୋପାନରେ ଖାତା ଗୁଡ଼ିକ ରୀତିମତ ସଂଶୋଧିତ ହେବ ।

ବର୍ଣ୍ଣାଶୁଦ୍ଧି ଓ ଅକ୍ଷର ଉପରେ ନଜର ଦିଆଯିବ। ଗ୍ରାମ ସଂଯୁକ୍ତ ଦେବାଳୟ, ପୁଷ୍କରିଣୀ ଆଦିର ନାମ କରଣ ପ୍ରଚଳିତ କିମ୍ବଦନ୍ତୀ ସମ୍ବନ୍ଧରେ ଧାରଣା ରହିବ। ଅନୁଷ୍ଠାନର କାମ ଆହୁରି ଆଗେଇବା ଉଚିତ।

ଗୁରୁଜୀମାନେ ଆନନ୍ଦରେ କାମ କରୁଥିବା ସୁଖର କଥା। ସେମାନଙ୍କ ସମବେତ ଉଦ୍ୟମହିଁ ପ୍ରଧାନ କଥା।

x x x

୨୦-୭-୫୪

ଅନୁଷ୍ଠାନର ବାଡ଼ି ବଗିଚା କାମ ସନ୍ତୋଷଜନକ। ଏ ବିଷୟ ପ୍ରତି ଗୁରୁଜୀମାନେ ବିହିତ ଧ୍ୟାନ ଦେଇଅଛନ୍ତି। ସଫାଇ ଓ ସାଜସଜ୍ଜା ପ୍ରତି ଦୃଷ୍ଟି ଦେବା ଉଚିତ।

x x x

ସଂଗଠକ ଭାବରେ ଚାରିଥର ଓ ସହକାରୀ ସଂଗଠକ ଶ୍ରୀ ଉଦୟନାଥ ଆଚାର୍ଯ୍ୟ (ସେ ଇହ ଜଗତରେ ନାହାନ୍ତି) ଥରେ, ଏପରି ପାଞ୍ଚଥର ପରିଦର୍ଶନ କରାଯାଇଛି। ପରିଦର୍ଶନ ପରେ ଲିଖିତ ମନ୍ତବ୍ୟ ଦିଆଯାଇଛି। ମୋର ପ୍ରଥମ ପରିଦର୍ଶନ ବେଳକୁ ସଂଗଠକ ଭାବରେ ମୋତେ ଚାରିମାସ ଓ ସ୍କୁଲକୁ ପ୍ରତିଷ୍ଠା ଦିନରୁ ଦୁଇମାସ ହୋଇଛି। ଆମ୍ଭମାନଙ୍କର ମନ୍ତବ୍ୟ ଗଠନମୂଳକ। ଉତ୍ସାହପ୍ରଦ ଓ ମୌଳିକ ଶିକ୍ଷାନୁକୂଳ ହୋଇଛି। ପ୍ରଥମ ଗୁରୁଜୀ ଦ୍ୱୟ ଶ୍ରୀ କସ୍ତୁରୀ ଚରଣ ନାୟକ ଓ ଶ୍ରୀ ବଳଭଦ୍ର ମିଶ୍ର ( ଏ ଦୁହେଁ ମଧ୍ୟ ଇହ ଜଗତରେ ନାହାନ୍ତି ) କାର୍ଯ୍ୟ କରୁଥିଲେ। ଏମାନଙ୍କ ସ୍ଥାନରେ ଶ୍ରୀ ରାଧାଶ୍ୟାମ ମହାନ୍ତି ଓ ପଦ୍ମନାଭ ମହାନ୍ତି ଯୋଗ ଦେଇଥାଆନ୍ତି।

ଆଜି ଶିକ୍ଷାରେ ସ୍ୱାବଲମ୍ବନ, ମୌଳିକ ବିଦ୍ୟାଳୟ, ବୁନିୟାଦୀଶିକ୍ଷା, ଧନ୍ଦା କୈନ୍ଦ୍ରିକ ଶିକ୍ଷା, ରଚନାତ୍ମକ କାର୍ଯ୍ୟକ୍ରମ, ଏପରି ଶବ୍ଦ ଗୁଡ଼ିକୁ କେହି ଭଲ ଭାବରେ ବୁଝିପାରିବେ ନାହିଁ। ଏସବୁର ପ୍ରବକ୍ତା ମହାତ୍ମା ଗାନ୍ଧୀ ଓ ସେ ଆଜକୁ ୫୨ ବର୍ଷ ପୂର୍ବରୁ ଆମଦେଶ ଓ ବିଶ୍ୱରୁ ବିଦାୟ ନେଇଗଲେଣି। ଏପରି ରକ୍ତମାଂସର ଶରୀରରେ ଜଣେ ବ୍ୟକ୍ତି ଏହି ଧରାଧାମରେ ପଦଚାରଣ କରିଥିଲେ। ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନଙ୍କ ଆଶଙ୍କା ସତ୍ୟ ହେବାକୁ ଯାଉଛି। To Draw out the best in child and man-body, mind and spirit- ଶିକ୍ଷାର ଏହି ଅର୍ଥ ଆମେ ଘୋଷି ଦେଉଛୁ ସିନା କିନ୍ତୁ କାର୍ଯ୍ୟରେ କରିପାରିନାହୁଁ। ସେଇଥିପାଇଁ ଶିକ୍ଷିତ ବେକାର ଆମର ଭୂଷଣ ହୋଇଛି। ଶିକ୍ଷାର ବୈଷୟିକୀ କରଣ (Vocationalisation) କେବଳ ନାମମାତ୍ର ରହିଛି। ଉଦ୍ୟୋଗ ବିକାଶ

ଆଶାନୁରୂପ ସଫଳ ହୋଇପାରୁନାହିଁ । ଶିକ୍ଷା ପରୀକ୍ଷା କୈନ୍ଦ୍ରିକ ତଥା ପ୍ରମାଣ ପତ୍ର ସର୍ବସ୍ୱ ହୋଇରହିଛି । ସମ୍ଭାବିତ ପ୍ରଶ୍ନୋତ୍ତର ଓ ମାନେ ବହି ଘୋଷିବା ହିଁ ସାର ହେବାରେ ଲାଗିଛି । ଆମ ପୁସ୍ତକ କୀଟ ହେଉଛୁ । ବିଦ୍ୟା ଆମ ପ୍ରାଣରେ ମୁକ୍ତି ପରିବର୍ତ୍ତେ ଚାକିରି ଖୋଜି ନିଜକୁ ଦୃଢ଼ମନା, ଆତ୍ମନିର୍ଭରଶୀଳ, ଚରିତ୍ରବାନ, ଦୁଃସାହସିକ କରିପାରୁନାହିଁ । ସେ ଦିନର ଗୁରୁଜୀ ଶବ୍ଦଟି ଗୁରୁ ଓ ଶିଷ୍ୟ ସମ୍ପର୍କକୁ ନିବିଡ଼ କରୁଥିଲା । ଆଜି ଆମେ ଏପରି ଦୁଃ-ସ୍ଥିତିରେ ପହଞ୍ଚିଛୁ ଯେ ଗାନ୍ଧୀ ବିଚାର ଧାରାର ପାଳନ ଆମ ଜୀବନରେ ଅପରିହାର୍ଯ୍ୟ ହୋଇପଡ଼ିଛି । "ଗାନ୍ଧି ବୋଲ ଏବେ ମାନରେ", ସେ ବେଳର ଏହି ଡାକରା ଏ ବେଳରେ ଆମ କଥା, କାମ ଓ ଚିନ୍ତାରେ ପାଳନୀୟ ହୋଇପଡ଼ିଛି । ଶିକ୍ଷାରେ ପ୍ରତିଟି ମୁହୂର୍ତ୍ତ ଆମକୁ ପ୍ରେରଣା ଦେଉ, ଆମେ ଯେପରି ଗାନ୍ଧି ମାର୍ଗ ଅନୁସରଣ କରୁ ।

ପରିଶେଷରେ ତାଙ୍କ କଥା ମନରେ ଆଣିବା, କାମ ଅନୁସାରେ ତାଙ୍କ କଥା ତାଙ୍କ ଜୀବନୀ ଆମ ପାଇଁ ବାର୍ତ୍ତା । "ସତ୍ୟରେ ମୋ ପରୀକ୍ଷା" ହେଉଛି ତାଙ୍କ ଆତ୍ମଜୀବନ ଚରିତର ନାମ । ସେ କହିଥିଲେ ଆମ ଜୀବନରେ ଯେତେ ସାନ ହେଉ ପଛକେ ଏପରି କିଛି ନାହିଁ ଯାହା ଶିକ୍ଷାରେ କରଣୀୟ ନୁହେଁ । ବାଟରେ ଚାଲିବା, ଦାଣ୍ଡ ପହଁରିବା, ଭୋଜନ କରିବା, ବିଦ୍ୟାଳୟ ବା ପରିବାରରେ ଗଛଟିଏ ପୋତିବା, ବାଡ଼ିବଗିଚା କରିବା, ଲୁଗାପଟା କାଚିବା, ସ୍କୁଲଘର ଓ ବାହାର ଓଳାଇବା, ପରିଶ୍ରା କରିବା-ଏପରି ସବୁ ଛୋଟ ଛୋଟ କାମ କରି ଶିକ୍ଷା ପାଇବା, ସ୍ୱାବଲମ୍ବୀ ହେବା ଓ ବିଦ୍ୟାଳୟ ପାଇଁ ଉପାର୍ଜନ କରିବା ଏପରି ସବୁକାମର "ପକ୍ରିୟା ଓ ପରିଣତି" ଅଛି ସେଥିରେ "କାହିଁକି ଓ କିପରି" ବିଷୟରେ ଚିନ୍ତା କରିବା, ନୋହିଲେ କାମ ବଳଦିଆ ହେବ ।

□□□

# ଲୋକ ଧର୍ମ ଓ ଲୋକ କବି

ଗ୍ରାମର ଧର୍ମ ମହିମା ଧର୍ମ । ଏହାର ଗ୍ରାମାଭିମୁଖିତା ସୁପରିଚିତ ଓ ସୁବିଦିତ । ସ୍ୱଚ୍ଛ, ସରଳ ଓ ସୁନ୍ଦର ହେଉଛି ପଲ୍ଲୀର ଜୀବନ । ଅନାବିଳ ଓ ଆନନ୍ଦମୁଖର ତା'ର ଧ୍ୱନି । ଏହାହିଁ ସମ୍ଭବତଃ ଅନୁକୂଳ ପରିବେଶ ମହିମା ଧର୍ମର ପରିପ୍ରକାଶ ପାଇଁ । ଲୋକମୁଖରେ ମହିମା ଧର୍ମ କୀର୍ତ୍ତିତ । ଅଲେଖ ଟୁଙ୍ଗୀ ଓ ଖଞ୍ଜଣୀ ଭଜନ ଥିଲା ପଲ୍ଲୀ ଜୀବନର ବୈଶିଷ୍ଟ୍ୟ । ଗାଉଁଲି କଥାରେ ମହିମା ସନ୍ନ୍ୟାସୀ ଚିତ୍ରିତ ହୁଅନ୍ତି

ଯେ "ଚୋରାଣୀ ମୁଦେ, ତେନ୍ତୁଳି ଫୁଟେ; ଯା ଅବଧୂତ ବାଟେ ବାଟେ ।" ଆହୁରି ମଧ୍ୟ କୁହାଯାଏ, "ଅଇଲେ ଜଟାଧାରୀ, ଶୋଇଲେ କୁଟାପାରି, ଖାଇଲେ ଠୁଙ୍ଗା ମାରି, ଚାଲିଲେ ଠେଙ୍ଗା ଧରି ।" ବସ୍ତୁତଃ ଏହାହିଁ "ସୁଖଭୋଗ ତେଜ୍ୟା କରି, ଭୂମି ଆପନେ ବିହରି"ର ଗ୍ରାମୀଣ ସଂସ୍କରଣ । "ଅକଳଣ ବାରନିଧି ନାମ ମହିମା ଅଗାଧ"ର ଆକଳନ ଲୋକତୁଣ୍ଡରେ ବେଶ୍ ମନଗୁହ୍ମକର ଅଥଚ ହୃଦୟଗ୍ରାହୀ ଯେ "ଭୀମଭୋଇଙ୍କ ଭଜନ, କିଏ ଜରିବ ଓଜନ ?" ଭଜି ଭଜି ସିନା ଭଜନ । ଲେଖି ଲେଖି ସେ ମହାପ୍ରଭୁ ଅଲେଖ ଏବଂ ଅଣଲେଖ ହୋଇ ଜଗତ ଭଗତଙ୍କ ପ୍ରାଣରେ ଘନିତ ହୁଅନ୍ତି ।

ମହିମା ଧର୍ମର ପ୍ରଣେତା, ପ୍ରବକ୍ତା ଓ ପ୍ରତିଷ୍ଠାତା ହେଉଛନ୍ତି ମହିମା ସ୍ୱାମୀ । ସେ ମଧ୍ୟ ମହିମା ଗୋସାଇଁ । ଲୋକତୁଣ୍ଡରେ ସେ ମହାପୁରୁ । ସେ ପ୍ରଭୁ; ସେ ମହାବ୍ରହ୍ମ । ସେ ଅଖଣ୍ଡ, ଅବ୍ୟୟ, ଚିଦାନନ୍ଦମୟ ମହିମା ସାଗର । "ନିର୍ବେଦରୁ ସମ୍ଭୂତ" ସେ ମହିମା ଅବଧୂତ । ସାଧାରଣ କବି ଭାଷାରେ, "ନାହିଁ ତାଙ୍କ ତାତମାତ, ସର୍ବେ ତାଙ୍କଠାରୁ ଜାତ ।" ତାଙ୍କଠାରୁ ଏତେବଡ଼ ଜ୍ଞାନ ଦାଣ୍ଡ ଘାଟରେ ବହିଗଲା ବୋଲି କୁହାଯାଇଛି । ଉପନିଷଦର ଯୁଗ ପରେ ବ୍ରହ୍ମବିଦ୍ୟାର ମୁଦା ପଡ଼ିଗଲା । ଏହାର ଖିଲକୁ ଖୋଲିନେଲେ ମହିମାସ୍ୱାମୀ । ସବୁଠାରୁ ବଡ଼ ଜ୍ଞାନ ବ୍ରହ୍ମଜ୍ଞାନ ମାନବସମାଜକୁ ମିଳିଗଲା । ମହିମା ନାମ ମହୀରେ ହୋଇଲା ବୁଣା । ଭୀମଭୋଇ ଆନନ୍ଦରେ ଡାକ ଦେଲେ, "ଜଗତ ଜଗତ ଜନ ଆସ ଲୋଡ଼ିବା ପ୍ରଭୁଙ୍କୁ ।" ସେହି ଭଜନରେ ସେ ମଧ୍ୟ ଜଣାଇଲେ, "ସାଧୁସନ୍ଥ ସୁଷଜନ, ଯେ ଅଛ ଜଗତେ ଜାଣ, ହାକିମ ହୁକୁମା ଯେହୁ କହୁଅଛି ସମସ୍ତଙ୍କୁ ।" କାହା ପାଇଁ ଏହା ମନା ନୁହେଁ । ଜାତି, ଗୋତ୍ର, ବର୍ଣ୍ଣ, ସମ୍ପ୍ରଦାୟ ନିର୍ବିଶେଷରେ ସମସ୍ତଙ୍କ ଧର୍ମ ମହିମା ଧର୍ମ ।

ହିମାଳୟର ଗିରିକନ୍ଦରରେ ମହିମା ସ୍ୱାମୀ ରହିଥିଲେ । ସେ ସଦା ଅପ୍ରକଟ । ବାୟୁପାନ କରୁଥାନ୍ତି । ଗୁପ୍ତ ସନ୍ନ୍ୟାସ ବେଶରେ ସେ ଯୁଗ ଯୁଗ ଅତିବାହିତ କରୁଛନ୍ତି । ଏହାର କଳନା ଇତିହାସରେ ନାହିଁ । ସ୍ୱଇଚ୍ଛାରେ ସେ ଅବତରଣ କରିଛନ୍ତି ହିମାଳୟରୁ । ପରିଶେଷରେ ସେ ଦର୍ଶନ ଦିଅନ୍ତି ୧୮୨୬ ଖ୍ରୀଷ୍ଟାବ୍ଦରେ । ଭୀମଭୋଇ ଲେଖିଛନ୍ତି, "ପୃଥ୍ୱୀ ଭାରାଭାର ଦେଖି ଗୋ । ପ୍ରଭୁ ଶୂନ୍ୟୁ ଓହ୍ଲାଇଲେ ମୋ ।" ସେ ଆତଙ୍କନାଶନ । ସେ ଅଭୟ ଦିଅନ୍ତି, ଆଶ୍ରିତ ତାଙ୍କଠାରୁ ଆଶିଷ ଲଭାନ୍ତି । ସେ ଧୂଳିଆ ଗୋସାଇଁ ଭାବରେ ପରିଚିତ ଧୂଳିରେ ଶୟନ ଓ ଉପବେଶନ କରନ୍ତି । ସ୍ୱଳ୍ପ, ମୃଦୁ ଓ ମିତ ବଚନ କହି ଲୋକଙ୍କୁ ଆକର୍ଷିତ ଓ ଆପଣାର କରନ୍ତି । ମୁକ୍ତିମଣ୍ଡପର ନିମନ୍ତ୍ରଣ କ୍ରମେ ବ୍ରହ୍ମର ସ୍ୱରୂପ ବର୍ଣ୍ଣନ କରନ୍ତି । ଜଳ, ଫଳ ଓ କ୍ଷୀର

ଆହାର କରନ୍ତି ପ୍ରତିଦିନ ବାରବର୍ଷ କରି ଓ ନିକେ ପରିଚିତ ହୁଅନ୍ତି ଜଳାହାରୀ, ଫଳାହାରୀ ଓ କ୍ଷୀରାହାରୀ ଗୋସାଇଁ ଭାବରେ । ଏପରି ୩୬ ବର୍ଷ ଅତିବାହିତ ହେଲା ପରେ ୧୮୬୨ ମସିହାରୁ ମହିମାସ୍ୱାମୀଙ୍କ ମହିମାଧର୍ମ ଜଗତଜନଙ୍କ ହିତପାଇଁ ପରିପ୍ରକାଶ ଲଭେ ।

ଇତିମଧ୍ୟରେ ଚଉଷଠି ସିଦ୍ଧପନ୍ଥୀ ଅନନ୍ତ କୋଟି ସାଧୁ ମହିମା ପ୍ରଭୁଙ୍କ ଗହଣକୁ ଆସିଯାଆନ୍ତି । ସନ୍ନ୍ୟାସାଶ୍ରମ ସହିତ ଗୃହସ୍ଥାଶ୍ରମ ସ୍ଥାପିତ ହୁଏ । ବଲ୍‌କଳ ଭେକବାନାରେ ପର ସନ୍ନ୍ୟାସୀ ଏବଂ ଡୋର କୌପିନ ପରିହିତ ଅପର ସନ୍ନ୍ୟାସୀଙ୍କ ମେଳରେ ମହାନିତ୍ୟ ଖେଳ କମ୍ବୁଦ୍ୱୀପରେ ଆରମ୍ଭ କରାଯାଏ । ବିରାଗ ବୈରାଗୀ ମଧ୍ୟ ଯୋଗ ଦିଅନ୍ତି । ଅବଧୂତାଶ୍ରମ ପ୍ରତିଷ୍ଠିତ ହୁଏ ବ୍ରହ୍ମାଣ୍ଡରେ ।

ସଦାନନ୍ଦ ଶବର ପ୍ରତ୍ୟହ ଫଳମୂଳ ପ୍ରଭୁଙ୍କୁ ଯୋଗାନ୍ତି । ଢେଙ୍କାନାଳର ତତ୍‌କାଳୀନ ରାଜାସାହେବ ଭଗୀରଥ ମହେନ୍ଦ୍ର ବାହାଦୂରଙ୍କ ଯତ୍ନରେ ପ୍ରତ୍ୟହ ନୂତନ ମୃତ୍ତିକା ଭାଣ୍ଡରେ ଗୋ-କ୍ଷୀର ପ୍ରଭୁଙ୍କୁ ଅର୍ପଣ କରାଯାଏ । ପୃଥିବୀକୁ ଶସ୍ୟଶ୍ୟାମଳା କରି ରଖିବା ଓ ଅନ୍ନକଷ୍ଟରୁ ରକ୍ଷା କରିବା ପାଇଁ ମହିମାମୟ ମହାପ୍ରଭୁ ପ୍ରଥମେ ଅନ୍ନଭିକ୍ଷା ଆରମ୍ଭ କରନ୍ତି । ଜଣେ ବୈଶ୍ୟ ଗଙ୍ଗାଧର ସାହୁଙ୍କୁ ବ୍ରହ୍ମଭକ୍ତି ଦୀକ୍ଷା ଦେଇ ତାଙ୍କଠାରୁ ପକ୍ୱାନ୍ନ ଗ୍ରହଣ କରନ୍ତି । ନିଶାର୍ଦ୍ଧରେ ଗୋବିନ୍ଦ ବାବାଙ୍କୁ ବୌଦରୁ ଗହଣରେ ନେଇ ସମ୍ବଲପୁର କିଲାସ୍ଥ ରେଢ଼ାଖୋଲ କଙ୍କଣପଡ଼ା ଗ୍ରାମରେ ଗୃହୀଭକ୍ତ କରନ୍ତି ଅନ୍ଧ କନ୍ଧ ଭୀମଭୋଇଙ୍କୁ । ଶିଷ୍ୟମାନେ ଗୁରୁଙ୍କ ଅନ୍ୱେଷଣ କରୁଥିବା ବେଳେ ଗୁରୁ ମହିମା ସ୍ୱାମୀ ଶିଷ୍ୟଙ୍କୁ ଖୋଜି ଲୋଡ଼ି ଆଣିବା ଏକ ବିରଳ ବ୍ୟତିକ୍ରମ । ସେ ହୋଇଛନ୍ତି ମହିମା ଧର୍ମର ପ୍ରଥମ କବି, ସନ୍ଥକବି, ଅନ୍ଧ ଆଦିବାସୀ କବି, ଯାହାଙ୍କୁ କବି ପଣରା ଓ କବି ପ୍ରତିଭା ସେହି ମହାବ୍ରହ୍ମ ମହିମାଙ୍କ ଆନନ୍ଦ ଓ ଆଶୀର୍ବାଦରୁ ମିଳିଥିବାର ସ୍ୱୀକୃତି ସେ ନିଜେ ନିଜ ରଚନାରେ ବଖାଣିଛନ୍ତି । ତିନି ତାଳି ତାଙ୍କ ମୁଣ୍ଡଉପରେ ମାରି 'ମହିମା ଅଲେଖ' ତିନି ଥର କହିଛନ୍ତି । କାରଣ କଅଣ ହୋଇପାରେ ? ବିଶ୍ୱବ୍ରହ୍ମାଣ୍ଡ ଜଣେ ବ୍ରହ୍ମଭକ୍ତିର କବି ପାଇବ । ବିଶ୍ୱରେ ସେ କନ୍ଧ କବିର ଗୌରବ ପାଇବେ । ଅନ୍ଧତ୍ୱ ହଟିଯିବ ଓ ଜ୍ଞାନ-ଚକ୍ଷୁରେ ସେ ଦୁଃଖ ଦୁର୍ଦ୍ଦଶାର ଚିତ୍ର ଆଙ୍କିବେ । ସଭିଙ୍କ ଆତ୍ମା ତାଙ୍କ ଆତ୍ମାରେ ଓ ତାଙ୍କ ଆତ୍ମା ସଭିଙ୍କ ଆତ୍ମାରେ ଜଳଜଳ ଦିଶିଯିବ । ଏହାହିଁ ଏକାତ୍ମତା । ଆତ୍ମାନୁଭୂତି ଆଣିଦେବ ଆତ୍ମିୟତା । ଓଡ଼ିଆ ସାହିତ୍ୟରେ ଟୋପା ଟୋପା ପଡ଼ିଥିବା ନିର୍ଗୁଣ ଭାବଧାରା ଭାବସିନ୍ଧୁରେ ପରିଣତ ହେବ । ହଜାର ହଜାର ବର୍ଷ ତଳର ବ୍ରହ୍ମ, ବ୍ରହ୍ମସାଧନା, ବ୍ରହ୍ମଜ୍ଞାନ ଓ ବ୍ରହ୍ମଭକ୍ତି ପୁଣି ଥରେ ଉଚ୍ଚାରିତ ହେବ ଉନ୍ନବିଂଶ ଶତକରେ । ଆମ ସୌଭାଗ୍ୟ, ଏହାହିଁ ହୋଇଛି, ଆମ ଆଖି ଫିଟିଯାଇଛି, ବ୍ରହ୍ମ

ମହିମା ଆମ ଆଖି ଆଗରେ ପରୀକ୍ଷା ନେଇଛନ୍ତି । ଭୀମଭୋଇ ମଜାଳିଆ ଢଙ୍ଗରେ ପଚାରିଛନ୍ତି, "ଏଥୁ କି ପରୀକ୍ଷା ନେବ ?" ତଥାପି ଆମ ଆଖି ଖୋଲୁନାହିଁ । ସତରେ, ପରମ ଗତି ଖୋଜିଲେ ଜାତି ନାହିଁ, ବଡ଼ ସାନର ଭେଦ ନାହିଁ । ଜାତି ଓ ଭେଦ ଖୋଜିଲେ ପରମ ଗତି କାହିଁ ?

ଆତ୍ମା ଅଦେହୀ, ଅଣରୂପୀ । ତେଣୁ ବ୍ୟକ୍ତିର ଶରୀର ଓ ରୂପ ତା'ର ଆତ୍ମା ନୁହେଁ । ସକଳ ପ୍ରାଣୀ, ବିଶେଷ କରି ମନୁଷ୍ୟର ନାମ ଓ ରଙ୍ଗ ଅଛି । ଏହା ତା'ର ଆତ୍ମା ନୁହେଁ । ତେଣୁ ଆତ୍ମା ଅରୂପ, ଅବର୍ଣ୍ଣ ଓ ଅଦୃଶ୍ୟ । ଫଳତଃ "ଏ ଯେତେ ନାମ ରୂପ, ଏସବୁ ମାୟିକଲ୍ପ ।" (ବିଶ୍ୱନାଥ ବାବା) ଯଥାର୍ଥତଃ ଏସବୁ କାରଣରୁ ମହିମା ଧର୍ମରେ ଦେହାଭିମାନ ଓ ବହିର୍ମୁଖିତା ତ୍ୟାଗ କରାଯାଇଛି । ବାହ୍ୟାଡ଼ମ୍ବର ଓ ଔପଚାରିକତା ସମ୍ପୂର୍ଣ୍ଣରୂପେ ବର୍ଜନୀୟ ହୋଇଛି । ପ୍ରତିମା ପୂଜା ନିଷିଦ୍ଧ । ଏଥି ସହିତ ଜାତିଭେଦ, ପୁରୋହିତବାଦ ଓ ତୀର୍ଥାଟନ ସଂଶ୍ଳିଷ୍ଟ ହୋଇଥିବାରୁ ଏ ସବୁକୁ ପ୍ରତ୍ୟାଖ୍ୟାନ କରାଯାଇଛି । ଆତ୍ମା ଅବିନାଶୀ, ଅମର, ଅନନ୍ତ, ଅନାଦି ଓ ସର୍ବବ୍ୟାପୀ । ମହିମା ଧର୍ମରେ ମହିମା ହେଉଛନ୍ତି ପରମାତ୍ମା, ପରମେଶ୍ୱର, ପରଂବ୍ରହ୍ମ । ତେଣୁ ସେ ଅଣରୂପ, ଅନିନ୍ଦ୍ୟ, ଅନାମ, ଅବର୍ଣ୍ଣ, ଅଦୃଶ୍ୟ, ଅବ୍ୟକ୍ତ, ଅବ୍ୟୟ, ଅଜର, ଅମର, ଅକ୍ଷର । ସେ ହେଉଛନ୍ତି ଏକମାତ୍ର ଉପାସ୍ୟ, ଚିନ୍ତନୀୟ, ସ୍ମରଣୀୟ ଓ ଶରଣୀୟ । ଅନନ୍ତ ଆକାଶ ତଳେ ପରିମଳ ଭୂମିରେ ଶୁଦ୍ଧ ସମର୍ପିତ ଦେହ, ମନ ଓ ଚିତ୍ତରେ ଏକ ବ୍ରହ୍ମ, ମହାବ୍ରହ୍ମ, ମହିମା ଅଲେଖଙ୍କୁ ଉପାସନା କରାଯାଏ ସର୍ବଜନମେଳରେ ସମସ୍ତଙ୍କ କଲ୍ୟାଣ ପାଇଁ । ସେ ନିତ୍ୟ ଓ ସତ୍ୟ । ଯାହା ନିତ୍ୟ ତାହା ସତ୍ୟ ଓ ଯାହା ସତ୍ୟ ତାହା ନିତ୍ୟ ହୋଇଥିବାରୁ ନିତ୍ୟ ସତ୍ୟ ସଚ୍ଚିଦାନନ୍ଦ ପୂର୍ଣ୍ଣବ୍ରହ୍ମ ମହିମାଙ୍କୁ ଶରଣ ଦର୍ଶନ, ଧ୍ୟାନ ଧାରଣା ଓ ଚିନ୍ତା ଚିନ୍ତନ କରାଯାଏ ।

ଉଲ୍ଲିଖିତ ଆଲୋଚନାରୁ ଜଣାଯାଏ ଯେ ପରଂବ୍ରହ୍ମ, ମହିମା ମହାବ୍ରହ୍ମ ସର୍ବବ୍ୟାପୀ ଓ ଅବିନାଶୀ ହୋଇଥିବାରୁ ସେ ବିଶ୍ୱାତ୍ମା, ବିଶ୍ୱମୟ ଓ ବିଶ୍ୱାତୀତ । ସକଳ ସୃଷ୍ଟିର ସ୍ରଷ୍ଟା, ସ୍ଥିତି ଓ ଲୟର କାରଣ । ସେ ଏକମାତ୍ର ଗୁରୁ । ସେ ସର୍ବ ସୃଷ୍ଟିର ମୂଳାଧାର ଓ ଆଦିକାଳ, ତ୍ରିପୁର ଜଗତର ସେ ଉପାସ୍ୟ, ସଜୀବ, ନିର୍ଜୀବ, ଦୃଶ୍ୟ, ଅଦୃଶ୍ୟ, ଶ୍ରୁତ, ଅଶ୍ରୁତ-ସବୁକିଛି ଓ ସମସ୍ତଙ୍କର ସ୍ରଷ୍ଟା ଓ ଗୁରୁ । ଭୀମଭୋଇଙ୍କ ଆକୁଳ ନିବେଦନ ହେଉଛି, "ତିନି ତ୍ରୈଲୋକ୍ୟ କରଣ, ତାଳ ପତ୍ରେ ଲେଖା ହୋଇଛି ବୁଝିବ କାରଣ," ପୁନଶ୍ଚ ସେ ସ୍ପଷ୍ଟ କରି ଦେଇଛନ୍ତି :

"ଗୁରୁଙ୍କର ପିଣ୍ଡ, ଗୁରୁଙ୍କ ବ୍ରହ୍ମାଣ୍ଡ, ଗୁରୁଙ୍କର ତିନିପୁର ।<br>
ସପତ ବ୍ରହ୍ମାଣ୍ଡ, ଚଉଦ ଭୁବନ, ଦୟାବହି ରକ୍ଷାକର ॥

ଏକୋଇଶ ପୁର, ଚଉଦ ଭୁବନ, ଯେଉଁଠାରେ ଯେତୁଛନ୍ତି ।
ସବୁଘଟେ ପ୍ରଭୁ ହେତୁ ଚେତା ଦିଅ ଉଠୁ ଅଲେଖ ଭଗତି ।।
ଉଡ଼ାଖାନି, ବୁଡ଼ାଖାନି, ଚଳଖାନି ଅଚଳ ଖାନିଏ ଯେତେ ।
ଜଣଜଣ କରି ଉଠାଅ ଏହାଙ୍କୁ ଚେତା ହୁଅନ୍ତୁ ସମସ୍ତେ ।।'' (ସ୍ତୁତି ଚିନ୍ତାମଣି)

ଅତଏବ ମହିମା ଧର୍ମ ହେଉଛି ଲୋକ ଧର୍ମ, ସତ୍ୟ ଧର୍ମ, ମହିମା ସ୍ୱାମୀ ହେଉଛନ୍ତି ସର୍ବ ସଂସାରର କର୍ତ୍ତା, ପିତା ଓ ଗତିମୁକ୍ତିଦାତା । ତାଙ୍କ ଦ୍ୱାରା ଆଦିଷ୍ଟ ଭୀମଭୋଇ ଏହି ଅର୍ଥରେ ଲୋକକବି । 'ଲୋକାଃ ସମସ୍ତାଃ ସୁଖିନଃ ଭବନ୍ତୁ' : ଏହାହିଁ ମହିମା ଧର୍ମର ନିତ୍ୟ ଧ୍ୟେୟ । ବିଭିନ୍ନ ସ୍ୱର, ଛନ୍ଦ, ଉଦାହରଣ, କାବ୍ୟ, କବିତା, ଭଜନ, ଜଣାଣ, ସ୍ତୁତିର ଅନ୍ତଃସ୍ୱର ହେଉଛି ବିଶ୍ୱବ୍ରହ୍ମାଣ୍ଡର ସୁରକ୍ଷା, ଶାନ୍ତି, ସ୍ଥିତି ଓ ଊର୍ଦ୍ଧ୍ୱଗତି । ଏହା ଭୀମଭୋଇ ପ୍ରତିପାଦନ କରିଛନ୍ତି ।

ପରିବେଶର ପ୍ରଦୂଷଣ ଆଜି ଭୂମଣ୍ଡଳୀୟ ସମସ୍ୟା ହେବା ସଙ୍ଗେ ସଙ୍ଗେ ବ୍ୟକ୍ତି, ପରିବାର, ରାଜ୍ୟ ଓ ରାଷ୍ଟ୍ରର ସମସ୍ୟା ହୋଇଛି । ଊନବିଂଶ ଶତାବ୍ଦୀରେ ଏହାର ସ୍ପଷ୍ଟ ରୂପ ମିଳେ ଭୀମଭୋଇଙ୍କ ଲେଖାରୁ : ''ବିକଳରେ ବସୁନ୍ଧରା ହେଉଛି ଉଚ୍ଛନ୍ନ ।'' ସର୍ବେ ହେଲେଣି ଦୁର୍ଜ୍ଜନା । ''ପୋଡ଼ି ଯାଉଅଛି ତ୍ରିଭୁବନ'' ବୋଲି ଭୀମଭୋଇ ଅନୁଭବ କରୁଛନ୍ତି । ପୁଣି ସେ ''ରକ୍ଷାକର ସ୍ୱାମୀ ନରଲୋକ, ଯୁବା ବୃଦ୍ଧସ୍ତିରୀ ପୁରୁଷ ବାଳକ; କୀଟ ପତଙ୍ଗାଦି ଜଳ ପୋକ; ତୃଣାଦିସ୍ଥାବର ତରୁ ବୃକ୍ଷ; ଜନ୍ତୁଜୀବକ; ବ୍ରହ୍ମା ବିଷ୍ଣୁ ଶିବ ଦଶଦିଗପାଳ; ଚନ୍ଦ୍ର ସୂର୍ଯ୍ୟ ନବଲକ୍ଷ ନକ୍ଷତ୍ରକ; ଚଉଦ ବ୍ରହ୍ମାଣ୍ଡ ଧରି ଏକୌଶପୁରକ'' ଅନାଦି ଅଲେଖ ତିନି ତ୍ରିଲୋକ୍ୟଙ୍କୁ ଜଣାଣ କରିଛନ୍ତି । ଅନ୍ୟତ୍ର ବଜ୍ରାଘାତରେ ପଥର ଭାଙ୍ଗି ନଯାଉ, ଘାସ ଉପୁଡ଼ି ନଯାଉ, ସାପ ମୁହଁରୁ ବେଙ୍ଗ ବଞ୍ଚିରହୁ ଆଦି ପାଇଁ ଆକୁଳ ମିନତି କରିଛନ୍ତି । ଏହା ହେବ ପରିସଂସ୍ଥୀୟ ସନ୍ତୁଳନ ଯଥାନୁପାତିକ ରୀତିରେ ଓ ସୁସଂହତ ଭାବରେ ।

ଦୁର୍ଭିକ୍ଷ, ବାତ୍ୟା, ବନ୍ୟା, ମରୁଡ଼ି ଆଦିରେ ସହଜରେ କବଳିତ ହୁଅନ୍ତି ଶିଶୁ ଓ ମା' ମାନେ । ଶିଶୁ ଜୀବନର ଶ୍ରୀବୃଦ୍ଧି ପାଇଁ ମହିମାଙ୍କ ଆବିର୍ଭାବ ସମ୍ଭବତଃ ସମସ୍ତ ବିଶ୍ୱରେ ମହିଳାମାନେ ଗୌଣ, ଅପାଙ୍‌କ୍ତେୟ, ଅଲୋଡ଼ା ହୋଇଥାନ୍ତି । ସେମାନଙ୍କୁ ଧର୍ମ ଦେଇ ଧର୍ମସ୍ଥ ରହିବାର ଆହ୍ୱାନ ଭୀମଭୋଇଙ୍କ ଭଜନରେ ପ୍ରଥମ । ''ପୁରୁଷଙ୍କୁ ନାରୀଜ୍ଞାନ ଶିଖାଇଲେ ସତ୍ୟ ଯୁଗ ଲେଉଟିବ''ର ଗୁରୁ ଦାୟିତ୍ୱ ଗୁରୁବ୍ରହ୍ମ ଦିଅନ୍ତି । କାରଣ ''ଆଦ୍ୟରୁ ଅନାଦି ଏକ, ସୁଜନେ କର ବିବେକ, ବେଦାନ୍ତସରୁ'' ଘୋଷଣା କରିବା ଫଳରେ ସକଳ ସୃଷ୍ଟ ଜୀବ ଏକ ଓ ଅବିଭକ୍ତ ହୁଅନ୍ତି । ନାରୀ ଓ ପୁରୁଷର ପରିପୂରକତା, ସହଯୋଗିତା ସୁସ୍ପଷ୍ଟ ହୁଏ, ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ । ସ୍ତିରୀ ବା ପୁରୁଷ ତହିଁ ନାହିଁ ଭିନ୍ନାଭିନ୍ନ ।''

ପଞ୍ଚଭୂତରେ ଗଢ଼ା ସମସ୍ତ ସୃଷ୍ଟି । ଭୌତିକ ଜ୍ଞାନ ଓ ବିଜ୍ଞାନ ବଳରେ ମନୁଷ୍ୟ ଅବହେଳା କରିଛି ଏ ପୃଥିବୀକୁ । ସେତିକି ନୁହେଁ, ସେ ଏସବୁକୁ ଖଣ୍ଡ କରି ନିଜ ସେବାରେ ଲଗାଇଛି । ଲୋଭାସକ୍ତ ହୋଇ ପ୍ରକୃତି ଉପରେ ବିଜୟକୁ ମାତ୍ରାଧିକ କରିପକାଇଛି । ମହିମା ଧର୍ମ ଏଥିପାଇଁ ସତର୍କ କରିଛି ସମସ୍ତଙ୍କୁ । ମାଟି, ମାଟିଥାନ, ନୂଆମାଟିପାତ୍ର, ଗୋବରଲିପା ଥାନ ଉପରେ ଗୁରୁତ୍ୱ ଦିଆଯାଇଛି । ମର ଶରୀରକୁ ମାଟି ଗର୍ଭରେ ରଖାଯାଇଛି । ଧୂନି ଜାଳିବା ସନ୍ନ୍ୟାସୀମାନଙ୍କ ନୈମିତ୍ତିକ ଆବଶ୍ୟକତା । ଭୀମଭୋଇ ଲେଖିଛନ୍ତି, "କଳିଭାଙ୍ଗି କରିବେ ସତ୍ୟଯୁଗ । ବ୍ରହ୍ମାଣ୍ଡରେ ଧୂନି ଜାଗିଲେ ଆଗ ଯେ ।" ଅଖଣ୍ଡ ବତୀ ଟେକିବା ଓ ଘୃତାହୂତି କରିବା ମହିମାଧର୍ମରେ କରଣୀୟ । ଗୁରୁଗାଦୀ ଯୋରନ୍ଦାରେ ଅଖଣ୍ଡ ଧୂନି ଜଳୁଛି ମହିମାସ୍ୱାମୀଙ୍କ ଆଜ୍ଞାରେ ତାଙ୍କ ଦ୍ୱାରା ସ୍ଥାପିତ ହୋଇ । ଏହା ଦ୍ୱାରା ପରିବେଶ ବିଶୁଦ୍ଧ ରହେ, ବ୍ରହ୍ମ ସମର୍ପଣ ତୀବ୍ର ହୁଏ ଏବଂ ଚିତ୍ତର ଦୂର୍ବାସନା ଅପସରିଯାଏ । ଭୀମଭୋଇ ଲେଖିଛନ୍ତି, "ବ୍ରହ୍ମ ଅନଳ ବିହୁଡ଼ି, ଜାଳି ଫିଟାଅ କୁହୁଡ଼ି, ଅର୍ଗଳି କବାଟ ଫିଟିଯିବ ସଧୀରେ" ପୁନଶ୍ଚ "ବ୍ରହ୍ମ ଅନଳ ସେ ଜାଳିବେ, ନାମଜଳେ ପଖାଳିବେ, ନିରୋଳା ଥାନେ ଥୋଇବେ କରି ନିର୍ମିତ ।" ସ୍ନାନ, ପାନ ଓ ଅନ୍ୟ କାର୍ଯ୍ୟ ପାଇଁ ବିଶୁଦ୍ଧ ଜଳ ଆବଶ୍ୟକ । ଏ ବିଷୟରେ ଭୀମ ଭୋଇ ସୂଚନା ଦିଅନ୍ତି, "ବାଲି ମାଟି ନାହିଁ ---------------------- ଲଭିବ ମୁକତି ନ ବୁଡ଼ିବ ଜାତି, ପୂର୍ବପୂଣ୍ୟ ଥିଲେ ପାଇହେ ।" ଉନ୍ମୁକ୍ତ ସ୍ଥାନରେ ବିଶୁଦ୍ଧ ବାୟୁରେ ଚଳାଚଳ କରାଯାଏ । କୋଳାହଳମୟ ସଙ୍କୁଚିତ ଜନଗହଳିକୁ ପ୍ରବେଶ ନିଷେଧ । ବାୟୁର ଶୁଦ୍ଧତା ସମ୍ବନ୍ଧରେ ସନ୍ଥକବି ଲେଖିଛନ୍ତି, "ଅନନ୍ତ ଖଞ୍ଜଣୀ ବାଦ୍ୟ, ଯେତେ ଦୂରକୁ ଶବଦ, ଗଢ଼ାଇ ଅଛନ୍ତି ରୂପା ସୁବର୍ଣ୍ଣ ଗିନି/ ଯେତେ ଦୂରକୁ ଶୁଭିବ, ଯମ ଛାଡ଼ି ପଳାଇବ, ଭିଆଇ ଅଛନ୍ତି କଳି ଯୁଗକୁ ଜାଣି ।" ଶୂନ୍ୟ ଆକାଶ ତଳରେ ଶୂନ୍ୟପ୍ରଭୁଙ୍କୁ ଶରଣ ଦର୍ଶନ କରାଯାଏ । ଏପରି ହେଉଛି ପଞ୍ଚଭୂତର ଗୁରୁତ୍ୱ ମହିମା ସ୍ୱାମୀଙ୍କ ଆଜ୍ଞାରେ ଓ ସନ୍ଥକବିଙ୍କ ଭାଷାରେ । ପୁନଶ୍ଚ ପ୍ରତ୍ୟେକ ଭୂତରୁ ଶିକ୍ଷା ଗ୍ରହଣ କରି ମନୁଷ୍ୟ ଜୀବନକୁ ସମୃଦ୍ଧ, ସୁନ୍ଦର ଓ ସମର୍ପିତ କରାଯିବ । ସ୍ତୁତି ଚିନ୍ତାମଣି ଓ ବ୍ରହ୍ମ ନିରୂପଣ ଗୀତାରେ ଏସବୁ ବିସ୍ତୃତ ଭାବରେ ବର୍ଣ୍ଣିତ । କିନ୍ତୁ ଏ ସବୁ ଭୂତ ମହିମା ଧର୍ମରେ ପୂଜିତ ଓ ଉପାସ୍ୟ ନୁହନ୍ତି ।

ପରିଶେଷରେ ମହିମା ଧର୍ମ ସଦା ପାଳନୀୟ । ପାଳନ ନିଷ୍ଠା ପାଇଁ ଗୁରୁ ଆଜ୍ଞା ରହିଛି । ଏହା ଜୀବନର ଧର୍ମ ଓ ଏହାହିଁ ଧର୍ମର ଜୀବନ । ଲୋକ କବି ଭୀମଭୋଇ ଉପନିଷଦର ଜ୍ଞାନକୁ ଲୋକମୁଖରେ ଚମତ୍କାର ଲୋକଭାଷାରେ ପ୍ରତି ଲୋକାଳୟରେ ପରିବେଷଣ କରିଛନ୍ତି । ଆତ୍ମଚେତନାକୁ ସର୍ବ ହୃଦୟରେ ଜାଗ୍ରତ

କରି ସାଧାରଣ ଜୀବନକୁ ଅସାଧାରଣ କରିଛନ୍ତି । 'କର୍ମ ହିଁ ତୋର ନିଜ ଗୁରୁ' ନ କହି କର୍ମର ଫଳ ଓ କର୍ମର ନିଷ୍ଠା ଉପରେ ଗୁରୁତ୍ୱ ଦିଆଯାଇଛି । ଏହା ଫଳରେ ସର୍ବ ସୃଷ୍ଟିରେ ବ୍ରହ୍ମଲୋକ ପ୍ରତିଷ୍ଠିତ ହେବାର ଲକ୍ଷ୍ୟ ରଖାଯାଇଛି । ଏକ ବିଶ୍ୱ ବ୍ରହ୍ମାଣ୍ଡର ସର୍ବ ପ୍ରଥମ କଳ୍ପନା ସମ୍ଭବତଃ ହେଉଛି ମହିମା ସ୍ୱାମୀଙ୍କର । ଭୀମଭୋଇ କହିଛନ୍ତି, "ବ୍ରହ୍ମାଣ୍ଡକୁ କରିଅଛି ଘର ବଖୁରୀ ।" ସମାନ ସୁଖ ସମାନ ସୁବିଧା ସମସ୍ତଙ୍କୁ ଦେବା ପାଇଁ ଶୃଙ୍ଖଳିତ ଜୀବନ ଓ ତ୍ୟାଗ ଆବଶ୍ୟକ, ସମତା ଓ ମମତାର ପ୍ରୟୋଜନ । ଏଥିପାଇଁ ନିଷ୍କାମ ଭକ୍ତିର ଶ୍ରେଷ୍ଠତ୍ୱ ରହିଛି । କାମ, କ୍ରୋଧ, ଲୋଭ ଆଦି ରିପୁଗଣଙ୍କୁ ଆୟତ୍ତ ନକଲେ ଏହା ସାଧିତ ହେବ ନାହିଁ । ବ୍ରହ୍ମ ସମର୍ପଣ ହିଁ ଏହା କରିପାରିବ । ଭୀମଭୋଇ ବାରମ୍ବାର ଶୁଣାଇଛନ୍ତି, "ସକାମରେ ନାହିଁ, ନିଷ୍କାମରେ ଅଛି ।" ପ୍ରଶ୍ନ ହୁଏ, କଅଣ ନାହିଁ, କଅଣ ଅଛି ? ତାହା ହେଉଛି ପରମ ଗତି ଓ ପରମ ଆନନ୍ଦ । ଏଥିପାଇଁ ବ୍ରହ୍ମ ସାଧନା ।

ମୂଲ୍ୟବୋଧଭିତ୍ତିକ ଧର୍ମଧାରା ହେଉଛି ମହିମାଧର୍ମ । ସମସ୍ତଙ୍କର ଧର୍ମ ଓ ସବୁ ଯୁଗର ଧର୍ମ । ତେଣୁ ଲୋକ ଧର୍ମ ଭାବରେ ମହିମା ଧର୍ମର ବୈଶିଷ୍ଟ୍ୟ ରହିଛି । ମହିମା ସ୍ୱାମୀଙ୍କ ଆଜ୍ଞା ଓ ଆଦର୍ଶରେ ମହିମା ସନ୍ନ୍ୟାସୀ ସଂସାରର କଲ୍ୟାଣକାରୀ ଓ ଚିର ପରିବ୍ରାଜକ । ଗୋଟିଏ ଗାଁରେ ରାତିଏ ଓ ଗୋଟିଏ ଘରେ ମୁଠିଏ ଭିକ୍ଷା । ଯିଏ ଜ୍ଞାନର ଭଣ୍ଡାର ସେ ମହିମା ସ୍ୱାମୀ । ସେ ଧାଡ଼ିଟିଏ, ପଦଟିଏ ଲେଖିନାହାନ୍ତି । କାଗଜ କଲମ ଧରି ନାହାନ୍ତି, ଟିପରେ କାଳି ଲାଗିନାହିଁ । ବ୍ରହ୍ମଜ୍ଞାନ ବେତ୍ତା ମହିମା ସ୍ୱାମୀ ଜଗତର ଧର୍ମଧାରାରେ ଅନନ୍ୟ । ଶିଷ୍ୟକବି ସନ୍ଥକବି ହୋଇଛନ୍ତି ଭୀମଭୋଇ । ତାଙ୍କ ମୁଖ ଓ ଅନ୍ତରରୁ ବ୍ରହ୍ମଜ୍ଞାନ ଝରି ଆସୁଛି ଝରଣାର ଅବାରିତ ଝର ପରି ଉଚ୍ଛଳ, ଅବାରିତ । ଊନବିଂଶ ଶତାବ୍ଦୀର ନବଜାଗରଣରେ ଜଗତ୍‌ଗୁରୁ ମହିମା ସ୍ୱାମୀ, ବିଶ୍ୱର ମାନବବାଦୀ ମହିମା ଧର୍ମ ଏବଂ ସଂସାରର ସାର ଧର୍ମରେ ମଣ୍ଡିତ ଆଦିବାସୀ କବି ଭୀମଭୋଇ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ଭୀମ କହିଛନ୍ତି, ------- ହୀନ ଭୋଇ, କେ ବୋଲିବ ମିଥ୍ୟା ଏହି, ନାମ ବ୍ରହ୍ମ ପଦ ଚାରିଯୁଗରେ ସତ୍ୟ ।" ସେ ସତ୍ୟ ଚିର ଶାଶ୍ୱତ ହୋଇ ରହୁ ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ, ଦେଖୁ କେବା ସହୁ !
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ॥"

(ସ୍ତୁତି ଚିନ୍ତାମଣି)

ଆଜିକୁ ଦେଢ଼ଶ' ବର୍ଷ ତଳର କଥା । ପଶ୍ଚିମ ଓଡ଼ିଶାର ରେଢ଼ାଖୋଲ ନାମକ ଏକ ଆରଣ୍ୟାଚ୍ଛାଦିତ ଦରିଦ୍ର ନିରକ୍ଷର କନ୍ଧ ପଲ୍ଲୀରେ ଗାଈ ଚରାଇ ଜୀବନ ପୋଷୁଥିବା ଗୋଟିଏ ଦରିଦ୍ର କନ୍ଧ କିଶୋରର କଣ୍ଠରୁ ଝରି ପଡ଼ିଥିଲା ସେହି

ହୃଦୟସ୍ପର୍ଶୀ ମହାକାରୁଣ୍ୟମୟ ପଦଟି । ନିଖିଳ ଜଗତର କୋଟି କୋଟି ପ୍ରାଣୀ ଆଉ ମଣିଷଙ୍କର ଅସହାୟ ଦୁଃଖ ଯନ୍ତ୍ରଣା ପାପ ତାପ କଥା ଭାବି ଭାବି ତାର ହୃଦୟ କାତର ହୋଇ ପଡୁଥିଲା । ତା' ନିଜ ଜୀବନର ଦୁଃଖ ସାରା ପୃଥିବୀର ଦୁଃଖ ସହିତ ମିଶି ଏକାକାର ହୋଇ ଯାଉଥିଲା । କାହିଁକି ଏ ପୃଥିବୀରେ ଏତେ ଦୁଃଖ ଆଉ ଯନ୍ତ୍ରଣା ? ଈଶ୍ୱର ପୁତ୍ର ଯୀଶୁଖ୍ରୀଷ୍ଟ ଜଗତର ପାପ ତାପ ଦୁଃଖ ବେଦନାର କ୍ରୁଶକୁ ନିଜ କାନ୍ଧରେ ବହନ କରି ଜଗତର ଉଦ୍‌ବୋଧନ ଦେଉଥିଲେ- "ହେ ଅମୃତର ପୁତ୍ରଗଣ ! ସମସ୍ତେ ଶୁଣ ଦୁଃଖକୁ ଭୁଲିଯାଅ । ପାପ ତୁମମାନଙ୍କୁ ସ୍ପର୍ଶ କରି ପାରେନା । ମୃତ୍ୟୁକୁ ଭ୍ରୂକଟୀ ପ୍ରଦର୍ଶନ କର । ତୁମେମାନେ ସମସ୍ତେ ଦେବଶିଶୁ । ତୁମମାନଙ୍କର ଦିବ୍ୟ ସ୍ୱରୂପକୁ ଆବିଷ୍କାର କର ଓ ଅଧିକାର କର । ଅତୀତର ଶୃଙ୍ଖଳ ଛିଣ୍ଡାଇ ଉଜ୍ଜ୍ୱଳ ଭବିଷ୍ୟତ ଆଡ଼କୁ ଅଗ୍ରସର ହୁଅ । ସମସ୍ତେ ସମସ୍ତଙ୍କୁ ଭଲପାଅ ଓ ସମସ୍ତଙ୍କୁ ଶିବ ଜ୍ଞାନରେ ସେବା କର । କ୍ଷୁଦ୍ରତା ତ୍ୟାଗ କର ଓ ମହତ ଆଡ଼କୁ ଦୃଷ୍ଟିପାତ କର ।"

ପ୍ରକାଶ ଥାଉକି, ଠିକ୍ ଏଇ ସମୟରେ ପାଶ୍ଚାତ୍ୟ ଜଗତରେ ଆଉ ଗୋଟିଏ ବଜ୍ରସ୍ୱର ନିନାଦିତ ହେଉଥିଲା । ତାହା ଥିଲା ବାମପନ୍ଥୀ ଦାର୍ଶନିକ କାର୍ଲମାର୍କ୍ସଙ୍କ ସ୍ୱର । ସେ ମଧ୍ୟ ସେତେବେଳେ ସାରା ପୃଥିବୀର ଦୁଃଖ ସହ ମାନବଜାତିକୁ ସମ୍ବୋଧନ କରି ଉଚ୍ଚାରଣ କରିଥିଲେ- "ହେ ଦୁନିଆର ଦରିଦ୍ର ଦୁଃଖୀ ଖଟିଖିଆମାନେ ! ପୁରାତନ ଧର୍ମ ଈଶ୍ୱର ଫିଶ୍ୱର କଥା ଭୁଲିଯାଅ । ଜାତି ଧର୍ମ ଭୁଲି ଏକାଠି ହୁଅ-ବିପ୍ଳବ କର ଏବଂ ଏକ ନୂତନ ମାନବ ସମାଜ ପ୍ରତିଷ୍ଠା କର- ଯୋଉଥିରେ କି ସମସ୍ତେ ସୁଖୀ ହୋଇ ପାରିବେ ।"

□□□

# ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ

ଚାରୋଟି ପିଲାର ବାପା ରିଚାର୍ଡ କାର୍ଡିନାଲର ପଇସା ନାହିଁ, ସମୟ ନାହିଁ ଓ କାମରୁ ଛୁଟି ନାହିଁ । ସେ ପଢ଼ିବ କିପରି ? ସେ ଫୋର୍ଡ କାରଖାନାର ଶ୍ରମିକ କିନ୍ତୁ ମନ ତାର ବ୍ୟାକୁଳ, ସେ ପଢ଼ନ୍ତା କି ? ସେ ଖଡ଼ି ଛୁଇଁ ନାହିଁ, ଅବଧାନଙ୍କ ପାଖରେ ବସି ନାହିଁ ଓ ଶ୍ରେଣୀରେ ପାଦ ପକାଇ ନାହିଁ । ଗତବର୍ଷ ସେ ଆବିଷ୍କାର କଲା ଯେ ସେ ନିଉୟର୍କର ଷ୍ଟେଟ ବିଶ୍ୱବିଦ୍ୟାଳୟର ଏକ ଅଙ୍ଗ ଏମ୍ପାୟାର ଷ୍ଟେଟ କଲେଜର ଜଣେ ଡିଗ୍ରୀଧାରୀ ଛାତ୍ର, ସେ ଆଉ ଶ୍ରମିକ ନୁହେଁ କିନ୍ତୁ ଶ୍ରମ ଆନ୍ଦୋଳନ-

ଇତିହାସର ଛାତ୍ର, ସେ ଆଉ ଫୋର୍ଡ କାରଖାନାରେ ମଟରଗାଡ଼ି ସଜାଡୁ ନାହିଁ କିନ୍ତୁ ସେ ଶ୍ରମ-ସମ୍ପର୍କରେ ସୁରକ୍ଷା ପାଇଁ ଅନ୍ୟମାନଙ୍କୁ ସାହାଯ୍ୟ କରୁଛି।

ଏହିପରି ଆହୁରି ଅନେକ ଛାତ୍ର ପ୍ରାଚୀର-ବିହୀନ କଲେଜ ଓ ପ୍ରାଚୀର-ବିହୀନ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଛନ୍ତି। ହଜାର ହଜାର ଯୁବକ ପ୍ରୌଢ଼କଲେଜକୁ ଯାଇପାରୁ ନାହାନ୍ତି କିନ୍ତୁ କଲେଜ ଶିକ୍ଷା ପାଇବାର ପ୍ରବଳ ବାସନା ସେମାନଙ୍କର ଅଛି। "ବିନା କଲେଜରେ କଲେଜ ଶିକ୍ଷା" ଅଭିନବ ପରୀକ୍ଷା ଓହାଇଓ ଓ ନିଉୟର୍କରେ ଆରମ୍ଭ କରାଯାଇ ଅଛି। ଆମେରିକାର ଏହି ପ୍ରାଚୀର-ବିହୀନ ବିଶ୍ୱବିଦ୍ୟାଳୟ (University without walls) ମାତ୍ର ବର୍ଷକରେ ସାରା ଦେଶରେ ଅଭିଭାବକ, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାଶାସ୍ତ୍ରୀଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି ହୋଇଛି। ସେମାନେ ଅଧିକରୁ ଅଧିକ ଆକୃଷ୍ଟ ହେଉଛନ୍ତି। ଉଚ୍ଚତର ଶିକ୍ଷାର ଦିଗନ୍ତ ସୁଦୂର ପ୍ରସାରୀ, ମାନସିକ ଉତ୍କର୍ଷ ଓ ବୌଦ୍ଧିକ ଦୁଃସାହସିକତା ଏହାର ଧ୍ୟେୟ। ଜୀବନର ଚରମ ପରାକାଷ୍ଠା ଏହାର ଲକ୍ଷ୍ୟ। ଏଥିପାଇଁ କେତେଖଣ୍ଡ ପୁସ୍ତକ, ଗୋଟାଏ ପାଠ୍ୟକ୍ରମ, ଏକ ଚିରାଚରିତ ପ୍ରଣାଳୀ ଓ ଏକ ପ୍ରାସାଦ କ'ଣ ଏହାକୁ ସୀମିତ କରିପାରିବ ? ଏକ ସର୍ବସାଧାରଣ ପରୀକ୍ଷା ଏହାର ମୂଲ୍ୟାଙ୍କନ କ'ଣ କରିପାରିବ ? ବୟସର ସୀମା ଓ ନିର୍ଦ୍ଧାରିତ ସ୍ଥାନ ସଂଖ୍ୟା ଜ୍ଞାନାର୍ଜନର ପ୍ରବଳ ପିପାସାକୁ କ'ଣ ରୋକିପାରିବ ? ଏକ ରକ୍ଷଣଶୀଳ ମନୋଭାବ ଓ ଧରାବନ୍ଧା ଆଇନ କାନୁନ କ'ଣ ଉନ୍ମୁକ୍ତମନର ପରିପୋଷଣ କରି ପାରିବ ? ସତ୍ୟର ସନ୍ଧାନ ଓ ସାଧନା କଅଣ ସମୟର ସୀମା ଓ ଶାସ୍ତ୍ରର ଜ୍ଞାନରେ ସୀମିତ ହୋଇପାରିବ ?

ଏ ଦିଗରେ ଗ୍ରେଟବ୍ରିଟେନର ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ (Britain's open University) ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଅଛି। ଏହା ୧୯୬୯ ମସିହାରେ ଆରମ୍ଭ କରାଯାଇଥିଲା। ୩୫୦୦୦ ଗୃହିଣୀ, ପରିଚାଳକ ଓ ଏଥିରେ ସୈନ୍ୟ ଯୋଗ ଦେଇଥିଲେ। କଳା ଓ ବିଜ୍ଞାନର ବିଭିନ୍ନ ବିଭାବରେ ସ୍ନାତକ ପାଠ୍ୟକ୍ରମ ଅଧ୍ୟୟନ କରୁଅଛନ୍ତି। ପ୍ରବେଶ ପାଇଁ ନିର୍ଦ୍ଦିଷ୍ଟ ଯୋଗ୍ୟତା ନାହିଁ। ଲେଖି ପଢ଼ି ଜାଣିଥିଲେ ଚଳିବ। ଛାତ୍ରପିଛା ପ୍ରାୟ ୨୦୦ ପାଉଣ୍ଡ ଖର୍ଚ୍ଚରେ ପାଠ୍ୟକ୍ରମରେ ଏକ ସପ୍ତାହରେ ଗ୍ରୀଷ୍ମକାଳୀନ ଶିକ୍ଷାକ୍ରମ, ୩୪ ସପ୍ତାହରେ ଟେଲିଭିଜନ ଓ ରେଡ଼ିଓ ବକ୍ତୃତା, ବହୁସଂଖ୍ୟକ ପଠନ ଓ ଲିଖନର ନିରୂପିତ କାର୍ଯ୍ୟକ୍ରମର ବ୍ୟବସ୍ଥା ରହିଛି। ବିଧି ଓ ବ୍ୟବସ୍ଥାର ବିଭିନ୍ନତା ଓ ସଦୁପଯୋଗ ଦ୍ୱାରା ଶିକ୍ଷାୟତନର ପ୍ରାଚୀର ମଧ୍ୟରେ ସୀମିତ ନ ହୋଇ ଆଗ୍ରହୀ ଓ ଶ୍ରଦ୍ଧାବାନ ଲୋକର ସମୀପସ୍ଥ ହୋଇଅଛି।

ଗ୍ରେଟ୍‌ବ୍ରିଟେନର ପାରମ୍ପରିକ ଶିକ୍ଷା ବିଚାର ଏଥିପ୍ରତି ଅସହଷ୍ଣୁ ହୋଇ

ପଡ଼ିଥିଲା । କିନ୍ତୁ ବୌଦ୍ଧିକ ମାନ ଯେ ଉଚ୍ଚକୋଟୀର ହୋଇପାରୁଛି ତଦ୍ୱାରା ସେଠାର ମତିଗତି ବଦଳି ଯାଉଛି । ଜଣାଯାଏ ଯେ ପ୍ରଥମ ବର୍ଷର ପାଠ୍ୟକ୍ରମରେ ଯେଉଁ ୨୪୦୦୦ ଛାତ୍ରଙ୍କର ନାମ ଲେଖା ଯାଇଥିଲା ସେହି ସଂଖ୍ୟାର ଏକ ପଞ୍ଚମାଂଶ ପାଠପଢ଼ା ଛାଡ଼ିଦେଲେ ଓ ଅନ୍ୟ ଏକ ପଞ୍ଚମାଂଶ ଶେଷ ପରୀକ୍ଷା ଦେଲେ ନାହିଁ କାରଣ ପରୀକ୍ଷାର ମାନ ଅକ୍ସଫୋର୍ଡ ବା କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ମାନ ସଙ୍ଗେ ସମାନ ଥିଲା । ଯେଉଁମାନେ ପରୀକ୍ଷା ଦେଲେ ସେମାନଙ୍କ ମଧ୍ୟରେ ଶତକଡ଼ା ୯୩ ଜଣ କୃତକାର୍ଯ୍ୟ ହୋଇଥିଲେ ।

ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର କୁଳାଧିପତି ଲର୍ଡ କ୍ରୋଥର ୧୯୬୯ ମସିହାରେ ଜୁଲାଇ ୨୩ ତାରିଖରେ ବିଶ୍ୱବିଦ୍ୟାଳୟ ଉଦ୍‌ଘାଟନ ଉତ୍ସବରେ ଅଭିଭାଷଣ ପ୍ରସଙ୍ଗରେ ଏହାର ଶିକ୍ଷାଦର୍ଶନ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ପ୍ରଥମତଃ ଏପ୍ରକାର ବିଶ୍ୱବିଦ୍ୟାଳୟ ଦ୍ୱାରା ସବୁ ଶ୍ରେଣୀର ଲୋକଙ୍କ ପାଇଁ ଉନ୍ମୁକ୍ତ ଥାଏ । ପୂର୍ବବର୍ତ୍ତୀ ପାଠର କୃତିତ୍ୱ ହେଉଛି ପରବର୍ତ୍ତୀ ପାଠ ପାଇଁ ସୋପାନ ଓ ଏହା ପାରମ୍ପରିକ ଉଚ୍ଚଶିକ୍ଷାର ନିୟମ । କିନ୍ତୁ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟରେ କୌଣସି ପ୍ରବେଶ ଯୋଗ୍ୟତା ନ ଥାଏ । (କ) ଯେଉଁ ବୟସ୍କ ଲୋକ ଯୌବନାବସ୍ଥାରେ ଶିକ୍ଷା ସୁଯୋଗରୁ ବଞ୍ଚିତ । (ଖ) ଯେଉଁ ବୃତ୍ତିଧାରୀ ଲୋକଙ୍କର ସ୍ୱବୃତ୍ତିରେ ଅଧିକ ଜ୍ଞାନାର୍ଜ୍ଜନର ଆବଶ୍ୟକତା ଥାଏ, (ଗ) ଯେଉଁ ମେଧାବୀ ଲୋକ ନାନା କାରଣରୁ ପାଠ ଛାଡ଼ିବାକୁ ବାଧ୍ୟ ହୁଅନ୍ତି କିନ୍ତୁ ଅଧ୍ୟୟନର ବାସନାଥାଏ, (ଘ) ବିଶ୍ୱବିଦ୍ୟାଳୟ ପ୍ରବେଶ-ଯୋଗ୍ୟତା ଥାଇସୁଦ୍ଧା ଯେଉଁମାନେ ସ୍ଥାନଲାଭ କରିପାରନ୍ତି ନାହିଁ ଓ (ଙ) ଯେଉଁ ମହିଳାଗଣ ବୈବାହିକ୍ୟ ଜୀବନ ହେତୁ ଶିକ୍ଷାଲାଭରୁ ବଞ୍ଚିତ ହୁଅନ୍ତି-ଯୋଗଦେଇ ପାରିବେ । ପ୍ରବେଶ ପାଇଁ ଧରାବନ୍ଧା ଯୋଗ୍ୟତା ଧାର୍ଯ୍ୟ କରାଯାଇ ନଥାଏ ।

ଏହି ବିଶ୍ୱବିଦ୍ୟାଳୟ ମଧ୍ୟ ସ୍ଥାନ ଦୃଷ୍ଟିରୁ ଉନ୍ମୁକ୍ତ । ଏହା ନିର୍ଦ୍ଦିଷ୍ଟ ଶିକ୍ଷାୟତନର ପରିସର ମଧ୍ୟରେ ସୀମିତ ନୁହେଁ । ସମଗ୍ର ଇଂଲଣ୍ଡ, ବେଲସ୍, ସ୍କାଟଲାଣ୍ଡ ଓ ଉତ୍ତର ଆୟର୍ଲାଣ୍ଡ ପାଇଁ ମାତ୍ର ଗୋଟିଏ ଉନ୍‌ମୁକ୍ତ ବିଶ୍ୱବିଦ୍ୟାଳୟ । ଏହା ସମଗ୍ର ଗ୍ରେଟ୍ ବ୍ରିଟେନ୍ ପାଇଁ ଅଭିପ୍ରେତ । ବସ୍ତୁତଃ ଏହା ସମଗ୍ର ବିଶ୍ୱବିଦ୍ୟାଳୟର ସେବା କରିପାରେ, ଯଦି ଭାଷା, ସଂଗଠନ ଟେଲିଭିଜନ ଆଦିର ଅସୁବିଧା ନ ହୁଏ । ତୃତୀୟତଃ କୌଣସି ଗୋଟିଏ ପ୍ରଣାଳୀ ଉପାୟ ବା ଉପାଦାନ ପ୍ରତି ବାନ୍ଧି ନ ହୋଇ ବହୁବିଧ ପ୍ରଣାଳୀ, ଉପାୟ ବା ଉପାଦାନର ଉପଯୋଗ ଉନ୍‌ମୁକ୍ତ ବିଶ୍ୱବିଦ୍ୟାଳୟରେ କରାଯାଏ । ବିଭିନ୍ନ ବିଷୟ ମଧ୍ୟରେ ଯେଉଁ ଦୁର୍ଭେଦ୍ୟ ପ୍ରାଚୀନର ପାରମ୍ପରିକ ଶିକ୍ଷାୟତନରେ ଥାଏ ତାହା ପରିବର୍ତ୍ତେ ବିଦ୍ୟାର୍ଥୀକୁ ଜ୍ଞାନ ଓ ଅଭିଜ୍ଞତା ପ୍ରତି ଆଗ୍ରହୀ କରିବା ପାଇଁ ବହୁ-ବିଷୟ-ଅଧ୍ୟୟନ-ରୀତି (multi-discipline-

approach) ଅନୁସରଣ କରାଯାଏ । ଏଥିରେ ପତ୍ର ବିନିମୟ (correspondence course) ବ୍ୟବସ୍ଥା ଅଛି । ତନ୍ମଧ୍ୟରୁ ଅନେକ ସ୍ଥଳରେ ଛାତ୍ରମାନେ ଉତ୍ତର ଲେଖି ପଠାନ୍ତି । ରେଡ଼ିଓ ଓ ଟେଲିଭିଜନ କାର୍ଯ୍ୟକ୍ରମ ରୀତିମତ ଚାଲିଥାଏ । ସ୍ୱଳ୍ପ ମିଆଦୀ ପାଠ୍ୟକ୍ରମ ଗ୍ରୀଷ୍ମ କାଳରେ ବା ସପ୍ତାହ ଶେଷରେ ରହିଛି । ଉପଦେଷ୍ଟା ଓ ଅଭିଜ୍ଞ ଶିକ୍ଷକଙ୍କ ସହିତ ଆଲୋଚନାର ବ୍ୟବସ୍ଥା ଆଞ୍ଚଳିକ ଭିତ୍ତିରେ କରାଯାଏ । ଆବଶ୍ୟକତା ଅନୁସାରେ ଏ ସବୁର ସଦୁପଯୋଗ କରାଯାଏ । ପ୍ରକୃତରେ ଯେ କୌଣସି ଉଚ୍ଚ ଶିକ୍ଷାନୁଷ୍ଠାନର ସ୍ୱମର୍ଯ୍ୟାଦା ଓ ମାନର ସୁରକ୍ଷା ଓ ଅଭିବୃଦ୍ଧି ଦୃଷ୍ଟିରୁ କେବେହେଁ ରକ୍ଷଣଶୀଳ ଓ ସ୍ଥାଣୁ ହୋଇ ନ ପାରେ । ଉଦ୍ଦେଶ୍ୟ ଓ ଉପାୟ, ସିଦ୍ଧି ଓ ସାଧନା-ଏସବୁ ପରସ୍ପର ପରିପୂରକ ହେବା ଉଚିତ । ମାନବିକ ଅବବୋଧ ଓ ଚରମ ଉତ୍କର୍ଷ ସାଧନ ପାଇଁ ସଂଚାର ସହାୟକ ଯେ କୌଣସି ଉପାୟ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟରେ ବ୍ୟବହାର କରାଯାଏ । ବହୁବିଧ ମାଧ୍ୟମର ବିନିଯୋଗ (multi media) କରି ଶିକ୍ଷାଦାନରେ ସମନ୍ୱୟ ସ୍ଥାପନ କରିବା ଯେପରି ଗବେଷଣା ସାପେକ୍ଷ ସେହିପରି ଫଳପ୍ରଦ ।

ନିତ୍ୟ ନୂତନ ଜ୍ଞାନର ଅନାବରଣ ତଥା ଆବାହନ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ଶିକ୍ଷା ଦର୍ଶନର ଅନ୍ୟତମ ବୈଶିଷ୍ଟ୍ୟ । ପାରମ୍ପରିକ ଶିକ୍ଷାୟତନର ଚିର ସହଚର ହେଉଛନ୍ତି ରକ୍ଷଣଶୀଳତା । ଏହାର ବିରୁଦ୍ଧରେ ତୀବ୍ର ବିମୁଖତା ପ୍ରକଶ କରି ଏହି ବିଶ୍ୱବିଦ୍ୟାଳୟର ପ୍ରଗତି ଓ ପ୍ରତିଭାର ସ୍ୱାଗତ କରେ । ଏଥିରେ ଯେଉଁ ପରିବର୍ତ୍ତନ ସୂତ୍ରପାତ କରାଯାଉ ଅଛି ତାହା ପ୍ରଚଳିତ ପରମ୍ପରାର ବହୁ ଉଚ୍ଚରେ । ଏହାର ସମର୍ଥକଗଣ ଯାହା ଦାବୀ କରନ୍ତି ତାହା ଆମ ଭାରତୀୟ ଭାଷାରେ "ଆନୋଭଦ୍ରା କ୍ରତବୋ ୟନ୍ତୁ ବିଶ୍ୱତାଃ"ର ପ୍ରତୀକ । ନୂତନ ଚିନ୍ତା ଓ ଜ୍ଞାନ ପାଇଁ ଏହାର ଦ୍ୱାର ଉନ୍ମୁକ୍ତ ।

ଭାରତ ଭୂମିରେ ଏକ ନୂତନ ପରୀକ୍ଷା ପାଇଁ ଉଦ୍ଦୀପନା ଓ ଉତ୍ସାହ ପ୍ରକାଶ ପାଇଛି । ୧୯୭୦ ମସିହା ଡିସେମ୍ବର ୧୬ ତାରିଖରୁ ୧୮ ତାରିଖ ପର୍ଯ୍ୟନ୍ତ ତିନିଦିନ ବ୍ୟାପୀ ଆଲୋଚନାଚକ୍ର ଦିଲ୍ଲୀ ବିଜ୍ଞାନ ଭବନରେ ଅନୁଷ୍ଠିତ ହୋଇ ଥିଲା । ବ୍ରିଟେନର ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ସମ୍ପାଦକ, ଅନ୍ୟ କେତେକ ଅଧ୍ୟାପକ, ଆମେରିକାର ଦୁଇ ଜଣ ପରିଦର୍ଶକ ଓ ଭାରତର ଶିକ୍ଷା ମନ୍ତ୍ରଣାଳୟର ମିଳିତ ପ୍ରଚେଷ୍ଟାରେ ଆଲୋଚନା ଚକ୍ରର ବ୍ୟବସ୍ଥା କରାଯାଇଥିଲା । ତତ୍କାଳୀନ ଶିକ୍ଷାମନ୍ତ୍ରୀ ଅଧ୍ୟାପକ V.K.R.V. Rao ତାଙ୍କ ଉଦ୍‌ଘାଟନ ଭାଷଣରେ ଏହି ନୂତନ ପରୀକ୍ଷାର ଉପାଦେୟତାର ଉଚ୍ଚ ପ୍ରଶଂସା କରିଥିଲେ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅଧ୍ୟକ୍ଷ ଡଃ କୋଠାରୀ ଆଲୋଚନା ଚକ୍ରରେ ସଭାପତିତ୍ୱ କରି ଉନ୍ମୁକ୍ତ ମନରେ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ବିଚାର କରିବାକୁ ନିବେଦନ

କରିଥିଲେ। ଭାରତୀୟ ଆଲୋଚକଗଣ ଉଚ୍ଚତର ଶିକ୍ଷାର ଗୁଣାତ୍ମକ ବିକାଶ, ଶିକ୍ଷାରେ ଗୁରୁ ଛାତ୍ରର ସମ୍ପର୍କ ଆଦି ଶିକ୍ଷାର ବହୁବିଧ ସମସ୍ୟା ଉପରେ ଆଲୋକପାତ କରିଥିଲେ, ଡଃ କୋଠାରୀ ତାଙ୍କ ଅଧ୍ୟକ୍ଷୀୟ ଅଭିଭାଷଣରେ (୧) ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ଓ ବିଦ୍ୟାୟତନ-ବିଶ୍ୱବିଦ୍ୟାଳୟ ପରସ୍ପର ପରିପୂରକ ହୋଇ ସମାଜର ମଙ୍ଗଳ ସାଧନ କରିବା ଉଚିତ, (୨) ସାବଧାନତା ଅବଲମ୍ବନ କରାନଗଲେ ସମୁନ୍ନତ ପ୍ରଚଳିତ ବିଶ୍ୱବିଦ୍ୟାଳୟ ମଧ୍ୟ ନିମ୍ନ କୋଟୀର ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇ ପାରେ ଇତ୍ୟାଦି ବିଷୟର ଆଲୋଚନା କରିଥିଲେ।

ଭାରତୀୟ ଶିକ୍ଷାର ପରିପ୍ରେକ୍ଷୀରେ ଶିକ୍ଷାର ବିମୁକ୍ତି କ୍ରମେ ସୁଦୂର ପରାହତ ହୋଇଯାଇ ଅଛି। ଦୋଷ ତ୍ରୁଟିର ବହୁ ଜଟିଳତା ଆମକୁ ଗ୍ରାସ କରିବାରେ ଲାଗିଛି, ସେଥିରେ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ଚିନ୍ତା ଆମକୁ ଅନୁପ୍ରାଣିତ କରୁ।

□□□

# ସେ ପୋଥି କାଟୁଛି କୀଟ

ସେ ଯୁଗ ଯାଇଛି, ଏ ଯୁଗ ଆସିଛି। ଏ ଯୁଗରେ ସେ ଯୁଗର ପୋଥି ଆଉ ନାହିଁ। ପୋଥିପାଠ ମୋଟେ ନାହିଁ। ଭାଗବତ ଘରେ, ହରିଘାଟରେ, ମଠରେ ଓ ପାଠଶାଳାରେ ପୋଥି-ପୁରାଣ ଆଉ ପଢ଼ା ଯାଉନାହିଁ। ରାହାସ, ଭାଗବତ, ଗୋ-ଚିକିତ୍ସା, ଟୁଣ୍ଟୁଣୁକା, ବଇଦ ବୃତ୍ତି ଆଦି ପାଇଁ ଆଉ ତାଳପତ୍ର ପୋଥି ଖୋଜା ଯାଉନାହିଁ। ମନ୍ତ୍ର, ଯନ୍ତ୍ର, ଗୁଣି ଗାରେଡ଼ି, ଏସବୁ ଆଉ ପୋଥିପାଠ ନୁହେଁ। ତାଳପତ୍ରର ଚିଟାଉ, ବନ୍ଧୁ ଡାକରା, ନିମନ୍ତ୍ରଣ ଆଦି ଆଜି କେବଳ ଶୁଣା କଥା, ଦେଖା କାମ ନୁହେଁ। ଏ ଯୁଗର ଯୁବକ ପାଇଁ ପୋଥିର ଅକ୍ଷର ଅପରିଚିତ। କେତେକ ପୁରୁଣାକାଳିଆ ଘରେ ପୋଥି ପୂଜା ପାଉଛି। କୀଟ କାଟୁଛି। କୀଟ ଦାଉରୁ ଶସ୍ୟକୁ ସାଇତିବା ପାଇଁ ଅଭିଯାନ ଚାଲିଛି। କିନ୍ତୁ କୀଟକଟା ପୋଥି ଝଡ଼ି ପଡୁଛି। କେବଳ ଜ୍ଞାନ ପିପାସୁ ଗବେଷକ ଖୋଜି ବୁଲୁଛନ୍ତି।

ସେ ଯୁଗର ଜ୍ଞାନ, ପ୍ରଜ୍ଞା ଓ ବିଜ୍ଞାନ ପୋଥିର ଗର୍ଭରେ ରହିଛି। ସେସବୁ ଗଦ୍ୟ ଓ ପଦ୍ୟର ସମ୍ଭାର। ଲିଖନ ମୁନର ଚାଳନାରେ ଅଦ୍ଭୁତ ଚିତ୍ର ସେଥିରେ ନିହିତ। ମନଲୋଭା କଳାର କାରୁକାର୍ଯ୍ୟ ପାଇଁ ପଟାନ୍ତର ନାହିଁ। ଶୁଣାଯାଏ, ଜନକ ମହର୍ଷି ବିଦ୍ୟାର୍ଥୀଙ୍କ ପାଇଁ ମୂଲ୍ୟାୟନ ବ୍ୟବସ୍ଥା କରିଥିଲେ। ଗୋଟିଏ ଦଳଗତ ପରିସ୍ଥିତି ସେ ସୃଷ୍ଟି କରିଥିଲେ। ଗୋଟିଏ ଗ୍ରାମର ଆବାଳବୃଦ୍ଧବନିତାଙ୍କୁ କୌଶଳ କ୍ରମେ

ଅନ୍ୟତ୍ର ପଠାଇ ଦେଇ ସେ ଗାଁରେ ନିଆଁ ଲଗାଇ ଦେଇଥିଲେ। ଏପରି ସ୍ଥଳରେ ମହର୍ଷିଙ୍କ ଶିକ୍ଷାର୍ଥୀ କି କର୍ତ୍ତବ୍ୟ କରିବେ, ତାହାହିଁ ପରୀକ୍ଷାର ପ୍ରଶ୍ନ। କେତେକ ବିଦ୍ୟାର୍ଥୀ କର୍ତ୍ତବ୍ୟ ଅବଧାରଣ କରିପାରି ନଥିଲେ। ଅନ୍ୟ କେତେକ ବିଦ୍ୟାର୍ଥୀ ଜ୍ଞାନଗର୍ଭ ପୋଥିକୁ ଉଦ୍ଧାର କରିଥିଲେ। "ଅଥା ତୋ ବ୍ରହ୍ମ ଜିଜ୍ଞାସା" କରୁଥିବା ଶିଷ୍ୟ ଗଣ ବେଦାନ୍ତର ପୋଥି ନେଇ ପଳାଇ ଆସିଥିଲେ। ଏକ କାଠ ପଞ୍ଜୁରୀର ଶୁକ ପକ୍ଷୀକୁ ଶୁକମୁନି ରକ୍ଷା କରି ନିଜ ବିଦ୍‌ବତ୍ତାର ପ୍ରମାଣ ଦେଇଥିଲେ। ସେ ହେଲେ ବ୍ରହ୍ମଜ୍ଞାନୀ।

ସେକାଳର ପୋଥିସବୁ ମୁଖ୍ୟତଃ ଧର୍ମକୈନ୍ଦ୍ରିକ ଥିଲା। ସେ ସବୁ ଥିଲା ଧର୍ମଶାସ୍ତ୍ର। ଗୁରୁଙ୍କର ମୁଖ ନିସୃତ ବାଣୀ ପୋଥିରେ ଲେଖା ଯାଉଥିଲା। ବିଦ୍ୟାର୍ଥୀମାନେ ଏ ସବୁକୁ ମୁଖସ୍ଥ କରି ପକାଉଥିଲେ। ଗୁରୁଙ୍କ ସମୀପରେ ଗୁରୁ ଗୃହରେ ଜ୍ଞାନାର୍ଜନ କରା ଯାଉଥିଲା। ସେଠି 'ଗୁରୁ ସାକ୍ଷାତ ପରଂବ୍ରହ୍ମ।' ଏତଦ୍‌ଭିନ୍ନ ଅନ୍ୟ ରୂପରେ ଗୁରୁ ପ୍ରତିଭାତ ହେଉ ନଥିଲେ। ତେଣୁ ଶାସ୍ତ୍ରରେ ଶାସ୍ତ୍ରାର୍ଥରେ ଧର୍ମଜ୍ଞାନ ନିବିଷ୍ଟ ନ ଥିଲା। 'ଭଜ ଅଦେହରେ, ଚିହ୍ନ ସ୍ୱଦେହରେ'- ଏପ୍ରକାର ଭକ୍ତିର ଉପଲବ୍‌ଧି କରା ଯାଉଥିଲା। 'କିଂ ଭୟ୍ ଭବିଷ୍ୟତି ?' ଈଶ୍ୱର ପ୍ରାପ୍ତି ନହେଲେ ଋଗ୍‌ବେଦର ସେଥିରୁ ଗୋଟିଏ ମାତ୍ର ଏଠାରେ ଉଦ୍ଧାର କରାଯାଉଛି-

"While life reached<br>
evlliy through empty faces.<br>
While space flowed slowly<br>
ovr idle bodies.<br>
And stars flowed evilly<br>
upon vast men,<br>
No passion smiles."

ଏହିପରି ସବୁ କବିତା ଗୁଡ଼ିକର ଭାବ ଉଚ୍ଚକୋଟୀର। କବିତାର ଯେଉଁ ଲାଳିତ୍ୟ, ଛନ୍ଦ, ଅର୍ଥ ଅଛି, ଏଥିରେ ଯେ ନାହିଁ, ତାହା ନୁହେଁ। ଜଣେ ପୋଖତ କବି ଲେଖିଥିଲେ ଯେମିତି ଲେଖିଥାନ୍ତେ ଏହା ତାହାଠାରୁ କିଛି ନ୍ୟୁନ ନୁହେଁ।

କଂପ୍ୟୁଟର ଯନ୍ତ୍ର ପ୍ରଥମେ ଆରମ୍ଭ ହୋଇଥିଲା, ଏକ ଗଣନାକାରୀ ଯନ୍ତ୍ର ଭାବରେ; କିନ୍ତୁ ଏହା ଆଜିକାଲି ଆମ ଜୀବନର ବିଭିନ୍ନ ସ୍ତରରେ ଭିନ୍ନ ଭିନ୍ନ ପ୍ରକାରର କାମ କରି ପାରୁଛି। କଂପ୍ୟୁଟରର ଏହି ପ୍ରକାର କାର୍ଯ୍ୟକୁ ଦେଖି ଏହାକୁ ଇଲେକ୍‌ଟ୍ରନିକ ମସ୍ତିଷ୍କ ଆଖ୍ୟା ଦିଆଯାଇଛି।

□□□

# କୂଅ-ବେଙ୍ଗ

ସେ ଦିନ ଗଲାଣି । ଘର କୋଣରେ ପଶି ନିଜକୁ ବଡ଼ ମଣିବାର ବେଳ ଆଉ ନାହିଁ । ମଉଡ଼ମଣି ସାଜିବାର ରାଜଡ଼ା କାରବାର ଏବେ ଲୋପ ପାଇଲାଣି । ଛାତି ଫୁଲାଇ ହାତୀ ପିଠିରେ ସ୍ୱର୍ଗକୁ ହାତ ବଢ଼ାଇବାର ସମୟ ନାହିଁ । ଜ୍ଞାନ ବୁକୁଲାକୁ କାଖରେ ଜାକି ଜ୍ଞାନ ଶେଷ ହେଲା ବୋଲି ବାହାଦୁରୀ କରି ହେଉନାହିଁ । ଆମ ଜଣାଶୁଣା ମହଲରେ ବଢ଼େଇ ଦେଖାଇ ଡ଼ମ କରିବାର ଯୁଗ ଚାଲିଗଲା ।

ଏହା କୂଅ ବେଙ୍ଗର କଥା । ସେ ବେଳର ବିଚାର । ଘର ଓ ଗାଁ ଅଲଗା ଅଲଗା ଥିଲା । ଗୋଟିଏ ଘରୁ ଓ ଗାଁରୁ ଅନ୍ୟ ଘର ବା ଗାଁକୁ ଯାଇ ହେଉ ନଥିଲା । ମଣିଷ ଯେଉଁଠି ଜନ୍ମ ହେଉଥିଲା, ସେଠି ସମସ୍ତ ଲୀଳାଖେଳା କରି ଆଖି ବୁଜୁଥିଲା । ଅନ୍ଧୁଡ଼ି ଜାଗାରେ ଚିତା ଜଳୁଥିଲା । ସେ ନିଜ ଜୀବନ କାଳରେ ଅନ୍ୟ ଘର ଓ ଗାଁ କଥା ଜାଣିପାରୁ ନଥିଲା । ଏସବୁ ତା'ର ସ୍ୱପ୍ନର ବାହାରେ ଥିଲା । ନିଜେ ଯାହା ଜାଣିଛି, ତା ଛଡ଼ା ଯେ ଆଉ କିଛି ଅଛି, ଏହା ତାର କଳ୍ପନାରେ ନ ଥିଲା । ନିଜ ଗୁମ୍ଫାରେ ସେ ନିଜ ବଡ଼ିମାର ଦିବା ସ୍ୱପ୍ନ ଦେଖୁଥିଲା । ନିଜ ସୀମା ବାହାରେ ଅସୀମ ଯେ କିଛି ଥାଇପାରେ, ଏକଥା ସେ ଜାଣି ନଥିଲା । ନିଜ ସୀମା ଭିତରେ ତାର ଜ୍ଞାନ, ବୁଦ୍ଧି ଓ ଶକ୍ତି ଅଟକି ଯାଇଥିଲା । ଗୋଟିଏ ପାଚେରୀର ଏକ ପାଖରେ ରହି ସେ ସୁଖରେ ଶୋଇ ପଡୁଥିଲା ।

ସେ ଅବସ୍ଥା ପାରି ହୋଇଗଲାଣି । ଆମ ଗାଁର ନିପଟ ଅନ୍ଧାର ମୂଲକ ବି ଅଲଗା ହୋଇନାହିଁ । ପାଣି କାଦୁଅରେ ଯେଉଁଠାକୁ ଯମ ଯିବାର ଭୟ ଥିଲା, ସେଠିକି ଲୋକ ଚାଲିଲେଣି । ଏଇ ଏପଟ ପଧାନ ଗାଁ ଚାରିଆଡ଼େ ପାଣି । ଛାତିଏ କି ବେକେ ହେବ । ଯିବା ଆସିବା ବନ୍ଦ । ସେଠି ଟ୍ରାନଜିଷ୍ଟର୍ ରେଡ଼ିଓ ବାଜୁଛି । ଖବର ଓ ବିଚାର, ମତ ଓ ଭାବନାରେ ଡେଣା ଲାଗିଛି । କଥା ସବୁ ଉଡ଼ି ଯାଉଛି । ପଧାନଙ୍କ ପଦିଆ ବୁଢ଼ା ମଥାନ ଉପରେ ଗଣ୍ଡି ଦେଉଛି ଓ ଶୁଣୁଛି କେଉଁଠି କଣ ହେଉଛି । ପାହାଡ଼ ତାଳୁରେ କେତୋଟି ଘର । ଆଦିବାସୀଙ୍କର । ଜଙ୍ଗଲ ଫଳ, ଗଛ ପତର ଓ ଝରଣାର ପାଣିରେ ଦିନ କଟୁଛି । ସେଠି ସରକାରଙ୍କ ତରଫରୁ ରେଡ଼ିଓ ଦିଆଯାଇଛି । ମୁର୍ମୁ ଗମାଙ୍ଗ ସଂଧ୍ୟାହେଲେ ଶୁଣୁଛି, ମଟର ଗାଡ଼ିରେ ଓ ପାଦରେ ଲୋକ ଚାଲିଛନ୍ତି ରେଡ଼ିଓ ଧରି । ମଫସଲ ଗାଁରେ ଆମ ଦେହ ପଡ଼ିଛି, କିନ୍ତୁ ମନ ଉଡୁଛି । ଭାବନା ଉଡୁଛି । ଭାବ ସାହୁ ଦୋକାନ ପିଣ୍ଡାରେ ରେଡିଓ ଖଞ୍ଜା । ସେଠୁ ଭାବନା ଉଡ଼ି ଯାଉଛି । ଦୂର ଦୂରାନ୍ତ ଗାଁରୁ ଲୋକେ ବେଉସା କରି ବା ମୂଲ ଲାଗିସାରି ରେଡ଼ିଓ ଶୁଣୁଛନ୍ତି । ଅଜଣା ଓ ଅଶୁଣା ଦେଶର ଭାଷା, ରାଗରାଗିଣୀ ଓ

ରଙ୍ଗରହସ୍ୟରେ ମନ ମାତି ଉଠୁଛି । କାହିଁ କେଉଁ ଦେଶର କଥା କାନରେ ପଡ଼ି ଯାଉଛି । କାନ ଓ ମନ ଏକା ବେଳେକେ ଉଛୁଳି ପଡୁଛି । ଘନ ଘଡ଼ାଇର ଘର ଆଜି ଦୁନିଆ ଠାରୁ ଅଲଗା ହୋଇ ନାହିଁ । ଯାହା ଯେଉଁଠି ଘଟୁଛି ଘଡ଼ିକେ ସବୁ ଘନ ଘରେ ବାଜି ଉଠୁଛି । ଘରଟା ସାରା ଦୁନିଆର କେନ୍ଦ୍ର ହୋଇଛି । ଗାଁଟା ଅକଣା, ଚୁପଚାପ୍ ସ୍ଥିର ଥିଲା । ସେଠି ପଲ୍ଲୀଶ୍ରୋତା-ମଣ୍ଡଳୀ ଗଢ଼ାଯାଇଛି । ପୃଥିବୀର ସମସ୍ୟା ଉପରେ ସେଠି ପ୍ରଶ୍ନ ହେଉଛି । ସମସ୍ୟା କଅଣ ଜାଣିବା ପାଇଁ ସମସ୍ତଙ୍କ ମନ ଛନଛନ ହେଉଛି । କାହ୍ନୁ, କୁନ୍ଦ, କରିମ୍, କେତକୀ... ଏମାନେ ଆଉ କୂଅ ବେଙ୍ଗର ଯୁଗରେ ନାହାନ୍ତି ।

ମଳି ମୁଣ୍ଡିଆଙ୍କୁ ଧୋବ-ଧାଉଳିଆ ଘୃଣା କରିବାର ବେଳ ଆଉ ନାହିଁ । ଗାଁ ଗଣ୍ଡା କଥା ଯେଉଁ ସହର ଲୋକେ ଧରୁ ନଥିଲେ, ସେମାନେ ସେଠାକୁ ଧାଉଁ ହେଲେଣି । ରେଳ, ମଟର, ଜିପ୍, ଶଗଡ଼ ଆଦି ଯାନ ବାହନ ଚଢ଼ି ନଈନାଳ ପାରି ହୋଇ କାଦ ଚକଟି ମଫସଲକୁ ଚାଲିଲେଣି । କେଉଁଠି ନଦୀବନ୍ଧ, କେଉଁଠି ଶିଳ୍ପ ନାନା ଯୋଜନା ହେଲାଣି । ଏସବୁ କାମପାଇଁ ଯାହାଙ୍କ ଛାଇ ପଡୁ ନଥିଲା, ସେଠି ସେମାନେ ହାଇ ମାରିଲେଣି । ଆମ ମାତୃଭାଷା ଛଡ଼ା ଅନ୍ୟ ଭାଷାଭାଷୀ ଲୋକେ ସେଠି ଓଡ଼ିଆ ଶିଖିଲେଣି ଓ ଆମକୁ ତାଙ୍କ ଭାଷା ଶିଖାଇଲେଣି । କୂଅବେଙ୍ଗର ଲଙ୍କାରେ ହରିଶବ୍ଦ ହେଲାଣି ।

ମେଳଣ ପଡ଼ିଆରେ ଏବେ ବସ୍ ରହୁଛି । ରାନ୍ଧୁଣୀ ଗାଧୁଆ ବେଳକୁ ଆସିଯାଉଛି । ରଙ୍ଗ ରଙ୍ଗର ପୋଷାକ, ଜିନିଷ, ଫଳମୂଳ ଯନ୍ତ୍ରପାତି ଦେଖି ତାଜୁବ ହେବାର କଥା । ଗାଁର ବୁଢ଼ାମାନଙ୍କୁ ଇଏ ଅଘଟଣ ଘଟି ଯାଉଛି । ଖବର କାଗଜ ଆସୁଛି । ବିଡ଼ା ଫିଟା ହେବାମାତ୍ରେ କିଏ କୁଆଡ଼େ ଟାଣି ନେଇ ଯାଉଛନ୍ତି । ସକ ଖବର ଘରେ ଘରେ ପରଷା ହୋଇ ଯାଉଛି । ଉଡାଜାହାଜ, ରେଳଗାଡ଼ି, ବସ୍ ଆଦି ଯାନରେ ଧାଇଁ ଯାଉଛି ଖବର କାଗଜ । ଯେଉଁଠାକୁ ତାହା ସମ୍ଭବ ନୁହେଁ, ହକର ପିଠିରେ ନାଉ ହୋଇ ଚାଲିଯାଉଛି । ଲୋକ ବି ଟାକିଛନ୍ତି । ପାଇବା ମାତ୍ରେ ଟା'କୁ କରି ଗିଳି ପକାଇବା ପରି ପଡୁଛନ୍ତି । ତିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ ସର୍ବତ୍ର ଏଇଆ । ଜାଣିବାର ଶୋଷ ବଢୁଛି, ଢୋକେ ପିଇ ଦଶ ଢୋକ ପାଇଁ ଆଶା ରହୁଛି । ଖଣ୍ଡେ ଖବର କାଗଜରେ ଶୋଷ ସରୁ ନାହିଁ । ସେଥିରେ କଅଣ ଅଛି ? ସେଠି କଅଣ ହେଉଛି ? ସେ କଅଣ କହୁଛି ? କୂଅବେଙ୍ଗର ପାଚେରୀ ଉଠି ଯାଇଛି ।

କୂଅ-ବେଙ୍ଗର ଆଖି ଖୋଲିଯାଇଛି । ସେ କବାଟ କିଳି ଘରେ ପଶି ନାହିଁ । ତା'ର ଦୁଆର ମେଲା । ଝରକା ଖୋଲା । ସେ ହିମାଳୟର ଆଦିବାସୀଙ୍କ ଜୀବନ ଚିତ୍ର ଦେଖୁଛି । ଆଇସ୍‌ଲାଣ୍ଡର ଅଧିବାସୀଙ୍କ ନାଚ କଥାଚିତ୍ର ଦ୍ୱାରା ଆମ ଆଗରେ

ଦେଖା ଯାଉଛି । କ୍ଷେତ ଖମାର, କାରିଗରି କାମ, ପିଲାପାଳିବା, ନଈବାନ୍ଧିବା ଇତ୍ୟାଦି ବିଭିନ୍ନ ଦେଶରୁ ଚଳଚ୍ଚିତ୍ର ସାହାଯ୍ୟରେ ଥୁଆ ଯାଉଛି । ଆମକୁ ଠିକ୍ ଜଣାଯାଉଛି । ମୁହୂର୍ତ୍ତକ ପାଇଁ ଆମେ ଆମକୁ ଭୁଲି ଏସବୁ କିପରି ଅଧିକ ଭଲ ହୋଇପାରେ ଜାଣିପାରୁଛୁଁ । ଆମେ ଅସ୍ଥିର ହୋଇ ପଡୁଛୁଁ । ଆମ ମନ ଛନ ଛନ ହେଉଛି । ଆମ ନିଦ ଭାଙ୍ଗି ଯାଉଛି ।

ଲୋକଙ୍କ ଯା-ଆସ ଚାଲିଛି । ବସ୍, ଟ୍ରେନ୍ ଆଦିରେ ଯାଗା ମିଳୁନାହିଁ । ଲୋକ ଖୁନ୍ଦାଖୁନ୍ଦି । ଚାଷୀ କାରିଗର ବେପାରୀ, ଓକିଲ, ଡାକ୍ତର, ଶିକ୍ଷକ, ଇଞ୍ଜିନିଅର ଏସବୁ ସମାଜର ସେବା ଉଦ୍ଦେଶ୍ୟରେ ଏଠୁ ସେଠାକୁ ଓ ସେଠୁ ଏଠାକୁ ଚାଲିଲେଣି । କେହି ଗୋଟିଏ ଜାଗାରେ ଅଟକୁ ନାହିଁ । ଉଡ଼ାଜାହାଜ ପ୍ରଭୃତି ଦ୍ୱାରା ଯିବା ଆସିବା ସହଜ ଓ ଚଞ୍ଚଳ ହୋଇ ଯାଇଛି । ବିଭିନ୍ନ ସ୍ତରରେ ଜ୍ଞାନର ଦିଆନିଆ ଚାଲିଛି । ଜ୍ଞାନ ଜଣକର ଗଣ୍ଠିଧନ ହୋଇ ରହୁନାହିଁ । ଟଙ୍କା କଉଡ଼ି, ଜମିବାଡ଼ି, ପାଟମଠା-ଏସବୁ ଧନ ଭାଇ-ଭାଗରେ ପଡ଼ିପାରେ । କିନ୍ତୁ ବିଦ୍ୟାର ଭାଗ କେହି ନେବ ନାହିଁ ବୋଲି କୂଅ-ବେଙ୍ଗ କହେ । ସେ କଥା ଆଜି ସତ ନୁହେଁ । ବିଭିନ୍ନ ସ୍ତରରେ ଜ୍ଞାନର ଚର୍ଚ୍ଚା ହେଉଛି । ଖବର କାଗଜ, ପତ୍ର ପତ୍ରିକା, ପୁସ୍ତକ, ଚଳଚ୍ଚିତ୍ର, ପ୍ରାଚୀର ପତ୍ର, ରେଡ଼ିଓ, ଟେଲିଭିଜନ, ଡାକବାଜି ଯନ୍ତ୍ର, କଥୋପକଥନ ଆଦି ଦ୍ୱାରା ସେହି ଚର୍ଚ୍ଚା ସମସ୍ତ ଜାନରେ ପଡୁଛି । ନେବା ଓ ଦେବା ଦ୍ୱାରା ଜ୍ଞାନ ବଢୁଛି । ଦୂରତା ଆଜି ପରାଜୟ ଲାଭ କରିଛି । ସବୁ ପାଖାପାଖି ହୋଇଛି । ନିକଟତା ଆଜି ବାସ୍ତବ ହୋଇଛି ।

ଉଦ୍ଧବ ଓ ଶ୍ରୀକୃଷ୍ଣଙ୍କ ସମ୍ବାଦ ଭାଗବତରେ ଅଛି । ନାରଦ ଓ ବସୁଦେବ, ଅବଧୂତ ଓ ଯଦୁରାଜା ଏମାନଙ୍କ ମଧ୍ୟରେ ଧର୍ମଚର୍ଚ୍ଚା ହେଉଥିଲା । ଏହାକୁ ସମ୍ବାଦ କହନ୍ତି । କୂଅବେଙ୍ଗ ତ ଆତ୍ମବଡ଼ିମାରେ ଛିଡ଼ି ପଡୁଥିଲା । ସେଠି ଚର୍ଚ୍ଚାର ସ୍ଥାନ ନ ଥିଲା । ତେଣୁ ଜ୍ଞାନର ବିକାଶ ହେଉ ନ ଥିଲା । ସମ୍ବାଦ ଯୋଗୁଁ ଜ୍ଞାନର ବିକାଶ ସମ୍ଭବ ହେଲା । ଏ ଯୁଗର ତାହା ଲକ୍ଷଣ । ସାମାଜିକ ବିଚାର, ଧର୍ମ, ରାଜନୀତି, ସାହିତ୍ୟ, କଳା ଆଦି ସମସ୍ତ କ୍ଷେତ୍ରରେ ଅଧିକ ସମ୍ପର୍କ ଓ ସମ୍ବାଦ ହେଉଛି । ଅଲଗା ରହିବା କୂଅବେଙ୍ଗର ମନୋଭାବ । କିନ୍ତୁ ପାଖକୁ ଆସିବା ଏ ଯୁଗର ମନୋଭାବ ।

ସେ ବେଳରେ ଜଣେ ନିର୍ଦ୍ଦେଶ ଦେଉଥିଲେ ଓ ଅନ୍ୟମାନେ ତାହା ପାଳୁଥିଲେ । ଚର୍ଚ୍ଚାକଥା ଜଣା ନଥିଲା । ଏକାଧିକ ଲୋକ ହେଲେ କଳହ ହିଁ ସାର ହେଉଥିଲା । ଲୋକ ସଂଖ୍ୟା ବେଶୀ ହେଲେ ଜଣଙ୍କ କଥା ଅନ୍ୟଙ୍କୁ ଶୁଭୁ ନଥିଲା । ସେଥିଯୋଗୁଁ କଳହ କରୁଥିଲେ, କିମ୍ବା ମୁଣ୍ଡ ହଲାଇ କଥାଟିକୁ ମାନି ନେଉଥିଲେ । ଆଜିକାଲି ସହସ୍ରାଧିକ ବା ଲକ୍ଷାଧିକ ଲୋକ ହେଲେ ବି ପ୍ରତ୍ୟେକ ବକ୍ତାଙ୍କ କଥା ଶୁଣି

ପାରୁଛନ୍ତି । ପୃଥିବୀର ଯେ କୌଣସି ଦେଶର ଭାଷା ସଙ୍ଗେ ସଙ୍ଗେ ଭାଷାନ୍ତରିତ ହୋଇ ପାରୁଛି । ଏହାଦ୍ୱାରା ନିଜ ଭାବ ନିଜ ଭାଷାରେ ପ୍ରକାଶ କରିବା ଯେପରି ସହଜ, ଅନ୍ୟ ଭାଷାଭାଷୀ ଲୋକଙ୍କ ପକ୍ଷରେ ଗ୍ରହଣ କରିବା ସେପରି ସମ୍ଭବ । ଚିନ୍ତା ଓ ଚିନ୍ତନର ଅପୂର୍ବ ସୁଯୋଗ ଖୋଲିଯାଇଛି । ନିଜ ଦଳର ବା ନିଜର ଭାବ ଅନ୍ୟଠାରେ ପହଞ୍ଚାଇବା ସହଜ ହୋଇଗଲା । ଯେ କୌଣସି ଘୋଷଣା ଗୋଟିଏ ଜାଗାରେ କରିଦେଲେ, ଏହା ତୁରନ୍ତ ହଜାର ହଜାର କାନରେ ପଡ଼ି ଯାଉଛି । ତେଣୁ ଆଉ କବାଟ କିଳି କୂଅ ବେଙ୍ଗ ସାଜି ହେବ ନାହିଁ । କବାଟ, କାନ୍ଥ ବା ଜଙ୍ଗଲ, ନଈନାଳ ଓ ଦୂରତା ଆମକୁ ଅଲଗା କରି ପାରୁନାହିଁ ।

ଆମେ ଏଇ ଯୁଗର ମନୁଷ୍ୟ । ପିଲାକାଳ କଥା । ପିଲାଟିଏ ତଳେ ପଡ଼ିଲା । ତାର କୁଆଁ କୁଆଁ ଶବ୍ଦରେ ଘର ଉଚ୍ଛୁଳି ପଡ଼ିଲା । ସାଇ ପଡ଼ିଶା ଧାଇଁ ଆସିଲେ । ହୁଳହୁଳି ପଡ଼ିଲା । ଦୁଃଖ ପିଲା ଓ ମା ହସିଲେ । ପିଲାଟି ମାଙ୍କ କଥାରେ ହୁଁ ହାଁ ମାରିଲା । ଭୋକ କଲେ କାନ୍ଦିଲା ଓ ପେଟ ପୂରିଲେ ହସିଲା । ଶୀତ କଲେ ଗୋଡ଼ ଯାକିଲା ଓ ଗରମ କଲେ ଗୋଡ଼ ଛାଟିଲା । ପମ୍ପୁଡ଼ି କାମୁଡ଼ାରେ କାନ୍ଦ ଓ ଦୋଳି ଝୁଲାରେ ହସ । ଯାହା ଠିକ୍ ପାଖ, ବାସ୍ତବ ଓ ଦେହକୁ ଲାଗେ, ସେଥିରେ ପିଲା ହସେ, କାନ୍ଦେ ବା ହଲଚଲ ହୁଏ ।

ମା କାନି ଧରି ତୁଠ ପଥର ଦେଖିଲା । ପୋଖରୀ ହୁଡ଼ା, ଦେଉଳ ବେଢ଼ା, ନଦୀଘାଟ, ବଣ ପାଟ ଆଡ଼େ ଗଲା । ସାଙ୍ଗ ଆସିଲେ । "କିଏ", "କଅଣ", "କାହିଁକି", "କିପରି" ଆଦି ଅସରନ୍ତି ପ୍ରଶ୍ନ ହେଲା । ପଚାରିବା ମନ ହେଲା । ହାତ ଚଗଲା ହେଲା । ଟେକିବା, ଠେଲିବା, ଭାଙ୍ଗିବା, ଉଠାଇବା, ଖୋଲିବା, ମୁଦିବା ଆଦି କାମ ହେଲା । ପ୍ରଶ୍ନର ଉତ୍ତର ଆଶାରେ ଏସବୁ କରାଗଲା । ଲଣ୍ଠନ କାଳିବା ଓ ଲିଭିବା କରୁଁ କରୁଁ କଳ ବିଗିଡ଼ି ଗଲା । ଶିଖିବାର ଇଚ୍ଛା ବଢ଼ିଲା ।

କ୍ରମେ ବୟସ ଅଧିକ ହେଲା । ଆଗ୍ରହ ବେଶୀ ହେଲା । ଘର ଗାଁ କିଲାକୁ ଟପି ଚିନ୍ତା ଆଗେଇଲା । କଥା ଓ କାମ, ପାଖରେ ନ ରହି ଦୂରକୁ ଛୁଟିଲା । ଅତୀତର ଘଟନା ଓ ଭବିଷ୍ୟତର ସମ୍ଭାବନା ମନକୁ ଛୁଇଁଲା । ଦୂର ଦୂରାନ୍ତର ଖବରରେ ମନ ମଜ୍ଜିଲା । ପ୍ରଶ୍ନ କ୍ରମେ ଅଧିକ ହେଲା । ମନ ସୁଦୂର ପ୍ରସାରୀ ହୋଇ ଅସୀମକୁ ବ୍ୟାପିଲା । ଏ ଯୁଗର ଯନ୍ତ୍ରପାତି ଏହାକୁ ଆହୁରି ଚଞ୍ଚଳ କରିଦେଲା । ଖବର କାଗଜ, ଟେଲିଭିଜନ, ରେଡିଓ ଏବଂ ଚଳଚ୍ଚିତ୍ର ଦ୍ୱାରା ମନ ଆଉରି ଧାଇଁଲା । ବାସ୍ତବିକ ଏ ଯୁଗରେ କୂଅ-ବେଙ୍ଗ କଥା ମିଛ ।

□□□

# ସ୍ୱାଧ୍ୟାୟର ସୋପାନରେ

ଜୀବନର ପ୍ରତିଟି ମୂହୂର୍ତ୍ତ ଶିକ୍ଷାନୁକୂଳ। ଏହାର ଉପାଦାନ ହେଉଛି ବ୍ୟକ୍ତିର ଅନ୍ତର୍ନିହିତ ଅସୀମ ସମ୍ଭାବନା ଓ ଦିବ୍ୟ ଚେତନା। ପରିବେଶର ଘାତ ପ୍ରତିଘାତ ଏ ସବୁକୁ ମଛିତ କରି ନବୋନ୍ମେଷ ଦିଗରେ ଶାଣିତ କରିଦିଏ। ଅନନ୍ତ କାଳର ସମୟ, ଜୀବନ ପାଇଁ ସୀମିତ। ସେଥିରେ କିନ୍ତୁ ନିହିତ ଅଛି ଅସୀମ ଆହ୍ୱାନ। ବାସନାର ଉତ୍ପୀଡ଼ନ ବୃକ୍ଷର ଚେର ସଦୃଶ ଭିତରକୁ ଓ ବାହାରେ ଚାରିଆଡ଼କୁ ମାଡ଼ିଯାଏ। ଏଥିଯୋଗୁଁ ବିକାଶ ପାଇଁ ଜୀବନ ସର୍ବଦା ଉନ୍ମୁଖ ହୋଇପଡ଼େ। ଜୀବନ ଯାତ୍ରାକୁ ସାର୍ଥକ କରିବା ପାଇଁ ସୁପ୍ତ ବାସନା ଉଙ୍କି ମାରୁଥାଏ। ଜୟଯାତ୍ରା ପାଇଁ ପାଥେୟ ଭିତରୁ ଓ ବାହାରୁ ଆସିଯାଏ। ବିଭିନ୍ନ ଆଡ଼କୁ ଜଳଧାର ନଦୀ ଗତିପଥରେ ଯୋଗ ଦେଇ ସ୍ରୋତକୁ ସମୃଦ୍ଧ କରିପକାଏ। ନଦୀ ଗର୍ଭରେ ଏସବୁ ଜଳଧାର ବାରି ହୁଏନାହିଁ। ନଦୀ ମଧ୍ୟ ଏହା ଜାଣିପାରେ ନାହିଁ। ଠିକ୍ ସେହିପରି ଜୀବନ ନାନା ପ୍ରଭାବରେ ପ୍ରଭାବିତ ହୁଏ। ସବୁଯାକ ପ୍ରଭାବର ଉତ୍ସକୁ ଥୟ କରିବା କେବେହେଁ କାହା ପକ୍ଷରେ ସମ୍ଭବ ନୁହେଁ। ସେ ସବୁର ସ୍ୱାତନ୍ତ୍ର୍ୟ ରହିଥିଲେ ହେଁ ଜୀବନର ନିର୍ମାଣରେ ସେମାନେ ନିଜ ନିଜ ଅସ୍ତିତ୍ୱ ପରବର୍ତ୍ତୀ କାଳରେ ହରାଇ ବସନ୍ତି। ଏହା ସତ୍ତ୍ୱେ ଶିକ୍ଷାୟତନର ପ୍ରଭାବ ବାରି ହୋଇଯାଏ। ଅବଶ୍ୟ ପିତାମାତା ଆଦି ଗୁରୁଜନ ବାତ୍ସଲ୍ୟ ପ୍ରସଙ୍ଗରେ ଯେଉଁ ପ୍ରଭାବ ପକାଇଥାନ୍ତି ତାହା ଚିର ଅଲିଭା ରହେ। ଏହା ଧନୀ, ଦରିଦ୍ର ନିର୍ବିଶେଷରେ ଘଟିଥାଏ। ବରଂ ବାଲ୍ୟକାଳରେ ଦାରିଦ୍ର୍ୟର କଷାଘାତ ଯେତେ ନିର୍ମମ ହୋଇଥାଏ, ପିତାମାତାଙ୍କ ପ୍ରଭାବ ସେତେ ସ୍ପଷ୍ଟ ପ୍ରତିଭାତ ହୁଏ। ଅଥଚ ଶିକ୍ଷାୟତନ ଓ ଶିକ୍ଷକଙ୍କର ପ୍ରଭାବ ସେହି ସମୟରେ ସଦା ପ୍ରାଣବନ୍ତ ଓ ଅଭୁଲା। ଉନ୍ନତିର ପଥରେ ଯେ ଯେତେ ବାଟ ଆଗେଇଥାନ୍ତୁ ବା ବାଟ ଆଡ଼େଇ ଭିନ୍ନ ଭିନ୍ନ ଦିଗରେ ଚାଲି ଯାଇଥାନ୍ତୁ-ସମସ୍ତଙ୍କ ଉପରେ ଶିକ୍ଷାର ପ୍ରଭାବ ବିଛୁଡ଼ି ହୋଇପଡ଼େ। ରାମାର ଯେତେ ରାମକୃଷ୍ଣଙ୍କର ସେତେ। ଗାଁ ଚାଷୀର ଯେତେ ବୁଦ୍ଧିଜୀବୀର ସେତେ। ଆଜି ଏହି ପ୍ରଭାବହିଁ ସ୍ମରଣୀୟ।

ଆମ ବାଲ୍ୟ ବିଦ୍ୟାପୀଠ ଭଦ୍ରକ ହାଇସ୍କୁଲ ଆଜି ଶତାୟୁ ହୋଇଛି। ଗୌରବମଣ୍ଡିତ ଓ ଅଭିଜ୍ଞତା ରଞ୍ଜିତ ହୋଇଛି। ଆଜି ଏସବୁ ସ୍ମୃତି ଚାରଣ କରିବାର କଥା। ଯେତେବେଳେ ଏହା ପ୍ରାୟ ଅର୍ଦ୍ଧଶତାବ୍ଦୀରେ ଉପନୀତ ହୋଇଛି, ସେତେବେଳେ ଏହା ଆମରି ସମୟର ଛାତ୍ରମାନଙ୍କୁ ଗ୍ରହଣ କରିଛି। ଅର୍ଥାତ୍ ୧୯୩୦ ମସିହାରୁ ୧୯୩୪ ମସିହାଯାଏଁ ଅଷ୍ଟମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ଯାଏଁ ମୋର ଶିକ୍ଷାକାଳ। ଫୋର୍ଥ କ୍ଲାସରୁ ଫାଷ୍ଟ କ୍ଲାସ ଯାଏଁ ମୋର ପାଠପଢ଼ା। ଆଜି

ଦଶମ ଶ୍ରେଣୀର ହାଇସ୍କୁଲ ପିଲାଙ୍କୁ ଏସବୁ ବାରଶ୍ରେଣୀ କଥା ଅଡୁଆ ଲାଗିପାରେ। ଆହୁରି ଅଡୁଆ ଲାଗିପାରେ ଯେ ମୋତେ ବଡ଼ ଭୟ ଲାଗୁଥାଏ। ଫୋର୍ଥ କ୍ଲାସ୍‌ର ବଡ଼ ବଡ଼ ପିଲାଙ୍କୁ ଡର। ନାରାୟଣଚନ୍ଦ୍ର ମାଇନର ସ୍କୁଲରୁ ଭଲ ଭାବରେ ପାଶ କରିଥାଏଁ। ବୃତ୍ତି ମିଳିବ ବୋଲି ଶୁଣାଯାଉଥାଏ। ନରାୟଣଚନ୍ଦ୍ର ମାଇନର ସ୍କୁଲଠାରୁ ଭଦ୍ରକ ହାଇସ୍କୁଲ କେତେ ବା ଦୂର। ସର୍ପିଳ ସାଳନ୍ଦୀ ନଦୀ ମଝିରେ ବାଧା ଦେଉଥାଏ। ସେ ବି ପୁଣି ଡୁଙ୍ଗାକେ ପାର ହେବା କଥା। ଭଦ୍ରକ ହାଇସ୍କୁଲ ସମଗ୍ର ସବଡିଭିଜନରେ ଏକମାତ୍ର ଅନୁଷ୍ଠାନ। ତେଣୁ ସାରା ସବ୍‌ଡିଭିଜିନର ବଛା ବଛା ପିଲା ଏଠାକୁ ଆସନ୍ତି। ମୁଁ ଏକା କାହିଁକି, ଦୂରରୁ ଆସିଥିବା ମୋ ପରି ସବୁ ପିଲା ମଫସଲି। ଆମ ଲୁଗାପଟା, ଚାଲିଚଳଣ ଓ ଗତିବିଧିକୁ ଦେଖି ସେମାନେ ହସନ୍ତି ଓ ଥଟା କରନ୍ତି। ମୁଁ ଏଥିରୁ ପୂର ବାଦ ପଡ଼ିନାହିଁ, କିନ୍ତୁ ଭଲ ପିଲା ବୋଲି ଶୁଣି ସେମାନେ ଏତେ ବେଶୀ ଆଗେଇ ଯାଆନ୍ତି ନାହିଁ। ଆମେ ସବୁ ଅଧିକାଂଶ ପିଲା ଗରିବ ଓ ସମ୍ଭବତଃ ଏହି କାରଣରୁ ଆମେ ଡରିଯାଉଁ। ଭରସି ସେମାନଙ୍କ ସଙ୍ଗେ ମିଶି ପାରୁନାହିଁ।

ମୋର ସୌଭାଗ୍ୟ ମୁଁ ଅଳ୍ପ କେତୋଟି ପଢ଼ିବା ଅନୁଷ୍ଠାନରେ ପଢ଼ାଇବା ସୁଯୋଗ ପାଇଛି। ଶିକ୍ଷାର୍ଥୀ ଓ ହେବାର ଅନୁଷ୍ଠାନଗୁଡ଼ିକ ଦେଇ ରେଭେନ୍‌ସା କଲେଜ ଓ ରାଧାନାଥ ଟ୍ରେନିଂ କଲେଜ। ଭଦ୍ରକ ହାଇସ୍କୁଲରେ ମଧ୍ୟ, ବି.ଏ. କରିସାରି ୧୯୩୮ ମସିହାରୁ ୧୯୩୯ ମସିହା ପର୍ଯ୍ୟନ୍ତ ବର୍ଷେ କାଳ ଓ ଟ୍ରେନିଂ କଲେଜରୁ ଟ୍ରେନିଂ ସାରି ୧୯୪୦ ମସିହାରେ ୫ମାସ ଯାଏଁ ଶିକ୍ଷକତା କରିଛି। ଟ୍ରେନିଂ କଲେଜର ଡିପ୍ଲୋମା-ଇନ୍-ଏଡୁକେସନ ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିବାରୁ ଓଡ଼ିଶା ଡିଭିଜନର ତତ୍କାଳୀନ ସ୍କୁଲ ଇନ୍‌ସପେକ୍ଟର ଶ୍ରୀଯୁକ୍ତ ଏସ୍. ରାୟ ମୋତେ ୧୯୪୦ ମସୀହା ଜୁଲାଇ ୨୬ ତାରିଖରେ ପୂର୍ବ ସୋରୋ ସର୍କଲର ସ୍କୁଲ ସବ୍‌ଇନ୍‌ସପେକ୍ଟର ନିଯୁକ୍ତ କରିଦେଲେ। ହେଲେ ମୋର ଶିକ୍ଷାପୀଠ ଭଦ୍ରକ ହାଇସ୍କୁଲରେ ଆଜୀବନ ଶିକ୍ଷକ ହୋଇ ରହିଥାନ୍ତି। ପରୀକ୍ଷାରେ ପ୍ରଥମ ହୋଇଥିବାରୁ ନିଯୁକ୍ତି ଯାଚିଦେବା କି ସୁନ୍ଦର ପରମ୍ପରା ଓ ଏହା ମୋତେ ବେଶ୍ ଉତ୍ସାହିତ କରିଛି। ଆଜି ସେ ପରମ୍ପରା ଶିକ୍ଷା ଯେ ସମସ୍ତଙ୍କୁ ନିଶ୍ଚୟ ଉତ୍ସାହିତ କରନ୍ତା। ମାତ୍ର ପଚାଶଟି ଟଙ୍କାର ମାସିକ ବେତନ ମୋତେ ମିଳୁଥାଏ। ସେହି ସ୍କୁଲର ଅନ୍ୟ ସଫଳ ଛାତ୍ର ହୋଇଥିବାରୁ ଏହି ନିଯୁକ୍ତି ସମ୍ଭବତଃ ଆପେ ଆପେ ଆସିଥିଲା। ଯାହାହେଉ ଅଧ୍ୟୟନର ଅନୁଷ୍ଠାନ ସମଗ୍ର ଅଧ୍ୟାପନାର କ୍ଷେତ୍ର ହେବାରୁ ଗର୍ବ ଓ ଗୌରବ ସ୍ୱତଃ ଜାଗିଉଠିଥିଲା। ନିଜକୁ ଉତ୍ସର୍ଗ କରିବାର ମନୋବଳ ମଧ୍ୟ ରହି ଅନୁଷ୍ଠାନ ଓ ଏହାର ଆଦର୍ଶକୁ ଆପଣାର

କରିନେବାର ଅଭ୍ୟାସ ସୃଷ୍ଟି ହେଲା । ମନ, ପ୍ରାଣ ବେଶ୍ ଲାଗିଗଲା । ସ୍ୱାଧ୍ୟାୟର ସୋପାନ, ଯାହାକି ଜୀବନ ଓ ଜୀବିକାର ଉତ୍ସ ହୋଇ ରହିଛି । ଅନୁରାଗ ଓ ଆନ୍ତରିକତା ସେଥିରୁ ଜନ୍ମ ହୋଇଛି ।

ଶତାବ୍ଦୀର ଏହି ଅନୁଷ୍ଠାନର ଇତିହାସରୁ ଅର୍ଦ୍ଧ ଶତାବ୍ଦୀ ପୂର୍ବର ସାମାନ୍ୟ କେତୋଟି ଅଭିଜ୍ଞତା ଆଜି ନିଶ୍ଚୟ ଜଣା ପଡ଼ିପାରେ । ସମୟକ୍ରମେ ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ ଓ ଶିକ୍ଷାର୍ଥୀ-ଶିଷ୍ୟ ସଂପର୍କ ବଦଳି ଯାଇଛି । ପରିବର୍ତ୍ତିତ ପରିପ୍ରେକ୍ଷୀରେ ପଛର ଦୃଷ୍ଟି ବର୍ତ୍ତମାନ ପାଇଁ ଏକ ଯନ୍ତ୍ରଣା ଓ ସାନ୍ତ୍ୱନା । କିନ୍ତୁ ଅତୀତର ଗର୍ଭରୁ ବର୍ତ୍ତମାନ ପାଇଁ ଉତ୍ସାହ ମିଳେ ଓ ଭବିଷ୍ୟତର ପୁନର୍ଗଠନ ପାଇଁ ଏହା ଭିତ୍ତିଭୂମି ହୁଏ । ଏହା ବ୍ୟତୀତ, ଶତାୟୁ ଏହି ସଦନୁଷ୍ଠାନର ଗୌରବ ଗାଥା ଆଜି ସ୍ମରଣୀୟ । ଯେଉଁମାନଙ୍କ ଦାନ ଇତିହାସର ପୃଷ୍ଠାକୁ ସମୃଦ୍ଧ କରିଛି ସେମାନେ ନମସ୍ୟ । ସବୁ ପ୍ରଧାନ ଶିକ୍ଷକ, ସବୁ ଗୁରୁଜୀ, ସବୁ ଛାତ୍ର, ସବୁ କର୍ମୀ ଓ ଅଭିଭାବକ ଆଜି ବନ୍ଦନୀୟ । ବିଶେଷ ଉଲ୍ଲେଖନୀୟ ହେଉଛନ୍ତି, ଆମ ପ୍ରଧାନ ଶିକ୍ଷକ ପୂଜ୍ୟ ଗୋକୁଳାନନ୍ଦ ନାୟକ ; ତାଙ୍କ ନିୟମନିଷ୍ଠା, ସମୟାନୁବର୍ତ୍ତିତା, କର୍ତ୍ତବ୍ୟଜ୍ଞାନ ଓ ବିଦ୍‌ବତ୍ତା ଶହେ ବର୍ଷର ଏକ ତୃତୀୟାଂଶ ସମୟର ମାଇଲ ଖୁଣ୍ଟ ସଦୃଶ । ଏ ଦିଗରେ ତାଙ୍କ ବ୍ୟକ୍ତିଗତ ଜୀବନ ଓ ବିଦ୍ୟାଳୟର ଜୀବନ ମଧ୍ୟରେ ସାମଞ୍ଜସ୍ୟ ନଥିଲେ ବି ପାର୍ଥକ୍ୟ ନ ଥିଲା । ଉଭୟ ସଂପୂର୍ଣ୍ଣ ଏକାକାର । ସେତେବେଳେ ଓ ଆଜିର ସ୍ମରଣରେ ସେ ହେଉଛନ୍ତି ଏକ ଅନୁଷ୍ଠାନ ।

ସେ ଧର୍ମଶିକ୍ଷା ଦିଅନ୍ତି । ସପ୍ତାହକୁ ଘଣ୍ଟାଟିଏ । ଅନ୍ୟ ସ୍କୁଲରେ କିପରି ହୁଏ କେଜାଣି ଆମ ସ୍କୁଲରେ କିନ୍ତୁ ଛୁଟିଯାକ ଶ୍ରେଣୀର ସବୁ ପିଲା ପ୍ରାୟ ଅଢ଼େଇଶହରୁ ଅଧିକ ହେବ ବସି ଯାଉ ସେ ହଲରେ । ଏବେ ବି ମନେ ଅଛି, ଆଖିରେ ନାଚି ଯାଉଛି, ହେଡ୍‌ମାଷ୍ଟ୍ରଙ୍କ ଆବୃତ୍ତି, ଅଭିନୟ, ଅଭିବ୍ୟକ୍ତି ଓ ଅନର୍ଗଳ ବଖାଣ- "କରଧୃତ କମ୍ପିତ ଶୋଭିତ ବଦନ ।" ମୋହ ଭାଙ୍ଗି ଯାଇଛି ଓ ଶଙ୍କରାଚାର୍ଯ୍ୟଙ୍କ ମୋହମୁଦ୍‌ଗର ମନେ ରହିଛି । ଭାଗବତର ଭାବରେ ଆନନ୍ଦ ଜନ୍ମିଛି । ଆମର ଚଉତିଶା ଓ ବିଭିନ୍ନ ଧର୍ମର ଗ୍ରନ୍ଥଗୁଡ଼ିକରେ ଆଗ୍ରହ ଜନ୍ମିଛି । ଆମ ସଂସ୍କୃତି ସହ ନିବିଡ଼ ସମ୍ପର୍କ ସେବେଳୁ ଜାତ ହୋଇଛି । ଜଗନ୍ନାଥ ସଡ଼କରେ ପହଞ୍ଚିବା ମାତ୍ରେ ଧୂଳି ନେଇ ମୁଣ୍ଡରେ ମାରନ୍ତି । ଧର୍ମଶିକ୍ଷା ଓ ଧର୍ମାଚରଣ ଯୋଗୁଁ ଆମ୍ଭମାନଙ୍କ ମନରେ ଆଧ୍ୟାତ୍ମିକତାର ମୂଲ୍ୟ ଜମି ଯାଇଛି । ହେଡ୍‌ମାଷ୍ଟ୍ରେ ଇଂରାଜୀ ପଢ଼ାନ୍ତି । "Say not the struggle nought availeth" ପଦ୍ୟଟିକୁ ଆଜି ପୂରା ଆବୃତ୍ତି କରିହେବ ନାହିଁ, କିନ୍ତୁ ଏହାର ଆତ୍ମିକ ଭାବ ଜୀବନର ଧାରାରେ ପଡ଼ିଯାଇଛି । ବ୍ୟାକରଣ, ବନାନ, ଉଚ୍ଚାରଣ ଓ ଶୁଦ୍ଧ ଲେଖା ଆଜିଯାଏଁ ଛାପ ପକାଇଛି । ଗୁରୁ

ଗୋକୁଳାନନ୍ଦଙ୍କ ଭାଷାରେ, ଏଠାରେ ପାଠ ଦେଇଛି ବିନୟ :କିନ୍ତୁ ଅନେକାଂଶରେ ପିତାମାତାଙ୍କ ପ୍ରଭାବକୁ ସମୃଦ୍ଧ କରି ବିତୃଷ୍ଣା ପରିବର୍ତ୍ତେ ଆସିଛି ମମତା ଓ ସତ୍ୟ, ସଂଯମ ଓ ସହିଷ୍ଣୁତା ପ୍ରତି ।

ସେ ଯୁଗର ଶିକ୍ଷାଦର୍ଶ-ଅନୁକୂଳ ହୋଇ ଯୋଗ ଦେଇଛନ୍ତି, ସହକାରୀ ଶିକ୍ଷକ, ଏକୁ ଆରେକ ବଳିଆର-ଚରିତ୍ରବତ୍ତା, ପାଣ୍ଡିତ୍ୟ, ଶୃଙ୍ଖଳା ଓ ଛାତ୍ର ବାତ୍ସଲ୍ୟରେ । କବି ଓ ଗୁରୁ ଉପେନ୍ଦ୍ର ପ୍ରସାଦ ପଢ଼ାନ୍ତି ଇଂରାଜୀ ଓ ଭୂଗୋଳ । ଗାମ୍ଭୀର୍ଯ୍ୟ ସହିତ କୌତୁକର ସମ୍ମିଶ୍ରଣ କରି ଗଢ଼ି ଉଠିଛି ଏକ ଅଭିନବ ବ୍ୟକ୍ତିତ୍ୱ, ଯାହାର ସଟାନ୍ତର ବିରଳ । ଆମ୍ଭମାନଙ୍କର ସୌଭାଗ୍ୟ, ସେ ବେଳର ପ୍ରଖ୍ୟାତ ଗଣିତ ଶିକ୍ଷକ ପୂଜ୍ୟ ନିତ୍ୟାନନ୍ଦ ସେନାପତି ଓ ବିଚକ୍ଷଣ ଇତିହାସ ଶିକ୍ଷକ ପୂଜ୍ୟ ହରିନାରାୟଣ ସେନା ଏଯାବତ୍ ସେମାନଙ୍କର ଶିକ୍ଷକ ଜୀବନର ଗୌରବୋଜ୍ଜ୍ୱଳ ପରମ୍ପରା ବଜାୟ ରଖିଛନ୍ତି । ପୂଜ୍ୟ ପଣ୍ଡିତ ନୀଳକଣ୍ଠ ମିଶ୍ର ସଂସ୍କୃତ ପଢ଼ାନ୍ତି, ସତ ତାଙ୍କ ବାତ୍ସଲ୍ୟ-ମମତା ଅନୁପମ । ତାଙ୍କର ହେଡମୌଲବୀ ସାହେବ ପୂଜ୍ୟ ତୋଫାଏଲ ଅହମ୍ମଦଙ୍କ ସହିତ ସମ୍ପର୍କର ନିବିଡ଼ତା ଦୁଇ ଭାଇଙ୍କ ମଧ୍ୟରେ ମଧ୍ୟ କ୍ୱଚିତ୍ ସମ୍ଭବ । ଏହି ଦୃଷ୍ଟାନ୍ତ ଛାତ୍ରମାନଙ୍କୁ ବିଶେଷ ଅନୁପ୍ରାଣିତ କରିଛି ଓ ଏବେ ବି କରନ୍ତା, ଯଦି ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଆମ ସମ୍ପର୍କ କେବଳ ବାଚିକ ନ ହୋଇ ହୃଦୟର ହୋଇପାରନ୍ତା । ବସ୍ତୁତଃ ରାଧାନାଥଙ୍କ ଭାଷାରେ "ବଚନ ବିଷୟ ନୁହଇ ଏ ଛବି, ହୃଦ ସେ କେବଳ ପାରେ ଅନୁଭବି ।"

ଅତଏବ ସେବେଳ ଓ ଏବେଳର ଗୁରୁ-ଶିଷ୍ୟ ସମ୍ପର୍କରେ ଆକାଶ ପାତାଳ ପାର୍ଥକ୍ୟ ରହିଛି । ଏହା ଏତେବେଳେ ବେଶ୍ ଚହଟ, ଚିକ୍କଣ । କେବଳ ଉପର ଠାଉରିଆ । ଉପରକୁ ସୁନ୍ଦର ଓ ଭିତରଟା ପୋଡ଼ା ଅଙ୍ଗାର । ଠିକ୍ ମହାକାଳ ଫଳ ପରି କହିଲେ ଚଳେ । କିନ୍ତୁ ସେତେବେଳର ସମ୍ପର୍କ ଉପରକୁ କ୍ରୁର, କର୍କଶ ଓ କଠିନ । ହୃଦୟରେ ଏହା ଠିକ୍ ବିପରୀତ । ନାରୀକେଳ ସଦୃଶ । ନିଜ ଅଭିଜ୍ଞତାରୁ ଅନେକାଂଶରେ ସମର୍ଥନ କରାଯାଇ ପାରିବ । ଗୁରୁ ପ୍ରହ୍ଲାଦ ଚନ୍ଦ୍ର ଦାଶ ଇଂରାଜୀ ପଢ଼ାନ୍ତି । ଗୁରୁ ଦୀନବନ୍ଧୁ ନାୟକ ଅଷ୍ଟମ ଶ୍ରେଣୀରେ ଆମ ଶିକ୍ଷକ । ସେମାନେ ଛାତ୍ରବତ୍ସଳ, ସ୍ମିତ ହାସ୍ୟ ମୁଖରେ ଉତ୍ସାହ ଖେଳାଇ ଦିଅନ୍ତି । ପୂଜ୍ୟ ବୈଷ୍ଣବ ଚରଣ ମହାପାତ୍ର ଏକଝୁଙ୍କିଆ ହେଲେ ହେଁ ତାଙ୍କ ସମୟୋପଯୋଗୀ ପିଠି ଆଉଁସା ବଡ଼ ଉତ୍ସାହପ୍ରଦ । ବଡ଼ କଥା ହେଉଛି, ଗୁରୁ ଗୋକୁଳାନନ୍ଦଙ୍କ ପ୍ରତି ନାହିଁ ନଥିବା ଭୟ । ଏହା ସ୍କୁଲ ଭିତରେ ଯେପରି ବାହାରେ ସେପରି, ସେପରି ମଧ୍ୟ ସ୍କୁଲ କ୍ଷେତ୍ରରୁ ଅବସର ନେବା ପରେ । ସେ ଭୟରେ ଲୁଚିଯିବାର ଥାଏ, ଥାଏ ମଧ୍ୟ ଗୋଟିଏ ପ୍ରକାର ଆକର୍ଷଣ, କାରଣ ତାଙ୍କ ବ୍ୟକ୍ତିତ୍ୱ କେତେକ ପ୍ରତିଷ୍ଠିତ ମୂଲ୍ୟ ଓ ଗୁଣର

ଆଧାର। ସେ ଯଦି କୌଣସି ସ୍ଥାନକୁ ଦିନ ୩ଟା ବେଳେ ଆସିବାକୁ କହିଛନ୍ତି, ସେ ସ୍ଥାନରେ ସେ ଦିନ ତାଙ୍କୁ ଦେଖିଲେ ଘଣ୍ଟାରେ ନିଶ୍ଚୟ ୩ ବାଜିଥିବ। ସକାଳେ ସେ ପ୍ରାତଃ ଭ୍ରମଣ କରନ୍ତି। ଏହାର ବ୍ୟତିକ୍ରମ ନ ଥିଲା ଶେଷ ନିଶ୍ୱାସ ତ୍ୟାଗ ଯାଏଁ। ସେ ଯେଉଁ ବେଗରେ ଚାଲୁ ଥିଲେ, ତାଙ୍କ ସହିତ ସମକକ୍ଷ ହେବାର ଲୋକଙ୍କ ସଂଖ୍ୟା ନିଶ୍ଚିତ ଯଥେଷ୍ଟ କମ୍। ଏପରି ନୀତି, ନିଷ୍ଠା ଓ ନିୟମର ସେ ଥିଲେ ଆଜୀବନ ଭକ୍ତ। ବିଶେଷ ଉଲ୍ଲେଖନୀୟ ହେଉଛି ଛାତ୍ର ବାତ୍ସଲ୍ୟ। ୧୯୩୩ ମସିହାରେ ଆମେ ସେଣ୍ଟ୍ ଅପ୍ ହୋଇ ଥାଉଁ। ପାଟନା ବିଶ୍ୱବିଦ୍ୟାଳୟ ପରିଚାଳିତ ମେଟ୍ରିକୁଲେସନ ପରୀକ୍ଷା ଦେବାକୁ ହେବ। ପରୀକ୍ଷା ଫିଜ୍ ସମ୍ଭବତଃ ସାମାନ୍ୟ କେତୋଟି ଟଙ୍କା। ଅଭାବରେ ପଡ଼ି ଛାତ୍ରାବାସରେ ରହୁ ନ ଥାଏ। କିନ୍ତୁ ସ୍କୁଲ ଛାତ୍ରାବାସ ତତ୍ତ୍ୱାବଧାରକ ରବି ବାବୁଙ୍କ ସହାୟତାରେ ଗୁରୁ ଗୋକୁଳାନନ୍ଦ ମୋ ପରୀକ୍ଷା ଫିଜ ବାବଦରେ ବ୍ୟବସ୍ଥା କରିଥାନ୍ତି। ସେଦିନ ସକାଳର ସୂଚନା ହେଉଛି, "ନର ବାବୁଙ୍କୁ ଦେଖା କର।" ଯେଉଁ ଗୁରୁଙ୍କର ଶିଷ୍ୟଙ୍କଠାରୁ ଦୂରତ୍ୱ ଏତେ ବେଶୀ ଓ ଭୟ ସଂଚାରକାରୀ, ସେ ପୁଣି କେଉଁ ଛାତ୍ରର କି ଅଭାବ ଜାଣନ୍ତି କିପରି ? ସେତିକି ନୁହେଁ, ୧୯୩୪ ମସିହା ଜାନୁୟାରୀ ମାସରେ ମୋତେ କାଛୁ ହୋଇଛି। ଶଯ୍ୟାଶାୟୀ ହୋଇଥାଏ। ଖଜୁରୀ ଚଟେଇ। ବେଳେ ବେଳେ ଚଟେଇ ତଳେ ବିଛା ନିଜ ଆସନ ବାଛି ନିଏ। ଉଠି ବସିବାର ଶକ୍ତି ନ ଥାଏ। ସେତେବେଳେ ଖୋଜି ଖୋଜି ପହଞ୍ଚିଛନ୍ତି ଗୁରୁଦେବ ଓ ପୂଜ୍ୟ ନିତ୍ୟାନନ୍ଦ ବାବୁ। ସେ ବର୍ଷ ଫେବୃୟାରୀ ମାର୍ଚ୍ଚ ବେଳକୁ, ଠିକ୍ ପରୀକ୍ଷା ସମୟକୁ ଐତିହାସିକ ବିହାର ଭୂମିକମ୍ପ। ଏତେ ଧନ, ଜୀବନ ଯାଇଛି, ଏହାର କଳନା ନାହିଁ। ଏହା ଫଳରେ ପରୀକ୍ଷା ଘୁଞ୍ଚୁଛି ମେ ମାସକୁ ଓ ମୋ ପାଇଁ ବ୍ୟବସ୍ଥା ହୋଇଛି ନିତ୍ୟାନନ୍ଦ ବାବୁଙ୍କ ମେସରେ ରହିବା ପାଇଁ। ଏହାହିଁ ମୋର ପ୍ରଥମ ମେସ ଜୀବନ। ଘର ଓ ମେସ୍ ମଧ୍ୟରେ ଖାଦ୍ୟାଭ୍ୟାସରେ ପରିବର୍ତ୍ତନ ହେତୁ ମୋର ଶରୀର ଅସୁସ୍ଥ ରହେ। ମୁଁ କାହା ପାଖରେ କହେ ନାହିଁ। କିନ୍ତୁ ସବୁ ଜାଣିଲା ପରି ବୁଝି ନିଅନ୍ତି ଓ ବୁଝି ପାରନ୍ତି ଗୋକୁଳାନନ୍ଦ ବାବୁ ଓ ତତ୍ତ୍ୱାବଧାରକ ନିତ୍ୟାନନ୍ଦ ବାବୁ। ଆଜିକାଲି ପରି ସେତେବେଳେ ଛାତ୍ରର ଶିକ୍ଷାକାଳ ହିଁ ଶିକ୍ଷକଙ୍କର ଦୃଷ୍ଟିର ଅନ୍ତର୍ଗତ ନ ଥିଲା। ଛାତ୍ରର ସମଗ୍ର ଜୀବନ ଶିକ୍ଷକଙ୍କର ଧ୍ୟେୟ ଥିଲା। ସେମାନେ ଶିଷ୍ୟ ପରାୟଣ ଥିଲେ। ନିଜ ଅଭିଜ୍ଞତାରୁ ହେଉଛି, ୧୯୩୪ ମସିହା ପାଟନା ବିଶ୍ୱବିଦ୍ୟାଳୟରେ ମେଟ୍ରିକୁଲେସନ ପରୀକ୍ଷାରେ ଆମେ ଦୁଇଜଣ ପ୍ରଥମ ଶ୍ରେଣୀରେ ପାଶ କରିଥାଉ। ଅନ୍ୟ ଜଣକ ବାଲେଶ୍ୱର ଜିଲ୍ଲାସ୍କୁଲରୁ। ତେବେ ବାଲେଶ୍ୱର ଜିଲା ପାଇଁ ନିରୂପିତ ଦୁଇଟି ଦଶଟଙ୍କିଆ ବୃତ୍ତି ମଧ୍ୟରୁ ମୋତେ ଗୋଟିଏ ମିଳିବ, ଏହା ସୁନିଶ୍ଚିତ ହେଲା।

ତେବେ ମୁଁ କରିବି କଅଣ ? ଏହା ମୋତେ ଜଣା ନ ଥାଏ। ଶେଷରେ ବହୁ ବିଚାର ପରେ କଟକ ମେଡ଼ିକାଲ ସ୍କୁଲରେ ପଢ଼ିବାର ସ୍ଥିର କଲି। ସବୁଆଡ଼ ଅନ୍ଧାର ଦିଶୁଥାଏ। କଟକ କେବେ ଯାଇ ନଥାଏ। ଜିଲା ସ୍କୁଲରେ ପରୀକ୍ଷା ଦେବା ପାଇଁ ପ୍ରଥମ ରେଳଯାତ୍ରା ବାଲେଶ୍ୱରକୁ ହୋଇଥାଏ। ଏହା ହେବ ଦ୍ୱିତୀୟ ରେଳଯାତ୍ରା। ସାଥିରେ କେହି ନାହାନ୍ତି। ମେଡ଼ିକାଲ ସ୍କୁଲରେ ନାମ ଲେଖାଇବା ପାଇଁ ଦରଖାସ୍ତ ଦେବାର ଶେଷଦିନ ପରିଲାଣି। ଆମ ଭଦ୍ରକର ଛଭାଗା ଶାସନର ଗୋପାଳ ଚନ୍ଦ୍ର ମିଶ୍ର ସ୍କୁଲର ଛାତ୍ର। ତାଙ୍କ ପାଖକୁ ଗଲେ ହୋଇଯିବ ଏହି ବିଶ୍ୱାସ ଥାଏ। ଓଡ଼ିଶାରେ ଜନ୍ମ ଓ ବସ ବାସ-ଏହି ପ୍ରମାଣ ପତ୍ର ଆବଶ୍ୟକ। କିନ୍ତୁ ସେତେବେଳର ଏସ୍.ଡ଼ି.ଓ. ଜଣେ କଡ଼ା ପ୍ରଶାସକ। ତାଙ୍କ ପାଖ କେହି ପଶି ପାରନ୍ତି ନାହିଁ। ତେଣୁ ପାଠପଢ଼ାରେ ଡୋର ବାନ୍ଧିବା କଥା। ଏତେବେଳେ ଗୁରୁ ଗୋକୁଳାନନ୍ଦ ଦିଅନ୍ତି ଆଶ୍ୱାସନା ଓ ପ୍ରମାଣପତ୍ର ପାଇଁ ଲେଖନ୍ତି ପତ୍ର, ତାଙ୍କ ରାୟସାହେବ ଯଦୁନାଥ ମହାପାତ୍ରଙ୍କ ପାଖକୁ। ଏସବୁର ଫଳାଫଳ ଓ ଜୀବନର ଗତିପଥର ପରିବର୍ତ୍ତନ ହେଉଛି ଏକ ଏକ ବିଷୟ। କିନ୍ତୁ ସେ ବେଳର ଗୁରୁଗଣ ଶିଷ୍ୟଙ୍କଠାରୁ ଦୂରେଇ ରହୁଥିଲେ ହେଁ ଶିଷ୍ୟର ଜୀବନ ନିର୍ମାଣ ପ୍ରତି ସେମାନଙ୍କର ଧ୍ୟାନ ରହୁଥିଲା। ଏପରି ଦୃଷ୍ଟାନ୍ତ ଅନେକ ଅଛି। ଗୋଟିଏ ଦୃଷ୍ଟାନ୍ତ ମନକୁ ଲାଗେ। ୧୯୬୯ ମସିହା କଥା। ଭଦ୍ରକ କଲେଜରେ ଅବସ୍ଥାପିତ ହୋଇଛି। ସମଗ୍ର ପରିସର ବିକ୍ଷୁବ୍ଧ ଓ ତନ୍ମଧ୍ୟକୁ ପ୍ରବେଶ କରିବା ସାଂଘାତିକ। ସେତେବେଳର ଗୁରୁ ଗୋକୁଳାନନ୍ଦ କହିଛନ୍ତି, "ତୁମେ ଚାଲ, ମୁଁ ପଛରେ ଅଛି।" ସେ ଦେହତ୍ୟାଗ କରିଛନ୍ତି କିନ୍ତୁ ଛାତ୍ରମାନଙ୍କ ପଛରେ ଅଛନ୍ତି। ସେ ଗୁରୁଙ୍କର ମୃତ୍ୟୁ ନାହିଁ।

ଗୁରୁଗୌରବ ଗୋକୁଳାନନ୍ଦ କାର୍ଯ୍ୟର ସମୟ ହେଉଛି ୧୯୨୦ ମସୀହାରୁ ୧୯୫୨ ମସିହା ଶେଷ ପର୍ଯ୍ୟନ୍ତ। ଏହାହିଁ ଭାରତୀୟ ଜାତୀୟ ଜୀବନରେ ଉଦ୍‌ବେଳନର କାଳ। ସୁପ୍ତ ଜାତି ଜାଗ୍ରତ ହୋଇଛି, ଉତ୍ତିଷ୍ଠିତ ହୋଇଛି, ବିଜୟମଣ୍ଡିତ ହୋଇଛି। ସକଳ ସାଧାରଣ ସଂଗଠନ ଓ ଶିକ୍ଷାୟତନ ପରି ଭଦ୍ରକ ଓ ଭଦ୍ରକ ହାଇସ୍କୁଲ ପ୍ରଭାବିତ ହୋଇଛି। ଏହାର ମୂଲ୍ୟାୟନ ପାଇଁ ସ୍ୱତନ୍ତ୍ର ପରିବେଶ ଆବଶ୍ୟକ। କିନ୍ତୁ ଏହା କୁହାଯାଇ ପାରେ ଯେ ଭଦ୍ରକ ହାଇସ୍କୁଲ ସ୍ୱକୀୟ ଅବଦାନ ଜାତୀୟ ସ୍ରୋତରେ ଆପଣାଛାଏଁ ଢାଳି ଦେଇଛି। ଏପରି ସ୍ଥଳରେ ପୂଜ୍ୟ ଗୁରୁଜୀ, ଦିଲଭରଅଲୀ, ଦୁର୍ଗା ଦାସ ପ୍ରଭୃତି ସେ ବେଳର ସୁଦକ୍ଷ ଓ ସୁଯୋଗ୍ୟ ଶାସକମାନେ ସ୍କୁଲ ପରିଚାଳନା ସମିତିର ସଭାପତି ଭାବରେ କାର୍ଯ୍ୟ କରୁଥିବା ସମୟ ସେମାନଙ୍କ ସହିତ କାର୍ଯ୍ୟ କରିଅଛନ୍ତି। ଅବଶ୍ୟ ଧର୍ମପ୍ରାଣ ଓ ବୈଷ୍ଣବ ଶ୍ରୀଯୁକ୍ତ ମାଧବାନନ୍ଦ ମହାପାତ୍ର ସେବେଳର ପରିଚାଳନା ସମ୍ପାଦକ ରହି ଅନେକାଂଶରେ ଶାସନକୁ

ସହଜ କରିଥାଇ ପାରନ୍ତି । ଲୋକସମ୍ପର୍କ ହେଉଛି ସେ ସମୟର ଅନ୍ୟଏକ ବୈଶିଷ୍ଟ୍ୟ ଓ ଏହାର ଧାରାବାହିକତା ରକ୍ଷା କରାଯାଇଛି । ପୁରସ୍କାର ବିତରଣ ସଭା ହେଉଛି ଅନ୍ୟତମ ମାଧ୍ୟମ । ଅନ୍ୟ ଗୋଟିଏ ଜନାକୀର୍ଣ୍ଣ ସଭାର ଗୁରୁଗମ୍ଭୀରତା ମଧ୍ୟରେ ହାସ୍ୟରୋଳ ସୃଷ୍ଟି କରିଛି ପୂଜ୍ୟ ଗୁରୁ ନିଧି ନାୟକଙ୍କ ରଚନା, ଗୁରୁ ଓ ଶିଷ୍ୟ ମଧ୍ୟରେ କଥୋପକଥନର ମାଧ୍ୟମରେ । ଛାତ୍ରାବାସ ଜୀବନର ମହତ୍ତ୍ୱକୁ ପ୍ରତିପାଦନ କରିବାକୁ ଯାଇ ଗୁରୁ କହୁଛନ୍ତି "ଛାତ୍ରାବାସର ସଂଖ୍ୟା ବଢ଼ିଲେ ଛାତ୍ର ପିଛା ଖର୍ଚ୍ଚ କମିବ ।" ଏଥିରେ ପ୍ରତିକ୍ରିୟା ପ୍ରକାଶ କରି ସେ ବେଳର ଡରକୁଳା ଛାତ୍ର ଉତ୍ତର ଦେଇଛି, "ଆଜ୍ଞା, କେତେ ଅଧିକ ଛାତ୍ର ହେଲେ ଆଦୌ ଖର୍ଚ୍ଚ ପଡ଼ିବ ନାହିଁ ?" ମୁଁ ଶୁଣିଛି ମୁଁ ପ୍ରଥମ ଶ୍ରେଣୀରେ ପାଶ କରିଥିବାରୁ ଏହା ବାଲେଶ୍ୱର ଜିଲାରେ ତଥା ଓଡ଼ିଶା ଭିତ୍ତିକନରେ ଉଲ୍ଲେଖନୀୟ ଓ ତେଣୁ ଏଥିପାଇଁ ଅଭିଭାବକ ଓ ଶିକ୍ଷକ ସଭା ହୁଏ । ଆଜିକାଲି ଏହା ଅତି ମାମୁଲି କଥା ଓ ଗୁରୁନିଧି ନାୟକଙ୍କ ଉକ୍ତିକୁ ଅନୁସରଣ କରି କୁହାଯାଇ ପାରେ । ଯଦି କାଳକ୍ରମେ ପ୍ରଥମ ଶ୍ରେଣୀ ପିଲାଙ୍କ ସଂଖ୍ୟା ବଢୁଛି ତେବେ କେଉଁ ସାଲରେ ସବୁ ପରୀକ୍ଷାର୍ଥୀ ଅନାୟାସରେ ପ୍ରଥମ ଶ୍ରେଣୀରେ ପାଶ କରିବେ ? ଯାହା ହେଉ, ସେ ସଭାର ଗୁରୁତ୍ୱ ବୃଦ୍ଧି କରିଛନ୍ତି ଜଣେ ଶିକ୍ଷକ । କାର୍ଯ୍ୟକ୍ରମରେ ତାଙ୍କ ବକ୍ତୃତା ପାଇଁ ବ୍ୟବସ୍ଥା ନ ଥିଲେ ହେଁ ସେ ସେବର୍ଷର କୃତିତ୍ୱରେ ଏତେ ବିହ୍ୱଳ ହୋଇ ପଡ଼ିଥିଲେ ଯେ ସଭାପତି ଗୁରୁ ଗୋକୁଳାନନ୍ଦଙ୍କ ନିର୍ଦ୍ଦେଶକୁ ଅପେକ୍ଷା ନକରି କହିଥିଲେ, ସ୍କୁଲର ମୁଁ ଜଣେ ବିନା ଟିକେଟ ଯାତ୍ରୀ । x x x" ଏହି ଶିକ୍ଷକ ହେଉଛନ୍ତି ଆମ ପୂଜ୍ୟ ଶିକ୍ଷକ ଉଦୟନାଥ ପତି, ଖେଳ ପଡ଼ିଆରେ ଆମକୁ ଏକ ଲାଇନ୍‌ରେ ଠିଆ କରାଇ ଆମ ଆଖି ତଳପତା ଟେକି ଦେଖିବେ ଓ ବ୍ରହ୍ମଚର୍ଯ୍ୟ ତଥା ସଂଯମ ଉପରେ ଭାଷଣ ଦେବେ । ଆମେ ହସୁଁ, ସତ, କିନ୍ତୁ ତାହା ଏକ ସାଧନା ହୋଇଯାଇଛି ।

ଶେଷରେ ସେ ସ୍କୁଲର ଛାତ୍ର ତଥା ପରବର୍ତ୍ତୀ କାଳରେ ଶିକ୍ଷକ ଭାବରେ ଅଭିଜ୍ଞତାର ଏକ ଚିତ୍ର ମିଳିବ ବିଦ୍ୟାଳୟ ପରିଦର୍ଶନରୁ । ଶ୍ରୀଯୁକ୍ତ ଏସ୍.ରାୟ ଥାନ୍ତି ପରିଦର୍ଶକ । ୧୯୩୧ ମସିହା କଥା । ଆମେ ନବମ ଶ୍ରେଣୀ ଓ ତତ୍କାଳୀନ ପରିଭାଷାରେ ଥାର୍ଡ କ୍ଲାସରେ ପଢୁଥାଉଁ । ହେଡ୍‌ମାଷ୍ଟରଙ୍କ ଖୁବ୍ ବଡ଼ ଟେବ୍‌ଲ ଉପରେ ଜମା ହୋଇଥାଏ ଷଷ୍ଠ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ସବୁ ପିଲାଙ୍କ ସବୁ ଲେଖା ଖାତା । ପ୍ରଥମ ଦୁଇଦିନ ବା ଅଢ଼େଇଦିନ ଏହି ଖାତାର ଲେଖା ଓ ସଂଶୋଧନ ଉପରେ ତନଖି ଚାଲେ । ଜଣ ଜଣ କରି ଶିକ୍ଷକଙ୍କୁ ଓ ଛାତ୍ରଙ୍କୁ ଡାକି ପଚରାଯାଏ । ଦିନେ ମୋତେ ସେହି ଧୂମାୟିତ ଓ ଭୟାବହ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ ପାଇଁ ଆହ୍ୱାନ କରାଯାଇଛି । Occur, occurring ଓ occurred ର

ବନାନ କହିସାରିବା ପରେ occurrence ରେ ମୁଁ ଅଟକି ଯାଇଛି। ଯାହାହେଉ ଭାଗ୍ୟ ମୋ ପ୍ରତି ପ୍ରସନ୍ନଥିବାର ଜଣାଯାଇଛି। ଏହି ଖାତା ଦେଖା ପରେ ଦିନେ ବା ଦେଢ଼ଦିନ ଶ୍ରେଣୀରୁ ଶ୍ରେଣୀ ବୁଲି ଦେଖା ଯାଇଛି। ଆମକୁ ମେଳାପୀ, ମିଷ୍ଟଭାଷୀ ଓ ସ୍ନେହୀ ଶିକ୍ଷକ ଭୂତନାଥ ନାୟକ "ତୁଳସୀ ଦୁଇପତ୍ରରୁ ବାସେ"ର ଭାବସଂପ୍ରସାରଣ କରି ଲେଖିବାକୁ ଦେଇଥାଆନ୍ତି। ଦୈବାତ୍ ମୋ ଲେଖା ଉପରେ ତାଙ୍କ ଦୃଷ୍ଟି ପଡ଼ିଛି। ବାସ୍ତବରେ କୃତିର ସ୍ୱୀକୃତି, ସଫଳତାର ଜନନୀ ହୋଇଛି ଓ ତାଙ୍କ ପରିଦର୍ଶନ ପ୍ରଣାଳୀ ମୋତେ ପ୍ରଭାବିତ କରିଛି। ୧୯୩୧ ମସିହା ସେପ୍‌ଟେମ୍ବର ମାସର ଡିଭିଜନେଲ ଇନ୍‌ସ୍‌ପେକ୍ଟର ଏସ.ରାୟଙ୍କ ପରିଦର୍ଶନ ମନ୍ତବ୍ୟରୁ କେତୋଟି ଧାଡ଼ି ହେଉଛି-

"I am pleased to note that the Headmaster has always been able to maintain discipline and that the school has made considerable progress on account of his initiative, zeal and patience।" ବସ୍ତୁତଃ ପରିଦର୍ଶକ ଓ ପରିଦର୍ଶନର ଧାରା ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନର ଗତିପଥ ଗଠନ କରେ।

ଏହି ବାଲ୍ୟ ସାଧନାର ପୀଠ ମୋର ସ୍ୱାଧ୍ୟାୟର ସୋପାନରେ ଆଗେଇ ନେଇଛି, ସନ୍ଦେହ ନାହିଁ।

□□□

# ମାଧ୍ୟମିକ ବିଦ୍ୟାଳୟରେ ଗଣିତ ଶିକ୍ଷାର ନୂତନ ପଦ୍ଧତି

'ଚାଟମାନଙ୍କର ପ୍ରୟୋଜନ ଅର୍ଥେ ଲୀଳାବତୀ ସୂତ୍ର କହେ'- ସେ ଯୁଗ ଆଉ ନାହିଁ, ସୂତ୍ର ଘୋଷିବାର ବେଳ ଗଲାଣି। ଆଉ "ଘୋଷବନ୍ତମ୍ ବଳବନ୍ତମ୍" ନୁହେଁ।

ଗଣିତ ଶିକ୍ଷାରେ ସୁଦୂରପ୍ରସାରୀ ଏପରି ଏକ ବ୍ୟାପକ ପରିବର୍ତ୍ତନ ହୋଇଅଛି ଯେ ପାଶ୍ଚାତ୍ୟ ଜଗତରେ ଏହାକୁ "ବିପ୍ଳବ" ଆଖ୍ୟା ଦିଆଯାଇଛି। ଏହି ବୈପ୍ଳବିକ ପରିବର୍ତ୍ତନ ପଛରେ ତିନୋଟି ମୁଖ୍ୟ କାରଣ ରହିଛି। ପ୍ରଥମ ହେଉଛି ଗାଣିତିକ ଗବେଷଣାରେ ଅଭୂତ ଅଗ୍ରଗତି। ଯେଉଁମାନେ ଗଣିତ ଶାସ୍ତ୍ରରେ ପଶି ନାହାନ୍ତି ସେମାନଙ୍କ ପାଇଁ ଏହା ଶ୍ଲାଘ୍ୟ, ସମ୍ପୂର୍ଣ୍ଣ ଓ ପ୍ରାଚୀନ ହେତୁବାଦର ଅନସ୍ୱୀକାର୍ଯ୍ୟ,

ଶୁଷ୍କ ଓ ପରିଣତ ଜ୍ଞାନରାଶି । କିନ୍ତୁ ଯେଉଁମାନେ ଏହାର ରସଗ୍ରାହୀ ସେମାନଙ୍କ ତଣ୍ଟିରେ ଗଣିତ ଉଦ୍ଦାମ ଅବସ୍ଥାରେ ରହିଅଛି । ସିଦ୍ଧିପ୍ରାପ୍ତିରେ ଏହା ସାଧନାମାର୍ଗୀ ଓ ସତତ ସନ୍ଧାନୀ ଓ ଯୌବନର ପରିଣତ ଉତ୍ତାନପାଦ; ଏହା ଫଳରେ ଗଣିତ ବର୍ତ୍ତମାନ ଏକ ଗତିଶୀଳ ଦୁଃସାହସିକ ସାଧନା । ଏହା ଏକ ଜୀବନ୍ତ ବିଷୟ । ଏଥିରେ ଜ୍ଞାନବୃଦ୍ଧି ପ୍ରତି ମୁହୂର୍ତ୍ତରେ ହେଉଅଛି । ବୈପ୍ଳବିକ ପରିବର୍ତ୍ତନର ଦ୍ୱିତୀୟ କାରଣ ହେଉଛି Automation ରେ ବିପ୍ଳବ । ଯନ୍ତ୍ରକୁ ନିୟନ୍ତ୍ରଣ କରିବା ପାଇଁ ପୁନଶ୍ଚ ପ୍ରବର୍ତ୍ତନ ଓ ଏହାର ବ୍ୟବହାରର ପରିଣତି ହେତୁ Automation ବିପ୍ଳବ ହୋଇଅଛି । Automation ବା ସ୍ୱୟଂଚାଳିତ ଯନ୍ତ୍ରର ବହୁବିଧ ବ୍ୟବହାର ଦେଖାଯାଏ । ଏହା ଫଳରେ ଗାଣିତିକ ବିପ୍ଳବ ହୋଇଅଛି । ତୃତୀୟ କାରଣ ହେଉଛି ଅତି ବୃହଦାକାର ସ୍ୱୟଂଚାଳିତ Digital Computing Machine, ଉଦାହରଣ ସ୍ୱରୂପ π ର ମୂଲ୍ୟ ଦଶମିକ ୭୦୭ ସ୍ଥାନ ପର୍ଯ୍ୟନ୍ତ ନିର୍ଣ୍ଣୟ କରିବାକୁ କାଗଜ କଲମରେ ୨୦ ବର୍ଷ ଲାଗୁଥିଲା ବେଳେ Computing Machine ସାହାଯ୍ୟରେ ୧୯୪୯ ମସିହାରେ ୨୦୦୦ ଦଶମିକ ସ୍ଥାନ ଯାଏ ନିର୍ଣ୍ଣୟ କରିବାକୁ ମାତ୍ର ୭୦ ଘଣ୍ଟା ଲାଗିଲା । ଏଥିରେ ଆହୁରି ଦ୍ରୁତ ପରିବର୍ତ୍ତନ ସାଧିତ ହୋଇଅଛି । π ର ମୂଲ୍ୟ ୩,୦୦୦ ରୁ ଅଧିକ ସ୍ଥାନ ପର୍ଯ୍ୟନ୍ତ ପ୍ରାୟ ୧୩ ମିନିଟରେ ନିର୍ଣ୍ଣୟ କରାଯାଇ ପାରୁଛି । ଏହାପରେ ଆହୁରି ଛୋଟ ଯନ୍ତ୍ର ସାହାଯ୍ୟରେ ଦଶମିକ ଦଶ ହଜାର ସ୍ଥାନ ପର୍ଯ୍ୟନ୍ତ π ର ମୂଲ୍ୟ ନିର୍ଦ୍ଧାରଣ କରାଯାଇଅଛି । Electronic Digital Machine ଦ୍ୱାରା ହିସାବ ଯେ ଅତି କ୍ଷିପ୍ରତା ସହକାରେ କରାଯାଇ ପାରୁଛି କେବଳ ତାହା ନୁହେଁ, ଯେଉଁ ହିସାବ ସମ୍ପୂର୍ଣ୍ଣ ଅସମ୍ଭବ ଥିଲା ତାହା ଏବେ ଚଞ୍ଚଳ ଓ ସହଜ ହେଉଅଛି । ଏସବୁ କାରଣରୁ ଗଣିତ ଶିକ୍ଷାରେ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହେଉଅଛି । ଜଣାଯାଏ ଯେ ୧୯୪୦ ମସିହା ବେଳକୁ ଆମ୍ଭମାନଙ୍କ ବିଶ୍ୱବିଦ୍ୟାଳୟରେ ବୀଜଗଣିତ ଓ ଜ୍ୟାମିତିର ଯେଉଁସବୁ ବିଷୟ ଗୁଡ଼ିକ ସମ୍ଭବତଃ ପଢ଼ାଯାଉ ନଥିଲା, ଯୁକ୍ତରାଷ୍ଟ୍ର ଆମେରିକାରେ ହାଇସ୍କୁଲରେ ଉପର ଶ୍ରେଣୀ ଗୁଡ଼ିକରେ ସେ ସବୁ ବିଷୟ ପଢ଼ାଯାଉଥିଲା ।

ସୋଭିଏତ ଋଷ୍ ଦେଶରେ ମଧ୍ୟ ଗଣିତଶିକ୍ଷାର ଅତି ଅଦ୍ଭୁତ ଧରଣର ପରିବର୍ତ୍ତନ କରାଯାଇଛି । ଏହା ଆମ୍ଭମାନଙ୍କ ପାଇଁ ଏକ ବିରାଟ ଆହ୍ୱାନ ଅଟେ । ସମସ୍ତ ବୈଷୟିକ ଓ ବୈଜ୍ଞାନିକ ଅଗ୍ରଗତିର ଜନନୀ ହେଉଛି ଗଣିତ; ସମ୍ଭବତଃ ଏହି କାରଣରୁ ଅଥବା ଏହି ପରିଣତି ସ୍ୱରୂପ ଆଜି ଉନ୍ନତ ଓ କ୍ରମୋନ୍ନତ ଦେଶମାନଙ୍କ ମଧ୍ୟରେ ଗଣିତ ଓ ବିଜ୍ଞାନ ଶିକ୍ଷାର ମାନରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଇଅଛି । ଠିକ୍ ସେହି ଯୁକ୍ତିକୁ ଅବଲମ୍ବନ କରି ଓ ଆମ ଦେଶର ଅର୍ଥନୈତିକ

ପ୍ରଗତି ସାଧନ କରିବା ଦୃଷ୍ଟିରୁ ସମଗ୍ର ଶିକ୍ଷାରେ ମୌଳିକ ଓ ବ୍ୟାପକ ପୁନର୍ଗଠନ ପାଇଁ ସୁପାରିସ ସଙ୍ଗେ ସଙ୍ଗେ ଆସନ୍ତା ୨୦ବର୍ଷ ମଧ୍ୟରେ ଗଣିତର ବିଶ୍ୱ ମାନଚିତ୍ରରେ (World map of mathematics) ଭାରତ କିପରି ସ୍ଥାନ ପାଇବ ସେ ଦୃଷ୍ଟିରୁ କୋଠାରୀ ଶିକ୍ଷା କମିଶନ (୧୯୬୪-୬୬) ଆଲୋଚନା କରିଅଛନ୍ତି ଓ ପ୍ରସ୍ତାବ ଦେଇଛନ୍ତି । ଉନ୍ନତ ଦେଶର ଗଣିତ ଶିକ୍ଷାର ମାନ ସହିତ ଆମ ଦେଶର ଗଣିତ ଶିକ୍ଷାର ମାନକୁ ସମାନ କରିବାକୁ ଚାହିଁଲେ ପାଠ୍ୟ ତାଲିକାରେ ପରିବର୍ତ୍ତନ, ଉନ୍ନତି ଓ ସମୃଦ୍ଧ ଶିକ୍ଷା ପ୍ରଣାଳୀର ପ୍ରବର୍ତ୍ତନ ଓ ଯୁଗୋପଯୋଗୀ ଶିକ୍ଷକ ପ୍ରସ୍ତୁତି ଏକାନ୍ତ ଆବଶ୍ୟକ । ଗଣିତ ଶିକ୍ଷାଦାନକୁ ସରସ କରାଯିବ । ଅନାବଶ୍ୟକ ବିଷୟର ସ୍ଥାନ ରହିବ ନାହିଁ । ଗଣିତର ମୌଳିକ ଧାରଣା (concept) ଓ ନୀତି ଉପରେ ଗୁରୁତ୍ୱ ଦିଆଯିବ । ଏହା ସଙ୍ଗେ ସଙ୍ଗେ ଅଭ୍ୟାସ ଗଠନ ପାଇଁ ସୁଯୋଗ ରହିବ ।

ଏହିସବୁ ଆବଶ୍ୟକତା ଦୃଷ୍ଟିରୁ ଗଣିତ ଶିକ୍ଷାରେ ଏକ ନୂତନ ବିଧିର (New approach) ପ୍ରବର୍ତ୍ତନ କରାଯାଇ ଅଛି । ଏହି ନୂତନ ବିଧିର ଲକ୍ଷ୍ୟ ହେଉଛି (୧) ଗାଣିତିକ ପ୍ରକ୍ରିୟା ଓ ବିଚାର ପ୍ରତି ଦୃଷ୍ଟି ଦିଆଯିବ ଓ (୨) ଗାଣିତିକ ଧାରଣାଗୁଡ଼ିକର ସମୃଦ୍ଧିକରଣ କରାଯିବ । ଏବେ ଗଣିତ ଶିକ୍ଷା ବଳଦିଆ ଢଙ୍ଗରେ ହେଉଅଛି । ବୁଝାମଣା ଓ ବୋଧଶକ୍ତି ଉପରେ ନଜର ରହୁନାହିଁ । ହାଇସ୍କୁଲ ପରୀକ୍ଷାର୍ଥୀମାନେ ପାଟୀଗଣିତର ସୂତ୍ରଗୁଡ଼ିକ ମୁଖସ୍ଥ କରି ପକାଉଛନ୍ତି । ଏହା କେବଳ ପରୀକ୍ଷାରେ ପାସ୍ କରିବା ଦୃଷ୍ଟିରୁ କରାଯାଉଛି । ପରୀକ୍ଷା ପଦ୍ଧତି ମଧ୍ୟ ପ୍ରମାଦଯୁକ୍ତ । ଫଳରେ ଅନୁମାନ କରେ, କେତେକ ପ୍ରଶ୍ନର ଉତ୍ତରକୁ ପରୀକ୍ଷାର୍ଥୀମାନେ ଘୋଷି ଲେଖି ଦିଅନ୍ତି । ଏହାଦ୍ୱାରା ଗଣିତ ଶିକ୍ଷାର ଲକ୍ଷ୍ୟ ସମ୍ପୂର୍ଣ୍ଣ ବିଫଳ ହେଉଅଛି । ଯୁକ୍ତିଶକ୍ତି ଓ ଚିନ୍ତା ଶକ୍ତିର ବିକାଶ ସାଧିତ ହେଉନାହିଁ । ବାସ୍ତବ ଉଦାହରଣକୁ ଅତିକ୍ରମ କରି ଅମୂର୍ତ୍ତ ଚିନ୍ତା ପିଲାଙ୍କ ମନକୁ ଆସୁନାହିଁ । ଦଶମ ଓ ଏକାଦଶ ଶ୍ରେଣୀର କେତେକ ଛାତ୍ର ପ୍ରାରମ୍ଭିକ ଶ୍ରେଣୀର ଛାତ୍ରଙ୍କ ଆଙ୍ଗୁଠି ରେଖା ସାହାଯ୍ୟରେ ଯୋଗ ଓ ବିୟୋଗ କରୁଥିବାର ମଧ୍ୟ ଦେଖାଯାଏ । ଗଣିତ ଶିକ୍ଷା ଏତେ ଦୂର ବଳଦିଆ ଢଙ୍ଗରେ ହେଉଅଛି ଯେ ୫ x ୩ ଜାଣିଥିବା ଛାତ୍ର ୩ x ୫ କେତେ କହିପାରନ୍ତି ନାହିଁ । ୨୯ + ୧୨, ୨୬ + ୧୫, ୩୬ x ୯, ୨୯ x ୧୨ ଆଦି ସରଳ ଗାଣିତିକ ପ୍ରକ୍ରିୟା ପିଲାମାନେ ମନେ ମନେ କରିପାରନ୍ତି ନାହିଁ । ସେମାନେ ଅଙ୍କ କଷନ୍ତି ସତ, କିନ୍ତୁ ଗଣିତ ଯେ ଗୋଟାଏ ବିଚାରଧାରା, ଚିନ୍ତାପଦ୍ଧତି ଏହା ବୁଝନ୍ତି ନାହିଁ । କେଉଁଠି ସମାନ ଚିହ୍ନ ଦେବାକୁ ହେବ, କେଉଁ OR କିମ୍ବା ରହିବ, ଏ ସବୁର ବ୍ୟବହାର ଜାଣିବା କଷ୍ଟକର ହୋଇପଡ଼େ । କାହିଁକି, କେଉଁଠି କେଉଁ ଧାରାର ପ୍ରୟୋଗ କରାଯିବ ଓ ପ୍ରକ୍ରିୟାର ଆଶ୍ରୟ ନିଆଯିବ ଏହା ବୁଝନ୍ତି

ନାହିଁ । ଯୋଗକ୍ରିୟା ସହିତ ହରଣର କି ସମ୍ପର୍କ ରହିଛି, ଏହା ଅବହିତ ହୁଅନ୍ତି ନାହିଁ । ଏସବୁ ଗାଣିତିକ ବିଚାରକୁ ସୁସ୍ପଷ୍ଟ କରେ $a^3 + b^3 + c^3 - 3abc$ ର ଉତ୍ପାଦକ ନିର୍ଣ୍ଣୟ କରୁଥିବା ଛାତ୍ର $1^3 + x^3 + y^3 - 3xy$ ର ଉତ୍ପାଦକ ନିର୍ଣ୍ଣୟ କରି ପାରନ୍ତି ନାହିଁ । ଗଣିତରେ ମୁଖ୍ୟତଃ ସାଧାରଣ ସତ୍ୟରୁ ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତକୁ ଆସିବାକୁ ହୁଏ । ଖୁବ୍ କ୍ବଚିତ୍ ଛାତ୍ରମାନେ ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତଗୁଡ଼ିକୁ ପରୀକ୍ଷା କରି ସେଥିରୁ ସାଧାରଣ ସତ୍ୟରେ ଉପନୀତ ହୁଅନ୍ତି । 'Algebra is generalised Arithmetic'- ଏ କଥା ମୋଟେ ବୁଝନ୍ତି ନାହିଁ । ଆରୋହ (Deductive) ଓ ଅବରୋହ (Inductive) ପ୍ରଣାଳୀଦ୍ୱୟ ପରସ୍ପର ପରିପୂରକ"-ଏହାର ପ୍ରୟୋଗ ପ୍ରାୟ ହୁଏ ନାହିଁ କହିଲେ ଚଳେ । ସେହିପରି ସଂଶ୍ଳେଷଣ ପ୍ରଣାଳୀ ସରଳ, ସହଜ, ସୁନ୍ଦର ଓ ସଂଯତ ହୋଇଥିବାରୁ ଓ ଏହା ସାଧାରଣ ସତ୍ୟର ଆଶ୍ରୟୀ ହୋଇଥିବାରୁ ଏହାହିଁ ପାଠ୍ୟପୁସ୍ତକ ଓ ପ୍ରଣାଳୀରେ ଅନୁସରଣୀୟ ହୋଇଅଛି । ଫଳରେ ଗଣିତର ବିଷୟବସ୍ତୁ ଚିନ୍ତାକୁ ଉଦ୍ରେକ କରିବାରେ, ଅନ୍ତର୍ଦୃଷ୍ଟି ବିସ୍ତାରିତ କରିବାରେ ଓ ଛାତ୍ରକୁ ସତ୍ୟସନ୍ଧାନୀ କରିବାରେ ସହାୟକ ନ ହୋଇ ବରଂ ଛାତ୍ରର ମନରେ ଅଯଥା ଭାରାକ୍ରାନ୍ତ ହୋଇଅଛି । ସଂଶ୍ଳେଷଣ ଓ ବିଶ୍ଳେଷଣ ପ୍ରଣାଳୀଦ୍ୱୟ ପରସ୍ପର ପରିପୂରକ । ଏହି କ୍ରମରେ ଶିକ୍ଷା ଦିଆଗଲେ ବିଦ୍ୟାର୍ଥୀ ଗାଣିତିକ ସତ୍ୟର ଉଦ୍ଭାବନ କରିପାରିବେ । ପ୍ରତ୍ୟେକ ପ୍ରଶ୍ନରେ 'କଅଣ ଦିଆଯାଇଛି' ଓ 'କଣ ପ୍ରମାଣ କରାଯିବ' ଏହିପରି ଭାବରେ ସମସ୍ୟା ସମାଧାନ ମୂଳକ (Problem Solving) ପନ୍ଥା ଅବଲମ୍ବନ କରାଯିବ । ପ୍ରଶ୍ନଗୁଡ଼ିକରେ ବଡ଼ ବଡ଼ ସଂଖ୍ୟାର ବ୍ୟବହାର ନ କରି ପ୍ରକ୍ରିୟା ଦୃଷ୍ଟିରୁ କ୍ରମେ ଜଟିଳ କରାଯିବ । ଉଦାହରଣ ସ୍ୱରୂପ- "ରାମ ଦଶଟଙ୍କା ନେଇ ବଜାରକୁ ଯାଇଥିଲା । ଗୋଟିକୁ ୭୫ ପଇସା କରି ୩ଟି ଖେଳଣା ଓ ୬ ଟଙ୍କାରେ ସମାନ ଦରରେ ୪୦ଟି ଲଡ୍ଡୁ କିଣିବା ପରେ କେତେ ଟଙ୍କା ଫେରାଇ ଆଣିଥିଲା ଓ ପ୍ରତ୍ୟେକ ଲଡୁର ଦାମ୍ କେତେ ? ଏହି ପ୍ରଶ୍ନରେ ଖୁବ୍ ସାନ ସଂଖ୍ୟାର ବ୍ୟବହାର କରାଯାଇଅଛି । ଯେଉଁମାନେ ଗଣିତର ଚାରିସୂତ୍ର ଜାଣନ୍ତି ସେମାନେ ଏହାର ସମାଧାନ କରି ପାରିବେ କିନ୍ତୁ ସମଗ୍ର ପ୍ରଶ୍ନର ସମାଧାନ ପାଇଁ ଛାତ୍ରକୁ ଚିନ୍ତା କରିବାକୁ ପଡ଼ିବ । ପ୍ରଶ୍ନଟିକୁ ଛାତ୍ର ନିଜର ଅନୁଭୂତି ସହିତ ପରିଚିତ କରିପାରିବ ।

ଜ୍ୟାମିତି ସଂଖ୍ୟାଘଟିତ ପ୍ରଶ୍ନରେ ସେଟ୍ (Set)କୁ ଭାଷା ବ୍ୟବହାର କରିହେବ । ଏହା ଫଳରେ ପାଟୀଗଣିତ ଓ ଜ୍ୟାମିତିର ଯଥାର୍ଥ୍ୟ ସମନ୍ୱୟ କରିହେବ । ଏହି ନୀତିକୁ ଅବଲମ୍ବନ କରି School Mathematics Study, Group Sciences, ୧୯୬୦ ମସିହାରେ University Press ଦ୍ୱାରା ରଚନା କରାଯାଇଥିଲା । National Council of Educational Research and

Training ଙ୍କ ଦ୍ୱାରା ଏହାର ଭାରତୀୟ ସଂସ୍କରଣ ପ୍ରକାଶ ପାଇଅଛି । ବିଶ୍ୱବିଦ୍ୟାଳୟର ଗଣିତ ଅଧ୍ୟାପକ, ସ୍କୁଲ ଶିକ୍ଷକ, ଶିକ୍ଷା ବିଶେଷଜ୍ଞ, ବିଜ୍ଞାନ କାରିଗରୀ ବିଦ୍ୟାର ପ୍ରତିନିଧିମାନଙ୍କ ସହଯୋଗିତାରେ ସ୍କୁଲ ସ୍ତରରେ ଗଣିତ ଶିକ୍ଷାର ମାନକୁ ଉନ୍ନତ କରିବାପାଇଁ ଗଣିତର ଅତ୍ୟାଧୁନିକ ଅଗ୍ରଗତିକୁ ସେଥିରେ ପ୍ରତିଫଳିତ କରିବାପାଇଁ ପାଠ୍ୟ ତାଲିକା ଓ ତଦନୁସାରେ ପାଠ୍ୟପୁସ୍ତକ ପ୍ରଣୟନ କରାଯାଇଅଛି । ଏହା ଫଳରେ ଲକ୍ଷ୍ୟ ରଖାଯାଇଛି ଯେ ଗଣିତ ଅତୀତର ଏକ ପ୍ରାଣହୀନ ଓ ଜଡ଼ ବିଷୟ ନ ହୋଇ ଏକ ଜୀବନ୍ତ ବର୍ଦ୍ଧିଷ୍ଣୁ ବିଷୟ ହେବ । ପଦ୍ଧତି ସହିତ ସଂପୃକ୍ତ ଆଉ ଏକ ବିଷୟ ହେଉଛି-ପାଠ୍ୟ ତାଲିକାର ସଂସ୍କାର କରିବାକୁ ହେବ । ସରଳ କରିବା, ଉପାଦକ ନିର୍ଣ୍ଣୟ କରିବା, ଗ:ସା:ଗୁ: ଆଦି ଅନେକ ଅଦରକାରୀ ପାଠ ଉପରେ ଅଯଥା ଗୁରୁତ୍ୱ ଦିଆଯାଇଛି । ଏ ସବୁକୁ ବାଦ ଦିଆଯାଇପାରେ ।

ତ୍ରିକୋଣମିତିରେ ଉଚ୍ଚତା ଓ ତତ୍ ସମ୍ପର୍କୀୟ ପାଠ, ତ୍ରିଭୁଜର ସମାଧାନ ଆଦି ବିଷୟ ସବୁ ଦିଆଯାଇପାରେ । ବିଭିନ୍ନ ପାଠ ଓ ବିଷୟକୁ ସଂପୃକ୍ତ କରି ସମନ୍ୱୟ ସ୍ଥାପନ କରିବା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ସେ ଦୃଷ୍ଟିରୁ ତ୍ରିକୋଣମିତି ଓ ବୀଜଗଣିତକୁ ସ୍ୱତନ୍ତ୍ର ବିଷୟ ରୂପେ ଗ୍ରହଣ କରିବା ଅନୁଚିତ । କୋଣକୁ ସଂପୂର୍ଣ୍ଣାୟ ମାନ ରେଖା ସମ୍ପର୍କରେ ଦିଆଗଲେ ଜ୍ୟାମିତି, ବୀଜଗଣିତ ଓ ପାଟୀଗଣିତ, ତ୍ରିକୋଣମିତି ସହିତ ସଂପୃକ୍ତ ହୋଇହେବ । ଏସବୁ ବିଭିନ୍ନ ବିଷୟର ସ୍ୱାତନ୍ତ୍ର୍ୟ ସ୍ଥାପିତ ହେବା ଫଳରେ ଗାଣିତିକ ବିଚାରର ପ୍ରତିଷ୍ଠା ବ୍ୟାହତ ହେଉଛି Programmed Learning ଏକ ନୂତନ ପଦ୍ଧତି ଗଣିତ ଶିକ୍ଷାରେ ଏହାର ବ୍ୟବହାର ଅତ୍ୟନ୍ତ ଫଳପ୍ରଦ । ମେଧାବୀ ପ୍ରତି ସମୁଚିତ ଧ୍ୟାନ ଗଣିତରେ ଦିଆଯାଇଛି । ଋଷ ଦେଶରେ Mathematical Olympia କରି ଗାଣିତିକ ପ୍ରତିଭାର ନିର୍ଣ୍ଣୟ କରାଯାଇ ବିକାଶକୁ ଦୃଷ୍ଟି ଦିଆଯାଉଛି । ବିଜ୍ଞାନ ପରି ଗାଣିତିକ ପ୍ରତିଭାର ଅନୁଦାନ ଯୋଜନା ହେବା ଉଚିତ । ସ୍କୁଲମାନଙ୍କ ମଧ୍ୟରେ ପ୍ରତିଯୋଗିତା କରାଯିବା ଦରକାର । ସେହି ଦୃଷ୍ଟିରୁ କୋଠାରୀ କମିଶନ ପ୍ରସ୍ତାବ କରିଅଛନ୍ତି ଯେ ଭାରତରେ ଗୋଟିଏ କିମ୍ବା ଦୁଇଟି ହାଇସ୍କୁଲ ହେବା ଉଚିତ । ସେସବୁ ଆବାସିକ (Residence) ହେବ । ସେଥିରେ ଯେଉଁ ପିଲାଙ୍କର ଅସ୍ୱାଭାବିକ ଗାଣିତକ ପ୍ରତିଭା ଅଛି ସେମାନେ ପଢ଼ିବେ । ସେସବୁ ସ୍କୁଲ ବିଦ୍ୟାଳୟ ସହିତ ହେବ । ଏଥିପାଇଁ ଶିକ୍ଷକ, ଶିକ୍ଷା ପରିଦର୍ଶକ ଓ କର୍ମକାଳୀନ ଶିକ୍ଷା ବ୍ୟବସ୍ଥାରେ ପରିବର୍ତ୍ତନ ହେବା ଉଚିତ ।

□□□

# ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରୁ ଯାହା ମୁଁ ଶିଖିଛି

ରେଡ଼ିଓ ଷ୍ଟେସନର ଏହି ନିମନ୍ତ୍ରଣ ମୋ ପାଇଁ ଏକ ପରୀକ୍ଷା । ନାହିଁ କରିଦେଲେ ଅସୌଜନ୍ୟ, ଅଳ୍ପ ସମୟର, ବ୍ୟବଧାନ ହେତୁ କାର୍ଯ୍ୟକ୍ରମ ପ୍ରସାରଣରେ ବାଧା । ଆଶାକୁ ନିରାଶ କରିବା ଅପରାଧ । ତେବେ କଅଣ କହିବି ? ଏପରି ସାଧକ ଅଛନ୍ତି, ଯେଉଁମାନେ ଜୀବନସାରା ଲାଗି ଲାଗି ଗାନ୍ଧୀ ଚିନ୍ତାକୁ ଆପଣେଇ ପାରି ନାହାନ୍ତି । ସେପରି ପରିବାର ଦେଖାଯାଉ ନାହାନ୍ତି କହିଲେ ଚଳେ ।

ଗାନ୍ଧୀଜୀ ଜଣେ ନୀରବ ସାମାଜିକ ବିପ୍ଲବୀ । ସ୍ୱାଧୀନତା ସଂଗ୍ରାମର କର୍ଣ୍ଣଧାର, ସତ୍ୟ ଅହିଂସାର ଆୟୁଧ ଧରିଥିଲେ । ହୃଦୟରେ ସତ୍ୟ ବିରାଜିଲେ ହୃଦୟର ପରିବର୍ତ୍ତନ ହୁଏ, ଏହାହିଁ ପ୍ରବଳ ପରାକ୍ରମୀ ସାମ୍ରାଜ୍ୟବାଦରେ ପ୍ରମାଣିତ କରିଥିଲେ । ଆମ ରାଷ୍ଟ୍ରୀୟ ଚରିତ୍ର ବିକାଶରେ ଏହାହିଁ ଥିଲା ତାଙ୍କ ଆୟୁଧ, ଯେହେତୁ ସତ୍ୟହିଁ ଚିରକାଳ ସର୍ବତ୍ର ସତ୍ୟ ।

ଆମ ସମୟରେ ଆମ ସମ୍ମୁଖରେ ଗାନ୍ଧୀଜୀ ଜ୍ୱଳନ୍ତ ରହୁଥିଲେ । ଆହୁରି ମଧ୍ୟ ଜୀବନ ଜୀବୀକା ନିର୍ବାହରେ ଗାନ୍ଧୀଜୀଙ୍କ ଚିନ୍ତାକୁ ଶିକ୍ଷାଳୟରେ ପ୍ରୟୋଗ କରିବାର ଦାୟିତ୍ୱ କିଛି ସମୟ ପାଇଁ ହାତକୁ ନେଇଛି । ତେଣୁ ତାଙ୍କ ବ୍ୟକ୍ତିତ୍ୱରୁ କିଛି ଶିଖିଛି ଏହାକୁ ଯଥାଶକ୍ତି ଚିତ୍ରିତ କରାଇବା ମୋ କର୍ତ୍ତବ୍ୟ ।

ବିଦ୍ୟାଳୟ ପାଠ ପଢ଼ା ବେଳ । ଗାଁ ଠାରୁ ଅଳ୍ପ ଦୂରରେ ପୁରୁଣା ବଜାର, ସେଠି ଖଦୀ କେନ୍ଦ୍ର । ଆମେ ଅଟକି ଯାଉଁ, କପାରୁ କପଡ଼ା (cotton to cloth) କିପରି ହେଉଛି ଶ୍ରୀ ଉପେନ୍ଦ୍ର ପଣ୍ଡା ବୁଝାନ୍ତି । ବଳଣା ଓ ତକଲି ଦିଅନ୍ତି । ସୂତା କାଟୁ, ତାଙ୍କୁ ଦେଉ । ହସି ଦେଇ ଆଉ କେତେଟା ବଳଣା ଦିଅନ୍ତି । ସୂତା କାଟିବା କଉତୁକ ଲାଗେ । ରୁମାଲ ଖଣ୍ଡକ ଦେଖି ବିସ୍ମୟ ଲାଗେ । ଆମକୁ ଥାନା ବାବୁ ଧରିନେବେ, ବାପା ଓ ଗାଁବାଲା ଭୟ ଦେଖାନ୍ତି । ଏହି ରୁମାଲକୁ ଲୁଚାଇ ରଖିଛି । ମୋଦ୍ୱାରା ଖଣ୍ଡେ ରୁମାଲ ହୋଇଛି, ମଝିରେ ମଝିରେ କାଢ଼ି ଦେଖେ । ଆତ୍ମବିଶ୍ୱାସ ଆସେ । ମୋ ସୂତାରେ ଲୁଗା ପିନ୍ଧିବି ଉପେନ୍ଦ୍ର ବାବୁ ଭରସା ଦିଅନ୍ତି । ତାଙ୍କଠାରୁ ମଞ୍ଜି ନେଇ ଆମ ବାଡ଼ିରେ ଲଗାଇଛି । ଗଛ ହେଲା, କପା ଫୁଟିଲା, ଥାନା ବାବୁ କଥା କହି ବାପା ଡରାଇ ଦେଲେ । କହିଲେ, ପାଠ ପଢୁଛୁ, ନାଁ କପା ଚାଷ କରୁଛୁ । ଜଗତର କଲ୍ୟାଣ ପାଇଁ ବାପା ଚୁଲାରେ ବତୀ ଲଗାଇ ଘୃତାହୁତି ଦିଅନ୍ତି । ସେ ଆଉ ଡରାଇ ନାହାନ୍ତି । ଖାଦ୍ୟ, ବସ୍ତ୍ର, ବାସଗୃହ ସମସ୍ତଙ୍କ ଏକାନ୍ତ ଆବଶ୍ୟକ । ଗାନ୍ଧୀ ବିଚାରରେ ଏହାହିଁ ଶିକ୍ଷାର କେନ୍ଦ୍ର ।

ବିରାଡ଼ି କପାଳକୁ ଶିକା ଛିଣ୍ଡିଛି । ଶିକ୍ଷା ବିଭାଗର ଦ୍ୱିତୀୟ ଶ୍ରେଣୀ ରାଜ୍ୟର ମୌଳିକ ଶିକ୍ଷା ସଂଗଠକ ଓ ମୌଳିକ ଶିକ୍ଷା ଟ୍ରେନିଂ କଲେଜର ଅଧ୍ୟକ୍ଷ ହୋଇଛି ୧୯୫୦ ମସିହାରୁ । ସର୍ବୋଦୟ କର୍ମୀମାନଙ୍କ ସହିତ ଆଲୋଚନା କରିଛି । ସେମାନଙ୍କ କାମ ଦେଖିଛି ମୌଳିକ ଶିକ୍ଷା ଟ୍ରେନିଂ ସ୍କୁଲ ଓ ବିଦ୍ୟାଳୟ ପରିଦର୍ଶନ କରିଛି । ଗାନ୍ଧୀ ଶିକ୍ଷା ବିଚାରଧାରା କିପରି କାର୍ଯ୍ୟକାରୀ କରାଯାଉଛି ଏହା ବୁଝିଛି । ବିଲାତ ଫେରନ୍ତା ବାବୁ ପେଣ୍ଟ, କୋଟ, ଟାଇ, ଟୋପି ଫିଙ୍ଗି ଦେଇ ଖଦୀ ଲୁଗା ଓ ଜାମା ପିନ୍ଧିଛି । ଗାଁ ଗାଁ ବୁଲିଛି । ଗାଁକୁ ଫେରିଯିବାର ଡାକରା ଶୁଣିଛି । ଭାରତର ଆତ୍ମା ଗାଁରେ ଏପର୍ଯ୍ୟନ୍ତ ବିଶ୍ୱାସ ରଖିଛି । ମହାତ୍ମାଜୀଙ୍କ ବିଚାରଧାରାକୁ ଆପଣେଇବାରେ ପିତୃଅର୍ଜିତ ମହିମା ଧର୍ମ ସହାୟକ ହୋଇଛି । ପ୍ରାତଃ ଓ ସାୟଂ ବ୍ରାହ୍ମମୁହୂର୍ତ୍ତ ଉପାସନା ଏଯାବତ୍ ଚାଲୁଛି । ଅହିଂସା, ସତ୍ୟ, ଅଚୌର୍ଯ୍ୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ, ଶରୀରଶ୍ରମ, ଅସ୍ୱାଦ, ସର୍ବତ୍ର ଭୟ ବର୍ଜନ, ସର୍ବ ଧର୍ମ ସମାନତ୍ୱ, ସ୍ୱଦେଶୀ, ସମଭାବନା ଏହି ଏଗାରଟି ବ୍ରତ ପାଳନର ପ୍ରତିଜ୍ଞା ଗୁରୁଜୀ, ଗୁରୁଛାତ୍ର ଓ ଗ୍ରାମବାସୀଙ୍କ ମେଳରେ ଓ ନିଜେ ନିଜେ ବିଶେଷ କରି ଉପାସନା ଶେଷରେ କରୁଥିଲି ଓ କରୁଛି । ଏହି ଏଗାରଟି ମୂଲ୍ୟବୋଧ, ଦେଶଗଠନ ଓ ଜୀବନ ନିର୍ମାଣରେ ସହାୟକ, ଜୀବନବ୍ୟାପୀ ପାଳନୀୟ (ପରଧନ ଛୁଇଁବ ନାହିଁ ଓ ପରସ୍ତ୍ରୀଙ୍କୁ ମା ବୋଲି ମାନିବ) ଏହା ଗାନ୍ଧୀଜୀଙ୍କ ଜୀବନର ମୂଳାଧାର । ଏହାକୁ ଜଗିଛି, ଜୀବନଯାକ, ଛାତ୍ର, ଗୁରୁଛାତ୍ରୀଙ୍କୁ ପଢ଼ାଇଛି, ମା, ମା ସମ୍ବୋଧନ କରେ, ଆଜି କନ୍ୟାଟିଏ ମୋ ମା, ଅଭ୍ୟାସରେ ପଡ଼ିଛି ଓ ବୁଝିଛି, ଅହିଂସା, ସତ୍ୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ-ଏସବୁ ଯଣ, ନିୟମ, ପାଳନ କରୁଛି ଓ କରୁଥିବି । ସର୍ବସ୍ରଷ୍ଟା ଆମକୁ ସୃଷ୍ଟି କରିଛନ୍ତି ଓ ଆମ ଅନ୍ତରରେ ଅଛନ୍ତି । ଅଛୁଆଁ କହିବା ପାପ, କିଛି କିଛି ଶରୀରଶ୍ରମ କରି ଚାଲିଛି । ଲୋଭରୁ ପାପ, ସେଥିରୁ ମୃତ୍ୟୁ, ଯାହା ଅତ୍ୟାବଶ୍ୟକ, ସେତକ ନେବା ଗାନ୍ଧୀଜୀଙ୍କ ଏହି ବିଚାର ପାଳନ କରିବାରେ ଲାଗିଛି । ଏହି ଏଗାର ଗୋଟି ବ୍ରତ ପାଳନ କରୁ କରୁ ପିଲାଙ୍କ ପାଇଁ ବ୍ରହ୍ମଜ୍ଞାନ ଶିକ୍ଷା ପୁସ୍ତକ ରଚନା କରିଛି । ଛୋଟ ତୁଣ୍ଡରେ ବଡ଼ ଶୁଭିପାରେ, ମାତ୍ର ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳର ଅଭ୍ୟାସ ଫଳରେ ମୋର ଦୃଢ଼ ବିଶ୍ୱାସ ଓ ବଡ଼ ପାଟିରେ କହିବି, ଦେଶ, ବିଶ୍ୱ ଓ ବ୍ୟକ୍ତି ଏ ବାଟରେ ଚାଲିଲେ ଦୁର୍ଦ୍ଦିନ, ଦୁର୍ନିତି, ଦୁରାଚାର, ଦୁଃଖ, ଦୁର୍ଦ୍ଦଶା, ଧର୍ଷଣ, କଷଣ, ଶୋଷଣ ଦୂର ହୋଇଯିବ । ହିଂସା ଓ ଯୁଦ୍ଧର ଆଶଙ୍କା ହଟିଯାଇ ଅହିଂସା ଓ ଅଖଣ୍ଡ ଶାନ୍ତି ପ୍ରତିଷ୍ଠା ହୋଇପାରିବ । ମହିମା ସ୍ୱାମୀ ଓ ମହାତ୍ମା ଗାନ୍ଧୀଙ୍କ ଡାକରାରେ ମିଳିତ ଜାତିସଂଘର ଉଦ୍ୟମ ଫଳପ୍ରଦ ହେବ, ଏ ବିଶ୍ୱାସ ରଖିଛି ।

ସେବେ ସନ୍ଧ୍ୟା ସକାଳେ ଗାଉଥିଲି, ଏବେ ଭରିଛି, ସବୁରି କଲ୍ୟାଣ କରେ କାମନା, ନିବାର ସବୁରି ରୋଗ ଯାତନା,, କୁଶଳେ ରୁହନ୍ତୁ ସକଳେ ଭବେ, ଦୁଃଖଭାଗୀ କେହି ନ ହେଉ ଲବେ, ଏହା ଗୋଟିଏ ସଂସ୍କୃତ ଶ୍ଳୋକର ଅନୁବାଦ। ସମସ୍ତଙ୍କ କଲ୍ୟାଣ କାମନା କରୁଥିଲି। ସମସ୍ତଙ୍କ ମଙ୍ଗଳରେ ମୋ ମଙ୍ଗଳ, ବ୍ୟକ୍ତିର ମଙ୍ଗଳ। ବିଶ୍ୱମୈତ୍ରୀ ହାସଲ କରିପାରିବା। ଘୃଣା ପରିହାର କରି ସଦ୍‌ଭାବନାର ଡୋରିରେ ସମସ୍ତଙ୍କୁ ଆପଣାର କରିବା। ଏହାହିଁ ମହାତ୍ମାଜୀଙ୍କ ଧର୍ମନିରପେକ୍ଷ ଦୈନନ୍ଦିନ ଉପାସନା। ଭଗବାନ ସମସ୍ତଙ୍କ ହୃଦୟରେ ସଦଭାବନା ଦିଅନ୍ତୁ। ଏହା ମହାତ୍ମାଜୀଙ୍କର ଶିକ୍ଷା, ମହିମା ଧର୍ମର ପ୍ରଭାବରେ ତାହାହିଁ କରୁଛି। ଜଗତର ଉଦ୍ଧାର ଜଣାଉଛି। ଦୁର୍ଘଟଣା ଦୁଃଖର ସମ୍ବାଦ କାନରେ ପଡ଼ିଲେ ହୃଦୟ ବ୍ୟସ୍ତ ଓ ବ୍ୟଥିତ ହେଉଛି।

ଖାଦ୍ୟ ଗ୍ରହଣ ପୂର୍ବରୁ ଗୋଟିଏ ମନ୍ତ୍ର ବୋଲୁଥିଲୁ। ସେନିବା ଆଗରୁ ସକା ମୋ ନିତ୍ୟ ଭକ୍ଷ୍ୟ, ଯେତିକି ସତତ ହରି ହେ ଦୟା ରଖ। ଜୀବନ ଶକତି ଦାଦା ଅନ୍ନହିଁ ପୂର୍ଣ୍ଣ ବ୍ରହ୍ମ, ଉଦର ଭରଣ ନୁହେଁ ଜାଣ ହେ ଯଜ୍ଞ କର୍ମ, ଆମେ ପେଟୁ ହେଉନଥିଲୁ। ବରଂ ମିତାହାରୀ ହେଉଥିଲୁ। ଯେତିକି ଭୋଜନ କଲେ ଆମ ଜୀବନ ରକ୍ଷା ପାଇଁ ଶକ୍ତି ମିଳିବ ସେତିକି ଖାଦ୍ୟ ନେଉଥିଲୁ। ଏହା ଏକ ଯଜ୍ଞ କର୍ମ ବୋଲି ଅନୁଭବ କରୁଥିଲୁ। ସମାଜର ହିତ ପାଇଁ ଯଜ୍ଞ କରାଯାଏ। ଜନସାଧାରଣଙ୍କ ମଙ୍ଗଳ ପାଇଁ ଜୀବନ ଧାରଣ କରିବା। କେବଳ ଖାଇବା ପାଇଁ ବଞ୍ଚିଛୁଁ ଏହା ନୁହେଁ। ଖାଇ ଜୀବନ ଧାରଣ କରୁଛୁଁ ଅନ୍ୟର ହିତ ସାଧନ ପାଇଁ। ଏ ଯାଏଁ ସେ ଅଭ୍ୟାସ ରଖିଛି। ସ୍ୱାର୍ଥାନ୍ଧ ହୋଇ ଗୁଡ଼ାଏ ଖାଇ ନାହିଁ। ପରମାତ୍ମାଙ୍କୁ ଅର୍ପଣ କରି ଖାଉଛି। ଖାଦ୍ୟ ନଷ୍ଟ କରୁନାହିଁ, ଚୋପା ଆଦି ଅଇଁଠାକୁ ସାରରେ ଲଗାଉଥିଲି।

ଏପରି ସାନ ସାନ କଥାରେ ନଜର ଦେବାକୁ ଗାନ୍ଧୀଜୀଙ୍କଠାରୁ ଶିଖିଛି। ଏହାହିଁ ଶିକ୍ଷା, ଛୋଟ ଛୋଟ ଜିନିଷରୁ ଶିକ୍ଷା। ପରିସ୍ରାରୁ ସାର କରୁଥିଲୁ। ସେବାଗ୍ରାମ ମୁତୁରୀ ତିଆରି କରିଛୁଁ। ମଳରୁ ସୁନାସାର ହେଉଥିଲା। ଗାଁ ଗାଁରେ କମ୍ପୋଷ୍ଟ କରାଯାଇଛି। ସଫାଇରୁ ଶିକ୍ଷା ଆରମ୍ଭ ହୁଏ, ଏଥିରୁ ଆଧ୍ୟାତ୍ମିକ ଚେତନା ପ୍ରକ୍ରିୟାକୁ ଅନୁଧ୍ୟାନ କରି କଅଣ ଓ କାହିଁକି ବୁଝିବାକୁ ପଡ଼େ। ଉଭୟ ଉଦେଶ୍ୟ ଓ ଉପାୟକୁ ସମସ୍ତଙ୍କ ପାଇଁ ମଙ୍ଗଳପ୍ରଦ କରାଯିବ।

ଗାନ୍ଧୀ ଶିକ୍ଷାବିଚାର ଉପରଠାଉରିଆ ନୁହେଁ। ସେ ଏହାର ପରୀକ୍ଷା ପ୍ରୟୋଗ କରିଛନ୍ତି। ଶିକ୍ଷା ବିଶାରଦଙ୍କ ପରାମର୍ଶ ନେଇଛନ୍ତି। ଜୀବନ ପାଇଁ ଜୀବନଯାପନ ମାଧ୍ୟମରେ ଜୀବନବ୍ୟାପୀ ଶିକ୍ଷା ଦିଆଯିବ। ଜୀବନଯାକର ଭିତ୍ତି ପଡ଼ିବ ଶିକ୍ଷାଦ୍ୱାରା। ପ୍ରାକୃତିକ, ଅର୍ଥନୈତିକ ଓ ସାମାଜିକ ପରିବେଶରୁ ଉପାଦାନ ଉପରେ

ଶିକ୍ଷା ସ୍ଥିର କରାଯିବ । ଛୋଟ ପିଲାଠାରୁ ବଡ଼ ମଣିଷଯାଏଁ ସମସ୍ତଙ୍କ ଶରୀର, ମନ ଓ ଆତ୍ମାର ସର୍ବୋତ୍ତମ ବିକାଶ କରିବା ହେଉଛି ଶିକ୍ଷାର ଅର୍ଥ । ହାତ, ହୃଦୟ ଓ ମସ୍ତିଷ୍କର ବିକାଶ ହେଉଛି ଶିକ୍ଷାର ଲକ୍ଷ୍ୟ । ଆମ ସମାଜ ଦୁଇ ଶ୍ରେଣୀରେ ବିଭକ୍ତ, ଗୋଟିଏ ଗଣ୍ଡିର, ଖଟି ଖଟି ଦିନ କଟେ, ଅନ୍ୟଟି ମୁଣ୍ଡର, ମସ୍ତିଷ୍କର କାମ । ଉଭୟ ଶ୍ରେଣୀ ମଧ୍ୟରେ ତୀକ୍ତତା ଗାନ୍ଧୀଜୀଙ୍କୁ ବାଧିଛି । ଶିକ୍ଷା ଏପରି ହେବ ଯଦ୍ୱାରା ବିଷାକ୍ତତା ବଦଳରେ ପ୍ରତ୍ୟେକ ବ୍ୟକ୍ତିର ଗଣ୍ଡି ଓ ମୁଣ୍ଡ ଶିକ୍ଷା ପାଇବ । ଶିକ୍ଷାକୁ କର୍ମକେନ୍ଦ୍ରିକ କରାଯାଇଛି । ମୌଳିକ ବିଦ୍ୟାଳୟରେ ପିଲାଙ୍କ ସହିତ କାମରେ ଯୋଗ ଦେଇଛି । ପିଲା, ଗୁରୁଜୀ ଓ ଗ୍ରାମବାସୀଙ୍କ ସହିତ ଏକାତ୍ମ ହେଲି । Suprisim through anticipation ପ୍ରବନ୍ଧ ଲେଖିଛି । ଟ୍ରେନିଂ କଲେଜରେ ଶଯ୍ୟାତ୍ୟାଗରୁ ରାତିଯାଏଁ କାମଦାମ, ଗୁରୁଛାତ୍ରମାନଙ୍କ ସହିତ ଉପାସନା କରିଛି । ଝାଡୁ ଧରିଛି, ପାଇଖାନା ସଫା କଲି, ରୋଷାଇ ଓ ଧନ୍ଦା କାମ କରିଛି । ଦୈନିକ ବିବରଣୀରୁ ପ୍ରତିକ୍ରିୟା ତ୍ରୁଟି ନିଜକୁ ପକାଡ଼ିଛି ବା ଛାତ୍ରମାନଙ୍କୁ ବୁଝାଇଛି ।

ଗାନ୍ଧୀଜୀ ଯାହା କରନ୍ତି ତାହା ସେ କହନ୍ତି । ତାଙ୍କ ଜୀବନ ହିଁ ଆମ ପାଇଁ ବାର୍ତ୍ତା । ସେ ଭଲ କଥା କହିବେ, ଭଲ କଥା ଶୁଣିବେ ଓ ଭଲକାମ ଦେଖିବେ । ଏଥିପାଇଁ ସେ ସତର୍କ ରହିବେ, ତେଣୁ ମନ୍ଦ କଥା କହିବେ ନାହିଁ, ମନ୍ଦକଥା ଶୁଣିବେ ନାହିଁ ଓ ମନ୍ଦ କାମ ଦେଖିବେ ନାହିଁ, ଏଥିପାଇଁ ତିନୋଟି ମାଙ୍କଡ଼ର ମୂର୍ତ୍ତି ତାଙ୍କ ପାଖରେ ରଖିଥିଲେ ଯେଉଁମାନଙ୍କର ଯଥାକ୍ରମେ ପାଟି, କାନ ଓ ଆଖିରେ ହାତ ଦିଆଯାଇଥିଲା । ସେ ମଧ୍ୟ କହିଛନ୍ତି, କରିଛନ୍ତି ଓ ଆମକୁ ଶିଖାଇଛନ୍ତି କାଲି ଯାହା କରିବାର କଥା, ତାହା ଆଜି କର ଓ ଆଜି ଯାହା କରିବାର କଥା, ତାହା ଏବେ କର ।

ବିଶ୍ୱମାନବ ମହାତ୍ମା ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧା ନିବେଦନ କରୁଛି । ମହିମା ସ୍ୱାମୀ ଓ ମହାତ୍ମାଗାନ୍ଧୀଙ୍କ କରୁଣାରୁ ଅନେକ ବିଶିଷ୍ଟ ବ୍ୟକ୍ତି ଆସନ୍ତି, ଆମ ପିଣ୍ଡାରେ ବସି ଯାଆନ୍ତି । ମନଖୋଲା କଥା ହେଉ । ହସଖୁସିରେ ସମୟ କଟେ । ଦିଖଣ୍ଡ ଚୌକି ପଡ଼ିଛି । ପଛପଟ ପ୍ଲାଷ୍ଟିକ ବୁଣା ଛିଣ୍ଡି ଯାଇଛି । ପିଠିଟା ଗଳି ପଡ଼େ । ସେମାନଙ୍କ ଉଦାରତାକୁ ନମସ୍କାର କଣାଇଛି । ସେମାନେ କିଛି କହନ୍ତି ନାହିଁ । ବୈଠକ ଘର ନାହିଁ, କୁସନ ଥିବା ଗଦି ନାହିଁ ବୋଲି ଭାବେ । କିନ୍ତୁ ମହିମା ଓ ମହାତ୍ମାଙ୍କ ଦୟାରୁ ମୁଁ ଏଇଥିରେ ସନ୍ତୁଷ୍ଟ । କେତେ କଅଣ ନହେଲେ ଚଳିଯିବ, ଏହି ନୀତି ଧରିଛି ।

ଗାନ୍ଧୀଙ୍କର ରକ୍ଷା କବଚ ଆମପାଇଁ ଅଛି । ଲାଙ୍ଗି ନପଡ଼ି ତଳକୁ ଦେଖିବା, ଉନ୍ମତ୍ତ ନହୋଇ ଆମ ଉପରକୁ ଅନାଇବା ।

□□□

# ଛାତ୍ରଛାତ୍ରୀମାନଙ୍କ ପରୀକ୍ଷାରେ ଅକୃତକାର୍ଯ୍ୟ ହେବାରେ ଆମେ ଶିକ୍ଷକ କେତେ ଦାୟୀ ?

ଶିକ୍ଷକ ବନ୍ଧୁମାନଙ୍କର ଏହି ବିରାଟ ବିଚାରମଞ୍ଚ। ଆମ ରାଜ୍ୟର ବଳିଷ୍ଠ ଶିକ୍ଷକ ସଂଗଠନ। ସମଗ୍ର ଦେଶରେ ଅନ୍ୟତମ ସୁସଂହତ ସଂଘ, ଯାହାର ସଟାନ୍ତର ବିରଳ କହିଲେ ଚଳେ। ଏଥିରେ ପରୀକ୍ଷା ଭଳି ବହୁ ବାଞ୍ଛିତ ଓ ବହୁ ଭର୍ତ୍ସିତ, ବହୁ ଲାଞ୍ଛିତ କିନ୍ତୁ କ୍ୱଚିତ୍ ଆକାଙ୍କ୍ଷିତ ମାତ୍ର ସର୍ବଥା ଅପରିହାର୍ଯ୍ୟ ସମସ୍ୟା ବିଷୟରେ ନିଜ ଅଭିମତ ଜ୍ଞାପନ କରିବା ପାଇଁ ସଙ୍କୋଚ ଲାଗେ-ସଙ୍କୋଚ, କାରଣ (୧) ଏହି ସର୍ବଗ୍ରାସୀ ସମସ୍ୟାର ସର୍ବାଙ୍ଗୀନ ଆଲୋଚନାରୁ ଏହି ପ୍ରବନ୍ଧର ସୀମିତ କଳେବର ମଧ୍ୟରେ ସମ୍ଭବ ହୋଇ ନପାରେ। (୨) ନିଜେ ଜଣେ ଶିକ୍ଷକ ଥିଲି, ଆଜି ବି ରହିଛି-ଏପରିସ୍ଥଳେ ଶିକ୍ଷକ ଭାଇଙ୍କୁ କେତେଦୂର ଦାୟୀ କରିବି ? (୩) ଓଡ଼ିଶା ମାଧ୍ୟମିକ ସ୍କୁଲ ସମୂହର ଶିକ୍ଷକ, ଶିକ୍ଷାର୍ଥୀ, ଶିକ୍ଷା ପ୍ରଶାସକ ଓ ଶିକ୍ଷାପ୍ରେମୀ, ସମାଜର ସ୍ଥିତି, ସମ୍ଭାବନା, ସ୍ୱୀକୃତି, ଅଭିଳାଷ, କାର୍ଯ୍ୟକରିବା ଅବସ୍ଥା ଉପକରଣ, ଉପାଦାନ ଆଦିର ସମ୍ୟକ୍ ପର୍ଯ୍ୟାଲୋଚନା ବ୍ୟାପକତା, ଗଭୀରତା ଓ ଘାତପ୍ରତିଘାତ ଦୃଷ୍ଟିରୁ କରିବା ସମ୍ଭବ ହୋଇ ନ ପାରେ। (୪) ଶିକ୍ଷକ ସଂଘର ସମ୍ମୁଖରେ ସମର୍ଥନୀୟ ଓ ନିରପେକ୍ଷ ବିଚାରଟିଏ ଥୋଇବା ମଧ୍ୟ ମୁସ୍କିଲ। ତଥାପି ଏହି ବିଚାର ମଞ୍ଚ ସହିତ ମୁଁ ସୁପରିଚିତ ଓ ମଞ୍ଚାସୀନ ଶିକ୍ଷକ ଭାଇମାନଙ୍କ ଦୃଷ୍ଟିକୋଣର ଉଦାରତା, ତୀକ୍ଷ୍ଣତା, ଗଭୀରତା, ପୁଙ୍ଖାନୁପୁଙ୍ଖତା, ଧୈର୍ଯ୍ୟ ଓ ଅଭିଜ୍ଞତାକୁ ସମ୍ବଳକରି ମୋର ବିଶ୍ଳେଷଣ ଉପସ୍ଥାପନ କରିବି।

ଏହାଛଡ଼ା ଏଥିପାଇଁ ଆହୂତ ହେବା ମୋ ପାଇଁ ସମ୍ମାନ ଓ ସେଥିପାଇଁ ମୁଁ ଆପଣଙ୍କ ସମୀପରେ ମୋର ସମ୍ମାନ ଅର୍ପଣ କରୁଛି। ତ୍ରୟୋବିଂଶ ସାଧାରଣ ସଭାର ଏହି ନବପ୍ରବର୍ତ୍ତନ ପ୍ରତି ମୋର ପ୍ରଶଂସା ଓ ଅଭିନନ୍ଦନ ଜ୍ଞାପନ କରୁଛି। ଶିକ୍ଷକ ସମାଜରେ ନେତୃତ୍ୱ ନେବା ପାଇଁ ଆପଣଙ୍କ ସଂଘ ଯଥାର୍ଥତଃ ଭାଜନ, ଏଥିରେ ସଂଦେହ ନାହିଁ।

ଆଉ ଗୋଟିଏ କଥା ସେ ସମ୍ବନ୍ଧରେ କିଞ୍ଚିତ ଆଲୋଚନା ନ କଲେ ମୋର କର୍ତ୍ତବ୍ୟରେ ଅବହେଳା କରିବି। ତାହା ହେଉଛି ଏହି ସମ୍ମିଳନୀର ବୈଶିଷ୍ଟ୍ୟ- ଦିବ୍ୟସିଂହ ପଟ୍ଟନାୟକ ସ୍ମାରକୀ ବକ୍ତୃତା। ସ୍ୱର୍ଗତଃ ପଟ୍ଟନାୟକ ଆମ୍ଭମାନଙ୍କର ନମସ୍ୟ, ସେ ଜଣେ ଆଜୀବନ ଶିକ୍ଷକ ଓ ତାଙ୍କ ଦୃଷ୍ଟିରେ ଶିକ୍ଷାର୍ଥୀଙ୍କ ସେବା ହିଁ ଈଶ୍ୱରଙ୍କ ସେବା। ତାଙ୍କ ସରଳ ଓ ଅମାୟିକ ଜୀବନରେ ବିଦ୍ୟାନୁରାଗ ସହିତ ବିଦ୍ୟାର୍ଥୀ ବତ୍ସଳତା ଗୋଟିଏ ବୃନ୍ତର ଦୁଇଟି ପୁଷ୍ପ ସଦୃଶ ଥିଲା। ଆତ୍ମସନ୍ତୋଷର

ଜୀବନ ଯେପରି ଚାହେଁ ନାହିଁ କିଛି, କିନ୍ତୁ ପାଏ ସବୁକିଛି ଓ ସମସ୍ତଙ୍କୁ-ସେ ଏହାର ପ୍ରତୀକ। ସ୍ୱଳ୍ପ ହେଲେ ହେଁ ମୁଁ ତାଙ୍କ ସମ୍ପର୍କରେ କେତେକ କ୍ଷେତ୍ରରେ ଆସିଛି ଓ ତାଙ୍କ ସଦ୍‌ଗୁଣ ଦ୍ୱାରା ବିଶେଷ ପ୍ରଭାବିତ ହୋଇଛି। ତାଙ୍କ ସ୍ମୃତି ଆମ୍ଭମାନଙ୍କ ସମୀପରେ ଅମଳୀନ ରହୁ-ଏହି କାମନା କରି ତାଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି।

ବର୍ତ୍ତମାନ ଆଲୋଚ୍ୟ ପ୍ରଶ୍ନର ବିଭିନ୍ନ ଅଂଶ ବା ପଦ ସମ୍ବନ୍ଧରେ ବିଚାର କରିବା ପୂର୍ବରୁ ସମଗ୍ର ପ୍ରସଙ୍ଗର ସମ୍ଭାବ୍ୟ ଉତ୍ତର ଦେଖିବା। ପୂର୍ବ କାଳରେ ସମସ୍ତେ ସ୍ୱୀକାର କରୁଥିଲେ ଓ ଆଜି ବି ଅନେକ ଶତଜିହ୍ୱ ହୋଇପଡ଼ନ୍ତି, ଶିକ୍ଷକମାନେ ପୂରାପୂରି ଦାୟୀ। "ଆମେ ପିଲାଙ୍କୁ ଛାଡ଼ିଛୁଁ, ଲୁଗାପଟା, ବହିପତ୍ର ଯାହା ଦେଉଛୁଁ, ସେମାନଙ୍କ ଅକୃତକାର୍ଯ୍ୟତା ପାଇଁ ଶିକ୍ଷକମାନଙ୍କ ଛଡ଼ା ଆଉ କିଏ ଦାୟୀ ?" ବସ୍ତୁତଃ ସେମାନଙ୍କ ନିଯୁକ୍ତି ଏଇଥିପାଇଁ। ଏଥିପାଇଁ ମଧ୍ୟ ବିଦ୍ୟାଳୟର ପ୍ରତିଷ୍ଠା ପକ୍ଷାନ୍ତରରେ ଅକୃତକାର୍ଯ୍ୟତା ପାଇଁ କାରଣସ୍ୱରୂପ କୁହାଯାଏ। ଗୁରୁଜୀମାନେ ଧର୍ମଘଟ କରିଛନ୍ତି, ଶ୍ରେଣୀରେ ପଢ଼ାଉ ନାହାନ୍ତି, ଲେଖାଲେଖି ଦେଖୁ ନାହାନ୍ତି, ଟିକିଏ କଥାରେ ସଂଘ, ସଭା, ଶୋଭାଯାତ୍ରା, ସେମିନାର ଓ ବର୍ଷକରେ ଆଠକାଳି ବାରମାସୀ ଛୁଟୀ। ଆଉ ଆଜିକାଲି ସ୍କୁଲ ଫିଟୁଛିନା ପଢ଼ା ଯାଉଛି ? ଟିଉସନ, ସ୍କୁଲ ଓ କଲେଜରେ ବେଶ୍ ଆଦର ଲାଭ କଲାଣି, କେବଳ ବିଭାଗୀୟ ସ୍ୱୀକୃତି ବାକୀ ରହିଛି। ସେପଟେ ପରିଦର୍ଶନ ପରିବର୍ତ୍ତେ ପରିଭ୍ରମଣ ହେଉଛି। ସେପରି କଡ଼ାକଡ଼ି ପରିଦର୍ଶନ କାହିଁ ? କେବଳ କଲମର କାଟତି ଚାଲିଛି। ଏସବୁ ଅସୁବିଧା ଭିତରେ ଶିକ୍ଷକଙ୍କ ଦାୟିତ୍ୱ ବଢ଼ିଯାଇଛି।

ପ୍ରଶ୍ନର ଉତ୍ତର ଦେବାକୁ ଯାଇ କେହି କେହି ଏବେ ମଧ୍ୟ କହନ୍ତି- ପ୍ରାଥମିକ ବିଦ୍ୟାଳୟରେ ପିଲାଙ୍କ ଅକୃତକାର୍ଯ୍ୟତା ପାଇଁ ଶିକ୍ଷକ ପୂରାପୂରି ଦାୟୀ। ମାଇନର ସ୍କୁଲ ବେଳକୁ ଶିକ୍ଷକଙ୍କ ଦାୟିତ୍ୱ ଶତକଡ଼ା ୪୦ଭାଗ ଯାଏ କମିଛି ଓ ହାଇସ୍କୁଲ ବେଳକୁ ଏହା ପ୍ରାୟ ଶତକଡ଼ା ୫୦ ଭାଗ ହୋଇଛି। ସେହି ଯୁକ୍ତି ଅନୁସାରେ ଉଚ୍ଚତର ଶିକ୍ଷାରେ ଅକୃତକାର୍ଯ୍ୟତା ପାଇଁ ଅଧ୍ୟାପକମାନଙ୍କ ଦାୟିତ୍ୱ ପ୍ରାୟ ନାହିଁ କହିଲେ ଚଳେ। ଏହାର କାରଣ ଦର୍ଶାଇବାକୁ ଯାଇ କୁହାଯାଏ ଯେ ଏହି ଦାୟିତ୍ୱର ଆନୁପାତିକ ମୂଲ୍ୟ ପିଲାଙ୍କ ମୁଣ୍ଡରେ ଲଦି ଦିଆଯାଉଛି। ପ୍ରାଥମିକ ବିଦ୍ୟାଳୟରେ କୋମଳମତି ଶିଶୁ ଅବୋଧ ନିର୍ବୋଧ। ତେଣୁ ଏମାନଙ୍କୁ ଆଦୌ ଦାୟୀ କରାଯାଉ ନାହିଁ। ଏମାନେ ତ ପିଣ୍ଡୁଳାଏ କାଦୁଅ ପରି ଓ ଏମାନଙ୍କୁ ପିଟି ପିଟି ହାଣ୍ଡିମାଠିଆ ଗଢ଼ିଲା ପରି ଗଠନ କରାଯିବ। ଏହା ପରେ ପିଲାଙ୍କ ବୟସ ବଢ଼ିବା ଫଳରେ ଶିକ୍ଷାର୍ଥୀଙ୍କ ଦାୟିତ୍ୱ ଏପରି ବଢ଼ି ବଢ଼ି ଯାଉଛି, କଲେଜ ବେଳକୁ ସବୁ ଦାୟିତ୍ୱ ଯୁବକଙ୍କୁ ଦେଇ ଅଧ୍ୟାପକମାନେ ଦାୟିତ୍ୱଶୂନ୍ୟ ହେଉଛନ୍ତି। ଏହାଛଡ଼ା ପ୍ରାଥମିକ

ବିଦ୍ୟାଳୟରେ ଅବଧାନ, ମାଇନର ଓ ହାଇସ୍କୁଲରେ ଶିକ୍ଷକ ଓ କଲେଜ ବେଳକୁ ଅଧ୍ୟାପକ ବୋଲି କୁହାଯାଉଛି। ଦାୟିତ୍ୱ ମୁଣ୍ଡାଇବା ଏକ ନିକୃଷ୍ଟ ଓ ମଳିମୁଣ୍ଡିଆ କାମ ହେତୁରୁ ଦାୟିତ୍ୱ କ୍ରମଶଃ କମିଯାଉଛି। ଦୁର୍ଭାଗ୍ୟକ୍ରମେ ଏପର୍ଯ୍ୟନ୍ତ ଆମ ଦେଶରେ ଦାବୀ ଓ ଦାୟିତ୍ୱ ମଧ୍ୟରେ ଅନୁରୂପତା ପ୍ରତିଷ୍ଠିତ ହୋଇପାରି ନାହିଁ। ଏହା ବଦଳରେ ଦାୟିତ୍ୱ ତଳକୁ ତଳ ଖସାଇ ମଳିମୁଣ୍ଡିଆଙ୍କ ଉପରେ ଲଦି ଦିଆଯାଉଛି ଓ ଦାବୀ ଏକ ମର୍ଯ୍ୟାଦାସମ୍ପନ୍ନ କାର୍ଯ୍ୟ ଭାବରେ ଉପରକୁ ଉଠିଯାଉଛି। ଅନ୍ୟ ଦିଗରେ ଦେଖିବାକୁ ଗଲେ ଆମେ ଲକ୍ଷ୍ୟ କରିବା ଯେ ଦାୟିତ୍ୱ ସହିତ ଦରମା, ଶ୍ରମ, ମର୍ଯ୍ୟାଦା ଓ ସୁବିଧା ନିକିତିରେ ଦୁଇ ପାଖ ପରି ସମାନ ରହୁ ନାହିଁ। ବସ୍ତୁତଃ, ପ୍ରାଥମିକ ବିଦ୍ୟାଳୟରେ ଗୁରୁଜୀ ହିଁ ବିଦ୍ୟାଳୟ ବୋଲି କୁହାଯାଇ ତାଙ୍କ ମୁଣ୍ଡରେ ସବୁ ନଡ଼ିଆ ପିଟା ଯାଉଛି। ଯାହାହେଉ, ଶିକ୍ଷକମାନଙ୍କ ଶ୍ରେଣୀକରଣ ସହିତ ଛାତ୍ର ଓ ଶିକ୍ଷକମାନଙ୍କ ସମ୍ବନ୍ଧରେ ଯେଉଁ ଭାବନା ପୋଷଣ କରାଯାଉଛି ତାହା ହିଁ ବିଚାର୍ଯ୍ୟ ଓ ତତ୍‌ଜନୀତ ସିଦ୍ଧାନ୍ତ ଯେ କେତେଦୂର ସମୀଚୀନ, ଏହା ପ୍ରଶ୍ନବାଚୀ ହୋଇ ରହୁଛି।

ଆଉ ଗୋଟିଏ ଉତ୍ତର। ଏହି ଉତ୍ତର ପଛରେ ଯେଉଁ ପର୍ଯ୍ୟାଲୋଚନା ରହିଛି, ତାହା ପ୍ରଥମେ ଆପଣମାନଙ୍କୁ ସୂଚାଇବି। ଶିକ୍ଷାର ପରିବେଶ, ଅଧ୍ୟୟନ ଅଧ୍ୟାପନାର ପରିବେଶ ଆଜି ବହୁ factor ଜଡ଼ିତ ହୋଇଛି ଓ କ୍ରମଶଃ ବଢୁଛି ଏବଂ ଆବିଳତା ତଥା ଜଟିଳତାରେ ଜର୍ଜରିତ ହୋଇଛି। ଏଥିରେ ଶିକ୍ଷକଙ୍କ ସ୍ଥାନ ଶିକ୍ଷାରେ ଯେ କେତେଦୂର ଗୁରୁତ୍ୱପୂର୍ଣ୍ଣ ତାହା ଲେଖି ହେବ ନାହିଁ। ଅଧ୍ୟାପନାର ପ୍ରାଧାନ୍ୟ ହ୍ରାସ ପାଉଛି ଓ ଏହା ସ୍ଥାନରେ ଅଧ୍ୟୟନର ଗୁରୁତ୍ୱ, ଅଧିକ ମାତ୍ରାରେ ବଢୁଛି। ଏଥିପାଇଁ ସମଗ୍ର ବିଶ୍ୱରେ ଚହଳ ପଡ଼ିଛି। ଏହାକୁ କାର୍ଯ୍ୟକାରୀ କରିବା ପାଇଁ ବହୁ ନବ ପ୍ରବର୍ତ୍ତନ ସ୍ଥିର କରାଗଲାଣି ଏବଂ ଗବେଷଣାଗୃହ କର୍ମମୁଖର ରହିଛି। ଯାନ୍ତ୍ରିକ ତଥା ଅନ୍ୟାନ୍ୟ ଆତ୍ମଶିକ୍ଷଣ ଉପାଦାନ ଚାଲୁ କରାଯାଇଛି। ଏହାସତ୍ତ୍ୱେ ଶିକ୍ଷକଙ୍କ ଭୂମିକା ଅପରିହାର୍ଯ୍ୟ ହୋଇ ରହିଛି। ବହୁ ଅତୀତରେ ଓ ଆଜି ମଧ୍ୟ ଶିକ୍ଷା ଜଗତର ଇତିହାସରେ ସମୟ ତଥା ଗୁରୁତ୍ୱ ଦୃଷ୍ଟିରୁ ଶିକ୍ଷକଙ୍କ ସ୍ଥାନ ପ୍ରଥମ ହୋଇଅଛି। ଯେକୌଣସି ଶିକ୍ଷା ଯୋଜନା, ଶିକ୍ଷାୟତନ ଓ ଶିକ୍ଷାକ୍ରମର ସଫଳତା ପାଇଁ ଶିକ୍ଷକଙ୍କ ଦାନ ଅତୁଳନୀୟ। ସୁତରାଂ ଶିକ୍ଷକ-ଶିକ୍ଷା, ଶିକ୍ଷକ ଜୀବନରେ ଅନିବାର୍ଯ୍ୟ ହୋଇଛି। ମାତ୍ର ସେ ଉଲ୍ଲିଖିତ ଅନେକ factor ମଧ୍ୟରୁ ଜଣେ। ତାଙ୍କ ସମେତ ତାଙ୍କ ଶିକ୍ଷାୟତନ, ଶିକ୍ଷା-ପରିବେଶ, ସମାଜ, ଶିକ୍ଷାର୍ଥୀ, ପ୍ରଶାସକ ଆଦି ଏହି ବହୁ factor ମଧ୍ୟରୁ ଗୋଟିଏ ଗୋଟିଏ। ପୁଣି ଶିକ୍ଷକଙ୍କ ଆର୍ଥିକ ଅବସ୍ଥା, ଭାବୀ ଉନ୍ନତିର ଆଶା, ଆନନ୍ଦ, କର୍ମନିଷ୍ଠା, ସ୍ୱପ୍ନ ଆଦି ଶ୍ରେଣୀ ତଥା ସମାଜରେ ଶିକ୍ଷକ କହିଲେ ଯାହା ସେଥିରୁ ଅନ୍ତର୍ଭୁକ୍ତ। ଆନନ୍ଦ ସ୍ୱକୀୟ ଜୀବନର

ଅନୁଭୂତି ଓ ଏହା ଶିକ୍ଷାକ୍ରମରେ ନିହିତ ଥାଏ । ଏହା କେଉଁଠୁ ଆସେ ଓ ଶିକ୍ଷକଙ୍କୁ କିପରି ଉପୋଭୀର୍ଣ୍ଣ କରାଏ । ଏହା କେବଳ କର୍ମମଗ୍ନ ଶିକ୍ଷକ ହିଁ ଜାଣନ୍ତି । କିନ୍ତୁ ସେ ଯଦି ପ୍ରତି ମାସରେ ନିର୍ଦ୍ଦିଷ୍ଟ ବେତନ ଗଣ୍ଡିକ ନିୟମିତ ଭାବରେ ନ ପାଆନ୍ତି ତେବେ କେବଳ ସେ ନୁହନ୍ତି, ତାଙ୍କ ପରିବାର ଓ ଯାହାଙ୍କ ସହିତ ସେ ତେଲ ଲୁଣର କାରବାର କରନ୍ତି, ସମସ୍ତେ ଜାଣନ୍ତି "ଅନ୍ନ ଚିନ୍ତା ଚମତ୍କାର" । ତାଙ୍କ ବେକର ପଘାଟିକୁ ଅନ୍ୟ ଜଣେ ଟାଣୁଛନ୍ତି ବୋଲି ସେ ଅନୁଭବ କରନ୍ତି । ଶିକ୍ଷା ଏକ ଜୀବିକାରେ ପରିଣତ ହୁଏ ଓ ଜୀବିକା ସହିତ ସମ୍ପୃକ୍ତ ଦାନାକନା, ଚାଳଛପର, ଚୂଲିଲିପା ଆଦି ପାଇଁ ବେତନ ଗଣ୍ଡିକ ଅକୁଳାଣ ହୁଏ । ତେବେ ଗୋଳିଆପାଣି କଙ୍କଡ଼ାକୁ ସୁହାଇଲା ପରି ସେ ସମାଜର ବର୍ଜ୍ୟଗୁଡ଼ିକୁ ନିଜ ଅଙ୍ଗରେ ବୋଲି ହୁଅନ୍ତି । ତାଙ୍କ ଉଦ୍ୟମ ବ୍ୟର୍ଥ ହୋଇପାରେ, ତାଙ୍କ ସଂଗଠନ ଓ ସଂଘ କେବଳ ପ୍ରତିଶ୍ରୁତିରେ ସୀମିତ ରହୁଛନ୍ତି । ଏହା ଅନୁଭବ କରି ସେ ଚରମ ବିଫଳତା ଅନୁଭବ କରନ୍ତି । ଏଠି ଆଶା, ଆଦର୍ଶ ଓ ସ୍ୱପ୍ନ କେବଳ ଦିବାସ୍ୱପ୍ନରେ ପରିଣତ ହୁଏ । ସମସ୍ତ ସମ୍ଭାବନାରେ ପରିପୂର୍ଣ୍ଣ ଶିକ୍ଷାନୀତି ଏକ ଚରମ ଅବ୍ୟବସ୍ଥା ବୋଲି ମନେ ହୁଏ । କିଏ ପ୍ରାଣର ସଂଚାର କରୁଛି ? ନିଜ ଶ୍ରେଣୀ କୋଠରୀ ମଧ୍ୟ ଦୋଦୁଲ୍ୟମାନ । ନିଜ ଶିକ୍ଷାର୍ଥୀବୃନ୍ଦ ଅପରିଣତ ବୟସରେ ସୁଦ୍ଧା ସାମାଜିକ ଓ ରାଜନୈତିକ କ୍ଷମତାର ଗୋଡ଼ାଣିଆ ହେବା ପାଇଁ ବ୍ୟାକୁଳ ହୋଇପଡ଼ନ୍ତି । ସେପରିସ୍ଥଳରେ ଶିକ୍ଷକଙ୍କ ସ୍ଥାନ ଷର୍ଣକାତର ହୋଇପଡ଼େ । ସେ ତ ବିଭିନ୍ନ factor ମଧ୍ୟରୁ ଅନ୍ୟତମ ଏବଂ ନିଜ ରକ୍ଷଣ ବିପଦସଙ୍କୁଳ ହୋଇଥିବାରୁ ପରୀକ୍ଷାରେ ଅକୃତକାର୍ଯ୍ୟ ଛାତ୍ରମାନଙ୍କ ପାଇଁ କେତେ ଦାୟୀ ରହିବେ ? ଏହା ମଧ୍ୟ ହୃଦୟଙ୍ଗମ କରିବାର କଥା ଯେ ଶିକ୍ଷକଙ୍କ କର୍ମ-କୁଶଳତା (teachers' effectiveness) ଅନେକ ଗୁଡ଼ିଏ factor ଉପରେ ନିର୍ଭର କରେ; ତନ୍ମଧ୍ୟରୁ ଶିକ୍ଷକ ନିଜେ, ଶିକ୍ଷାର୍ଥୀ ଓ ପାଠ୍ୟକ୍ରମ ହେଉଛି ମୁଖ୍ୟ ନିରୂପକ । ଏହା ମନୋବିଜ୍ଞାନ ଓ ଶିକ୍ଷାର ଗବେଷଣାର ଫଳ ।

ଅତଏବ ଏପରିସ୍ଥଳରେ ପିଲାମାନେ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ, ଶିକ୍ଷକ କେତେ ଦାୟୀ-ଏହି ମୂଳପ୍ରଶ୍ନର ଉତ୍ତର ଭାବରେ ଶିକ୍ଷକ ପୂରାପୂରି ଦାୟୀ ବୋଲି କହିବା ଠିକ୍ ନୁହେଁ । ଏହି ଉତ୍ତର ଭୁଲ, କାରଣ (୧) ଛାତ୍ରଛାତ୍ରୀ ଘୋଷବନ୍ତଂ ବଳବନ୍ତଂ ନୁହନ୍ତି । କଣ୍ଠସ୍ଥୀକରଣ ଆଜିର ସମର୍ଥିତ ପଦ୍ଧତି ନୁହେଁ । ବଟିକା ଗିଳାଇବା ଆଜି ଶିକ୍ଷାର କାର୍ଯ୍ୟ ନୁହେଁ, ଏଥିପାଇଁ ଶିକ୍ଷାଶାସ୍ତ୍ରର ସମର୍ଥନ ନାହିଁ ଓ ସାମାଜିକ ଆବଶ୍ୟକତା ନାହିଁ । (୨) ଶିକ୍ଷା ମଧ୍ୟ (କେବଳ)only inter information ନୁହେଁ । ବନ୍ଧୁକ ଭିତରେ ବାରୁଦ ଠୁଙ୍କିବାର ପ୍ରକ୍ରିୟା ନୁହେଁ । (୩) ଶିକ୍ଷକଙ୍କ ଆଧିପତ୍ୟ ଗ୍ରହଣୀୟ ନୁହେଁ । (୪) ସେ ଏକମାତ୍ର ନିୟାମକ

ନୁହଁନ୍ତି । (୫) ସାମାଜିକ ସ୍ଥିତି, ସମର୍ଥନ ଓ ସମ୍ପର୍କ ସିଧାସଳଖ ଓ ସରଳ ନୁହେଁ । ଆହୁରି ମଧ୍ୟ ଦ୍ୱିତୀୟ ଉତ୍ତର-ପିଲାମାନଙ୍କ ବୟୋବୃଦ୍ଧି ସଙ୍ଗେ ସଙ୍ଗେ ପିଲାଙ୍କ ଅକୃତକାର୍ଯ୍ୟତା ପାଇଁ ଶିକ୍ଷକଙ୍କ ଦାୟିତ୍ୱ କମିଯାଏ । ଉଲ୍ଲିଖିତ ଆଲୋଚନାରୁ ଏହା ପ୍ରମାଣିତ ହୁଏ । ଶିକ୍ଷକଙ୍କ ଦାୟିତ୍ୱ ରହିଛି ଓ ଏହା ସର୍ବନିମ୍ନ ଶୂନ୍ୟରୁ ସର୍ବାଧିକ ଶହେ ହୋଇପାରେ । ପ୍ରଥମ ଦୁଇଟି ଉତ୍ତରରେ ସମସ୍ତ ଶିକ୍ଷକଙ୍କୁ ଗୋଟିଏ ଡଙ୍ଗାରେ ଭସାଇ ଦିଆଯାଉଛି । ଏ ପ୍ରକାର generalisation ବଡ଼ ତରବରିଆ ହେଉଛି ଓ ଏଥିରେ ଶିକ୍ଷାର ଓ ସମାଜର ସ୍ଥିତିକୁ ପୂରାପୂରି ବିଚାରକୁ ନିଆଯାଉ ନାହିଁ । ସବୁ ଶିକ୍ଷାୟତନ, ଶିକ୍ଷାର୍ଥୀ, ଶିକ୍ଷକ, ପ୍ରଶାସକ, ଅଭିଭାବକ ଆଦି factor ଗୁଡ଼ିକ ସମାନ ନୁହନ୍ତି । ଆଦିବାସୀ, ହରିଜନ, ଗ୍ରାମାଞ୍ଚଳ ସହିତ ସହରାଞ୍ଚଳ ସମାନ ନୁହେଁ । ପିଲାଏ ଅଛନ୍ତି ଯାହାଙ୍କ ଘରେ ପ୍ରତିଦିନ ପ୍ରଥମାଷ୍ଟମୀ ଓ ଅନ୍ୟ କେତେକ ଅଛନ୍ତି ଯେଉଁମାନେ ପ୍ରଥମାଷ୍ଟମୀର ନାଁ ଶୁଣିଛନ୍ତି । ଏପରି ଅଭିଭାବକ ଅଛନ୍ତି ଯାହାଙ୍କ ଘରେ T.V, ରେଡ଼ିଓ ମାତ୍ର ଖେଳନା ହେବା ସ୍ଥଳେ ଅନ୍ୟମାନଙ୍କ ପାଇଁ ଏସବୁ ପିଲାଙ୍କ ସ୍ୱପ୍ନ । ପିଲେ ଅଛନ୍ତି, ଯେଉଁମାନେ ଦୁଧ, ଦହି, ଲହୁଣୀ ଓ ଛେନା ଥୁ ଥୁ କରନ୍ତି ଓ କେଉଁ ଗାଈ ଆମକୁ ଘିଅ ଦିଅନ୍ତି ଏହି ସନ୍ଦେହରେ ପଡ଼ି ଶିଶୁସଂଖାଳି ଓ ଜ୍ଞାନକୋଷ ଅଣ୍ଡାଳନ୍ତି । ଅନ୍ୟ କେତେକ ପିଲା ଗାଈଗୋରୁଙ୍କ ସେବା କରି ପାଠରେ ଅବହେଳା କରି ଶିକ୍ଷକଙ୍କ କୋପଦୃଷ୍ଟିରେ ପଡ଼ନ୍ତି ସତ, ତାଙ୍କ ପାଟିରେ ଟୋପାଏ ଦହି, ଦୁଧ, ଘିଅ ବାଜି ନାହିଁ । କଳାପଟା ଅଭାବରୁ ଫୁଲଖଡ଼ି ଅକାମୀ ହୋଇଥାଏ । ଆଉ କେତେକ ସ୍କୁଲରେ ଫୁଲଖଡ଼ି ନ ଥିବାରୁ କଳାପଟାରେ ଗାର ପଡ଼େ ନାହିଁ । ଉଭୟକୁ ଯଥାଯଥ ଯୋଗାଇ ଦିଆଯାଇଥିଲେ ହେଁ ଏସବୁର ଶିକ୍ଷାପ୍ରଦ ବ୍ୟବହାର ଆଦୌ ହୋଇ ନ ପାରେ । ଏହିପରି ବିଭିନ୍ନତା ସତ୍ତ୍ୱେ ଆମ ପାଠ୍ୟକ୍ରମ ପ୍ରଣାଳୀ, ମୂଲ୍ୟାୟନ ଶିକ୍ଷା ବାସ୍ତବତା ଅଭିମୁଖୀ ହୋଇ ଏହା ମଧ୍ୟ ପ୍ରମାଣ କରାଯାଇପାରେ ଯେ ଶିକ୍ଷାର ଯେ କୌଣସି ସମସ୍ୟା ସମ୍ପୂର୍ଣ୍ଣ ଶିକ୍ଷାଗତ ନୁହେଁ । ଏହାର ବହୁବିଧ କାରଣ ରହିଛି । ସେସବୁ ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ଶିକ୍ଷାଗତ ହୋଇପାରେ । ତେଣୁ ପିଲାଏ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ସେଥିପାଇଁ ଶିକ୍ଷକଙ୍କୁ ପୂରାପୂରି ଦାୟୀ କରିହେବ ନାହିଁ । ଦାୟିତ୍ୱର ମାପକାଠିକୁ ଶୂନ୍ୟରୁ ଏକଶତ ଯାଏଁ ରେଖାଙ୍କିତ କରାଗଲେ ସ୍ଥଳବିଶେଷରେ ଏହି Continuum ମଧ୍ୟରେ ପଡ଼ିବ । ପ୍ରତ୍ୟେକ ଶ୍ରେଣୀର ପ୍ରତି ଛାତ୍ରଛାତ୍ରୀଙ୍କ ଅକୃତକାର୍ଯ୍ୟତାକୁ ବିଚାର କରି ଶିକ୍ଷକଙ୍କ ଦାୟିତ୍ୱ ସ୍ଥିର କରାଯିବ । ଶିକ୍ଷକ ସମାଜକୁ ବିଚାର ନ କରି ଜଣ ଜଣ ଶିକ୍ଷକଙ୍କୁ ସ୍ୱତନ୍ତ୍ର ଭାବରେ ଧରାଯିବ ।

ଏହି ଉତ୍ତରକୁ ଆହୁରି ଯାଞ୍ଚ କରିବା । ପ୍ରଶ୍ନରେ ପ୍ରଚଳିତ ପରୀକ୍ଷା ବିଷୟ ଉଲ୍ଲେଖ କରାଯାଇଛି । ପରୀକ୍ଷାରେ ଅକୃତକାର୍ଯ୍ୟ ହେବା ପ୍ରସଙ୍ଗ ରହିଛି । ଏବର

ପରୀକ୍ଷା ସମସ୍ତ ବିଶ୍ୱସ୍ତତା ହରାଇଛି । ୧୯୪୭ ମସିହାରୁ ଏବଂ ଏହା ପୂର୍ବରୁ ବିଭିନ୍ନ କମିଟି ଓ କମିଶନ୍ ଯଦି ଗୋଟିଏ ସିଦ୍ଧାନ୍ତରେ ଏକମତ, ତାହା ହେଉଛି ପରୀକ୍ଷାର ସଂସ୍କାର । ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ୍‌ଙ୍କ ମତରେ ଯଦି ଗୋଟିଏ ଶିକ୍ଷା ସଂସ୍କାର ବିଷୟରେ ସୁପାରିଶ କରାଯିବ, ତେବେ ଏହା ହିଁ ପରୀକ୍ଷାର ସଂସ୍କାର । ମୂଲ୍ୟାୟନ ଶିକ୍ଷାର ଅବିଚ୍ଛେଦ୍ୟ ଅଙ୍ଗ, କିନ୍ତୁ ସେଥିପାଇଁ ଏବର ପରୀକ୍ଷା ପଦ୍ଧତିକୁ ଚାଲୁ କରିହେବ ନାହିଁ । ଏହାର ବିଭୀଷିକା ଓ ବିଭତ୍ସତା ଦିନକୁ ଦିନ ମନୁଷ୍ୟ କଳ୍ପନାତୀତ ହେଉଛି । ଆମ୍ଭମାନଙ୍କ ସ୍ୱାର୍ଥ, ପ୍ରତିଶୋଧପଣିଆ ଓ ପ୍ରଚଳିତ କର୍ତ୍ତୃତ୍ୱର ଅବସ୍ଥା ଏପରି ଜଡ଼ିତ ଯେ କୌଣସି ସଂସ୍କାର ଆମେ କାର୍ଯ୍ୟକାରୀ କରିପାରୁ ନାହିଁ । ଗତବର୍ଷ ଆମ ମାଧ୍ୟମିକ ଶିକ୍ଷା ପରିଷଦଙ୍କ ଆହ୍ୱାନକ୍ରମେ Too Good To be Executed ଶୀର୍ଷକ ପ୍ରବନ୍ଧଟିଏ ଲେଖିଥିଲି । ପରୀକ୍ଷା ସଂକ୍ରାନ୍ତ ସୁପାରିଶଗୁଡ଼ିକ ଏତେ ଉପାଦେୟ ଯେ ଏହାକୁ କାର୍ଯ୍ୟକାରୀ କରିହେବ ନାହିଁ । ଏହା ଆପଣମାନଙ୍କ ଦୃଷ୍ଟିକୁ ଆସିଥିବ । କୌଣସି ସ୍ଥଳରେ ପରୀକ୍ଷାର ପ୍ରତ୍ୟନୁଭବ (feed-back) ଆମେ ଚିନ୍ତାକରୁ ନାହିଁ । ଏ ସମ୍ବନ୍ଧରେ ୩/୪ ଗୋଟି ପ୍ରବନ୍ଧ ଗୋଟିଏ ପରେ ଗୋଟିଏ ଆମ ମାଧ୍ୟମିକ ଶିକ୍ଷା ପରିଷଦର ପତ୍ରିକାରେ ମୁଁ ଲେଖିଥିଲି । ଏହାର ଶୀର୍ଷକ ଥିଲା, "ବୋର୍ଡ ପରୀକ୍ଷାର ପରୀକ୍ଷା" । ଏ ବିଷୟରେ ଆପଣମାନେ ଓଷ୍ଠ ଆନୁକୂଲ୍ୟରେ ଅନେକ ଆଲୋଚନା କରିଛନ୍ତି । ମୋର ଆନନ୍ଦ, ମୁଁ ସେଥିରେ ମୋର ଅଭିମତ ପ୍ରକାଶ କରିଛି । ଏହା ବର୍ତ୍ତମାନ ଭୟାବହ, ଅନିଶ୍ଚିତ ଓ ଅବିଶ୍ୱସ୍ତ ହୋଇପଡ଼ିଛି । ପ୍ରଥମ ଶ୍ରେଣୀର ଛାତ୍ର ତୃତୀୟ ଶ୍ରେଣୀରେ ପାଶ୍ କରୁଛନ୍ତି କିମ୍ବା ଫେଲ୍ ହେଉଛନ୍ତି । ଠିକ୍ ଓଲଟା ବି ଘଟୁଛି । ସ୍ତୂପୀକୃତ ଅଶାନ୍ତିର ବିସ୍ଫୋରଣ ହାବେଳୀର ହାରପରି ଆମ ଆଖିକୁ ଝଲସାଇ ଦେଉଛି । କର୍ମକ୍ଷମ, ସାଧୁ ଓ ସଚ୍ଚରିତ୍ର ଶିକ୍ଷକ କିଂକର୍ତ୍ତବ୍ୟବିମୂଢ଼ ହୋଇ ଘରକୋଣରେ ଲୁଚିଲେଣି । ସେପରି ଅବସ୍ଥାରେ ଏହି ମାପକାଠି ଆମ ବିଶ୍ୱାସ ତୁଟିଗଲାଣି । ଆମେ ନିର୍ଭର କରିପାରୁ ନାହିଁ, ଏହି ନିକିତିର ନିଷ୍ପତ୍ତି ଉପରେ ଆମେ କେଉଁ ପିଲାଙ୍କୁ ଅକୃତକାର୍ଯ୍ୟ ବୋଲି କହିବା ? କେଉଁ ଶିକ୍ଷକଙ୍କୁ ଆମେ କିପରି କେତେଦୂର ଦାୟୀ କରିବା ? ଆମ ପ୍ରଶ୍ନଟି ଭୁଲ ବୋଲି ମୁଁ ମନେ କରୁଛି । ଅନ୍ଧାରଘରେ ବାଡ଼ି ବୁଲାଇବା ପରି ଲାଗୁଛି । ଅଣ୍ଟି ଛୁରି ତଣ୍ଟି କାଟୁଛି, ଅଥଚ ତଣ୍ଟିକଟା ଡାକୁକୁ ଧରିବା ପାଇଁ ଆମେ ଘରେ ଘରେ ଥାନାର ହାଟ ବସାଇଛୁ । ଏହା ଏକ ଚକ୍ଷୁକୁଟା ପ୍ରହସନ ଓ କୁହୁଡ଼ି ପହଁରା, ଏଥିରେ କେହି ଧରାପଡ଼ିବେ ନାହିଁ । ମୁଗୁରା ମୁହଁ ମେଲା, ରାତି ଉଜାଗର ହେଲେ କଅଣ ହେବ, କରାଣ୍ଡିଟେ ବି ଧରାପଡ଼ିବେ ନାହିଁ ।

ଆଉଗୋଟେ ଶବ୍ଦ 'ଅକୃତକାର୍ଯ୍ୟ', ଏହାର ବିଶ୍ଳେଷଣ କରିବା । ଅକୃତକାର୍ଯ୍ୟର ଅର୍ଥ କଅଣ ? ଦଶମ ଶ୍ରେଣୀ ପାଶ୍ ପରେ ଶତକଡ଼ା ୫୦ ଭାଗ

working force ଯୋଗ ଦେବାର କଥା । ତେଣୁ ଦଶମ ଶ୍ରେଣୀକୁ ଉଭୟ terminal ଓ preparatory କରିବାର କଥା । ତେଣୁ ଛାତ୍ରଛାତ୍ରୀ ସୁନାଗରିକ ହେବେ, ସେମାନେ ଜୀବନବ୍ୟାପୀ ଶିକ୍ଷାର୍ଥୀ ହୋଇ ରହିବେ । ସମାଜର କଲ୍ୟାଣ ଦୃଷ୍ଟିରୁ ସେମାନେ ଉତ୍ପାଦନକ୍ଷମ ମଧ୍ୟ ହେବେ । ପରିବାର ଓ ପ୍ରତିବେଶୀ ପାଇଁ ସେମାନେ ସୁମନୁଷ୍ୟ ହେବେ । ଏହି ଚାରୋଟି ଭୂମିକା ପାଇଁ ସେମାନଙ୍କୁ ପ୍ରସ୍ତୁତ କରାଯିବା ଉଚିତ । ସାଫଲ୍ୟର ଦିଗ୍‌ଦର୍ଶନ ଏଥିରୁ ମିଳିବା ଉଚିତ, କିନ୍ତୁ ଆମ ପାଠ୍ୟକ୍ରମ, ପରୀକ୍ଷା ଓ ଶିକ୍ଷାଦାନରେ ଏସବୁ ନିଶ୍ଚିତଭାବରେ ପ୍ରତିଫଳିତ ହୁଏ ନାହିଁ । ଏସବୁ criterionକୁ ଆଖି ଆଗରେ ରଖି କୃତକାର୍ଯ୍ୟତାର ବିଚାର ଆମେ କରୁ ନାହିଁ ।

"କୃତକାର୍ଯ୍ୟ" ଓ ଅକୃତକାର୍ଯ୍ୟର ସୀମାରେଖାରୂପେ ଶତକଡ଼ା ୩୦ ଓ ୨୯ ରଖାଯାଇଛି । ଏହି ସୀମା ସରହଦ ସ୍ଥିତ କରିବାକୁ କେନ୍ଦ୍ରୀୟ ମୂଲ୍ୟାୟନ ଏବେ ଚାଲୁଛି । ଏହାର ନିଷ୍ଠା, ପବିତ୍ରତା ଓ ବିଚାରପଣିଆ ଆଜି ବହୁଭାବରେ ପ୍ରଶ୍ନବାଚୀ, ସଫଳତା ଓ ବିଫଳତାର ଷ୍ଟାମ୍ପ୍ ମାରିଦେବା ଫଳରେ କେତେ ଧନଜୀବନର କ୍ଷୟ ଘଟୁଛି ଓ ଆମ ଷ୍ଟାମ୍ପ କେତେ ନ୍ୟାୟ ସହିତ କରାଯାଇଛି-ଏହା ଆମେ ଭାବୁଛୁକି ? ପରପୁଅ ମଲା, ରୋଗ ବାଟେ ବାଟେ ଗଲା, ନ୍ୟାୟରେ ଭୁଲିଯାଉଛୁ । ଆମ ପୁଅବେଳକୁ ଖୋଳ ପରବତ, ମାର ମୂଷା ହୋଇଯାଉଛି । ପ୍ରତିଟି ପିଲାର ଅସୀମ ପ୍ରତିଭାର ଅଜ୍ଞାତ ଅଧ୍ୟାୟ କିଏ ଦେଖୁଛି ନା ଦେଶ କଥା କିଏ ଭାବୁଛି ? ଏହି ଦୁଇଟି blending ହେବାର କଥା । ଏହାହିଁ ହୁଅନ୍ତା ସର୍ବାଙ୍ଗୀନ ବିକାଶ, ଚରିତ୍ର ଗଠନ-ଯାହାକି ସମସ୍ତ ଶିକ୍ଷାର ଲକ୍ଷ୍ୟ ।

ପୂର୍ବକାଳରେ ପିଲେ ବିଭିନ୍ନ ବିଷୟରେ ଯେଉଁ ନମ୍ବର ପାଉଥିଲେ, ତାହା ମୁଖ୍ୟତଃ ଶିକ୍ଷାର୍ଥୀଙ୍କ ଅଧ୍ୟୟନ ଉପରେ ନିର୍ଭର କରୁଥିଲା । ଯେମିତି ଚୂନାକୁ ସେମିତି ପିଠାପରି, ଯେମିତି ପାଠକୁ ସେମିତି ନମ୍ବର ବୋଲି କୁହାଯାଉଥିଲା । ଏହା ଅବଶ୍ୟ ଅତିରଞ୍ଜିତ, କିନ୍ତୁ ଅସଲ କଥାଟି ହେଲା ପରୀକ୍ଷାରେ କୃତକାର୍ଯ୍ୟ ହେବାପାଇଁ ପରିଶ୍ରମ କରିବାକୁ ପଡ଼ିବ । କିନ୍ତୁ ଆଜିକାଲି ଏହା ସାଙ୍ଗକୁ ଯୋଗ କରାଯାଇଛି, ପ୍ରଶ୍ନକୁ ଆଗରୁ ଜାଣିବା ବା ଅନୁମାନ କରିବାର ଦକ୍ଷତା ପରୀକ୍ଷାକେନ୍ଦ୍ରରେ ହାତସଫାଇ କରିବାର ସାହସ ଓ କୌଶଳ । ପରୀକ୍ଷକଙ୍କୁ ଧରିବାର ଚାତୁରି ମଧ୍ୟ ଆବଶ୍ୟକ, କେନ୍ଦ୍ରୀୟ ମୂଲ୍ୟାୟନରେ ବଜ୍ର କିଳିଣୀ ଲଗାଇଲେ ସୁଦ୍ଧା ପରୀକ୍ଷିତ ମହାରାଜାଙ୍କୁ ସର୍ପ ଦଂଶନ କଲାପରି ପରୀକ୍ଷକମାନେ ଟଳି ପଡୁଛନ୍ତି । ଏହାଛଡ଼ା ଟେବ୍ୟୁଲେଟର ବା ଅଫିସ ସ୍ତରରେ କିଛିଟା ଧରପଗଡ଼ କରିବାର ସମ୍ଭାବନା ରହିଛି । ତେଣୁ କିଏ କିପରି କୃତକାର୍ଯ୍ୟ ହେଲେ କହିବା ମୁସ୍କିଲ ହେଉଛି । ଶିକ୍ଷକ ବା କେତେଦୂର ଦାୟୀ ହେବେ ? ଆଜିକାଲି ଅନେକ କ୍ଷେତ୍ରରେ

ହାଇସ୍କୁଲ ପରୀକ୍ଷାରେ ନହେବା ହେଉଛି, ହେବା ନ ହେଉଛି, ହେଉ ହେଉ ଯାହା ଦେଉଛି ।

ଏପରିସ୍ଥଳରେ କୃତକାର୍ଯ୍ୟ ହେବାପାଇଁ ଆଖିବୁକି ବାଡ଼ି ବୁଲାଇବାକୁ ପଡୁଛି । ପାଠ୍ୟକ୍ରମ ଛାଡ଼ି ପାଠ୍ୟପୁସ୍ତକ, ଯାକୁ ଛାଡ଼ି ମାନେବହି ଓ ଶେଷରେ ସମ୍ଭାବ୍ୟ ପ୍ରଶ୍ନ ଦେଖିଦେଲେ ହେବ । କର୍ମାନୁଭୂତି ପୁଣି କର୍ମବିମୁଖତାକୁ ଫେରିଆସିଲାଣି । ଯେ କୌଣସିହାତ କାମ ହାତ ସଫେଇରେ ହେଉଛି । ସମାଜରେ ବର୍ତ୍ତମାନ ହୁରି ପଡିବାର ଦେଖାଯାଉଛି କେତେ କାମ କରି କେତେ ବେଶୀ ଆୟ କରିହେବ ? ଲିଖିତ କାମ ଓ ସଂଶୋଧନ ଏକ ପୁରୁଣା କାଳିଆ ଶୃଙ୍ଖଳା । ମୂଲ୍ୟବୋଧ ବି ହାସ୍ୟାସ୍ପଦ ହେଲାଣି । ଏ ସବୁର ପୁନଃବିଚାର ଆବଶ୍ୟକ ।

ଏହି ପ୍ରବନ୍ଧର ଉପସଂହାର କରିବା ପୂର୍ବରୁ ପରୀକ୍ଷା ଓ ପରୀକ୍ଷାର୍ଥୀଙ୍କ ବିଷୟରେ ସଂକ୍ଷିପ୍ତ ସୂଚନା ଦେବା ଆବଶ୍ୟକ । ଏଥି ପୂର୍ବରୁ ଆଲୋଚନାର ବିଭିନ୍ନ ପର୍ଯ୍ୟାୟରେ ପରୀକ୍ଷା ସମ୍ବନ୍ଧରେ ଆଲୋକପାତ କରାଯାଇଛି । ଶିକ୍ଷା ପଦ୍ଧତିର ଅବିଚ୍ଛେଦ୍ୟ ଅଙ୍ଗଭାବରେ ପରୀକ୍ଷା ପଦ୍ଧତିକୁ ଗ୍ରହଣ କରାଯାଇଥିବା ସତ୍ତ୍ୱେ ପରୀକ୍ଷା ନିଜ ପ୍ରଭୁତ୍ୱ ଜାହିର କରିଛି । ଅପରନ୍ତୁ ଅନେକ ସ୍ଥଳରେ ଶିକ୍ଷା ପଦ୍ଧତି ଦୋଷ ଦୁର୍ବଳତା ଦ୍ୱାରା ପ୍ରଭାବିତ ହୋଇ ଶିକ୍ଷା ଯୋଜନାର ସଂସ୍କାରରେ ଅନ୍ତରାୟ ସୃଷ୍ଟି କରୁଛି । ମୋଟା ମୋଟି ଭାବରେ ଦେଖିବାକୁ ଗଲେ ଶିକ୍ଷା, ପଇସା ଓ ପ୍ରତିପତ୍ତିର କରାୟତ୍ତ ହୋଇ ସମ୍ପୂର୍ଣ୍ଣ କବଳିତ ହୋଇଛି । ଗୋଟିଏ ଗଣତାନ୍ତ୍ରିକ, ସମାଜବାଦୀ ଓ ଧର୍ମନିରପେକ୍ଷ ରାଷ୍ଟ୍ରର ସାଧନ ଭାବରେ ଜନଜୀବନକୁ ପର୍ଯ୍ୟାପ୍ତ ଭାବରେ ପ୍ଳାବିତ କରି ପାରି ନାହିଁ । ମୁଷ୍ଟିମେୟ ଆଭିଜାତ୍ୟ ଶ୍ରେଣୀର ଲୋକମାନେ ମଜା ମାରି ନେଉଛନ୍ତି । ଅଗଣିତ ଜନତା ଜାତୀୟ ଚେତନାରୁ ଦୂରେଇ ଯାଉଛନ୍ତି ଓ ଆପଣାକୁ ହୀନ, ଦୁର୍ବଳ ଓ ଅପାଙ୍‌କ୍ତେୟ ଭାବରେ ଗ୍ରହଣ କରିନେଇଛନ୍ତି । ସାମାଜିକ ଜୀବନରେ ମଧ୍ୟ ସେହିସବୁ ଉଦ୍‌ଘୋଷିତ ଉଦ୍ଦେଶ୍ୟ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ବିଭାଗରେ ପ୍ରତିଫଳନ ନ ହେବା ଦ୍ୱାରା ଶିକ୍ଷା ଆଶାନୁରୂପ ଜନସମର୍ଥନ ପାଇପାରି ନାହିଁ ଏବଂ ସାମାଜିକ ବିକାଶର ଅନ୍ୟତମ ଦିଗରେ ମୁଣ୍ଡଟେକି ପାରି ନାହିଁ । ପକ୍ଷାନ୍ତରରେ ଜନଜୀବନ ବିକାଶର ଏକ ବଳିଷ୍ଠ ସାଧନ ଭାବରେ ନୀରବ ସାମାଜିକ ବିପ୍ଳବ ବା ସମଗ୍ର କ୍ରାନ୍ତିପାଇଁ ଆବଶ୍ୟକ ପାଣିପାଗ ତିଆରି କରିପାରି ନାହିଁ । ଏହାର ସୁଯୋଗ ନେଇଛି ପରୀକ୍ଷା ଏବଂ ଶିକ୍ଷକ ନୀରବଦ୍ରଷ୍ଟା ଭାବରେ ଚାହିଁ ରହିଛନ୍ତି । ତାଙ୍କ ଦାୟିତ୍ୱ ଆସିବ କେଉଁଠୁ ଓ କାହିଁକି ସେ ମଧ୍ୟ ନିଜର ଅଭିକ୍ରମ, ଅଭିନିବେଶ ଓ ସ୍ୱାଭିମାନକୁ କଚ୍ଛପ ସଦୃଶ ଲୁକାୟିତ କରିବେ ନାହିଁ କାହିଁକି ?

ବର୍ତ୍ତମାନ ଆମ ପିଲାଙ୍କ କଥା ଏହି ପ୍ରସଙ୍ଗରେ ବିଚାରିବା। ସେମାନେ ହେଉଛନ୍ତି ଦଶମ ଶ୍ରେଣୀ ଯାଏଁ ଆମ ସ୍କୁଲର ଛାତ୍ରଛାତ୍ରୀ। ସେମାନଙ୍କ ସମ୍ବନ୍ଧରେ ଆମର ଓ ଆମ ଅଭିଭାବକମାନଙ୍କର ଅନେକସ୍ଥଳରେ କିମ୍ଭୂତକିମାକାର ଧାରଣା ରହିଛି। ତନ୍ମଧ୍ୟରୁ କେତୋଟି ହେଉଛି, (୧) ଏମାନେ ଅତି ଛୋଟ, ଦାୟିତ୍ୱ ନେଇପାରିବେ ନାହିଁ ତେଣୁ ଏମାନଙ୍କ ପାଇଁ ସବୁ କାମ କରି ଦିଆଯିବ। ଏହା ଅତ୍ୟଧିକ ପିତୃପଣିଆର ନିଦର୍ଶନ। ସମସ୍ୟା ଦିଆଗଲେ, ଏମାନେ ସମସ୍ୟା ସମାଧାନମୂଳକ ଚିନ୍ତା କରିପାରିବେ। ପିଲାଙ୍କ ପରିସର ଅନୁରୂପ ସମସ୍ୟା ଓ ଏହାର ଭାଷା ହେବା ଉଚିତ, (୨) ବହି ଘୋଷିବା ଏମାନଙ୍କ ପାଇଁ ଉପଯୁକ୍ତ ପ୍ରଣାଳୀ ଓ କାର୍ଯ୍ୟ। (Non-scholastic) ଏବଂ (Practical) କାର୍ଯ୍ୟ ଅନାବଶ୍ୟକ। ଶିଶୁ ପ୍ରକୃତିର ଏହା ପ୍ରତିକୂଳ ବିଚାର। ସ୍କୁଲଶିକ୍ଷା ପୁସ୍ତକ କୈନ୍ଦ୍ରିକ ହେବା ଫଳରେ ଶିଶୁର ସର୍ବାଙ୍ଗୀନ ବିକାଶ ହୋଇପାରୁ ନାହିଁ। ବୁଝିବା, ବିଚାରିବା, ଚିନ୍ତା କରିବା ଆଲୋଚନା କରିବା ଆଦି ଉପରେ ଅଧିକ ଗୁରୁତ୍ୱ ପାଠପଢ଼ାରେ ଓ ପରୀକ୍ଷା ପ୍ରଶ୍ନରେ ରହିବ। (୩) ଏମାନେ ବିଭିନ୍ନ ସ୍କୁଲର ହେଲେହେଁ ସର୍ବତ୍ର ସମାନ, ତେଣୁ ଏମାନଙ୍କ ପାଇଁ ପାଠ୍ୟପୁସ୍ତକ ପ୍ରଣାଳୀ, ପରିଦର୍ଶନ ଓ ପରୀକ୍ଷା ଏକପ୍ରକାର କରାଯିବ। ମନୋବିଜ୍ଞାନର ସମସ୍ତ ସିଦ୍ଧାନ୍ତ ଏପ୍ରକାର ଉଦ୍ଭଟ ଚିନ୍ତାର ପ୍ରତିକୂଳାଚରଣ କରେ। ସେଥିପାଇଁ ପାଠ୍ୟକ୍ରମ ଆଦିର ବିକେନ୍ଦ୍ରୀକରଣ କରାଯାଇ ସମସ୍ତ କାର୍ଯ୍ୟକ୍ରମକୁ ସ୍ଥାନୀୟ ଅବସ୍ଥା ଦୃଷ୍ଟିରୁ ସୁନିର୍ଦ୍ଦିଷ୍ଟ କରାଯିବ। ଆଞ୍ଚଳିକ, ପାରିବାରିକ ଓ ଅର୍ଥନୈତିକ ବିଷମତା ଏତେ ସୁସ୍ପଷ୍ଟ ଯେ ଏଥିପ୍ରତି ଦୃଷ୍ଟି ନଦେବା, ଚକ୍ଷୁ ଥାଉ ଥାଉ ନଥିବାପରି ମନେ ହୁଏ। (୪) ଜୀବନଧାରଣ ସଂଗ୍ରାମରେ ଯେଉଁ ଅଭିଭାବକମାନେ ପେଷି ହୋଇ ହତବାକ୍ ହେଉଛନ୍ତି ତାଙ୍କ ପାଇଁ ଆଶାର ରଶ୍ମି ଓ ବାକ୍ୟ କେବେ ଶିକ୍ଷା ଦେଇପାରିବ କି ? ତାଙ୍କ ପିଲେ ଆମ ସ୍କୁଲକୁ କେଉଁ ଆଶାରେ ଆସିବେ ? ଦାନାକନା ଆତ୍ମମର୍ଯ୍ୟାଦାରୁ ସେମାନେ ବଞ୍ଚିତ। କିଛି ପ୍ରଲୋଭନରେ ପଡ଼ି ଆମ ସ୍କୁଲରେ ଯେଉଁମାନେ ପଢ଼ନ୍ତି କୃତକାର୍ଯ୍ୟ ହୁଅନ୍ତୁ ନ ହୁଅନ୍ତୁ ସେମାନେ ନିଜ ସମାଜରୁ ଦୂରେଇ ଯାଆନ୍ତି ଓ ଆମ ସମାଜ ସହିତ ମିଶି ପାରନ୍ତି ନାହିଁ। ସେମାନଙ୍କର ଯାଦୁକରୀ ଆଙ୍ଗୁଳିଗୁଡ଼ିକ ଶିକ୍ଷା ପାଇଁ ଅକାମୀ ହୋଇଯାଏ। ଏଠାରେ ପ୍ରଚଳିତ ଶିକ୍ଷା ଓ ପରୀକ୍ଷାର ପ୍ରାସଙ୍ଗିକତା ରହୁଛି କି ? ଏହି ଅପ୍ରାସଙ୍ଗିକ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକଙ୍କ ଭୂମିକା ମାତ୍ର ଏକ ପ୍ରହସନ। ଛାତ୍ରଛାତ୍ରୀମାନେ ପାଠର ବୋଝରେ ଶ୍ୱାସରୁଦ୍ଧ ହୁଅନ୍ତି। (୫) ଯେକୌଣସି ଶ୍ରେଣୀର ପିଲାମାନଙ୍କୁ ଏକାକାର ଭାବରେ ଆମ ପ୍ରଶାସକ ଓ ଆମେ ଶିକ୍ଷକ ଦେଖିବାରେ ଅଭ୍ୟସ୍ତ। ଏହା ଏକ ସହଜ ପନ୍ଥା ଓ ବହୁ ପରିଶ୍ରମ ତଥା ଚିନ୍ତାରୁ ଆମେ ରକ୍ଷା ପାଇଯାଉଁ। କାଦୁଅରେ କାହିଁକି

ପଶିବା ଓ ଗୋଡ଼ କାହିଁକି ଧୋଇବା ? ବୈଶିଷ୍ଟ୍ୟ ଓ ବିଭିନ୍ନତାର ବର୍ଣ୍ଣାଢ୍ୟ ସମ୍ଭାର ଆମେ ଉପଭୋଗ କରିପାରୁ ନାହିଁ । ସହରାଞ୍ଚଳ ବା ଗ୍ରାମାଞ୍ଚଳ ଯେଉଁଠି ସ୍କୁଲ ଥାଉ ପଛକେ, ପ୍ରତିଟି ପିଲା ଗୋଟିଏ ଗୋଟିଏ ଶ୍ରେଣୀ । ପାରିବାରିକ ପୃଷ୍ଠଭୂମି, ଆର୍ଥିକ ଓ ସାଂସ୍କୃତିକ ସ୍ଥିତିରେ ଜଟିଳତା ଶ୍ରେଣୀର ମଣ୍ଡନ କରେ । କାହା ବାପାଙ୍କ ମୁଣ୍ଡରେ ଖଡ଼ିଧୂଳି ପଡ଼ି ନଥାଏ, ଅଥଚ କାହା ବାପା ପାଠ ପଣ୍ଡିତ । କାହାର ରୋଷାଇ ଘର, ଖେତଖମାର ଆଦିରେ ବହୁ ଯନ୍ତ୍ରପାତି ଅଥଚ ଭୂମିହୀନ ଚାଷୀର ପିଲାଟି ଏସବୁ ଶୁଣିପାରି ନାହିଁ । ଶ୍ରେଣୀରେ ପ୍ରବେଶକୃତି ସମସ୍ତଙ୍କର ସମାନ ଓ ସମାନ ଗତିରେ ସବୁ ସାରାଜୀବନ ଚାଲନ୍ତି- ଏପରି ବୌଦ୍ଧିକ ଧୃଷ୍ଟତା ଆମର ସମ୍ପୂର୍ଣ୍ଣ ଅଜ୍ଞତା ପରିଚୟ ଦିଏ । ବିଭିନ୍ନ ବିଷୟରେ ଓ ପ୍ରତ୍ୟେକ ପାଠ୍ୟ ବିଷୟର ବିଭିନ୍ନ ପାଠରେ ସମସ୍ତଙ୍କୁ ସମାନ କରି ଆମ କର୍ତ୍ତୃତ୍ୱ ଜାହିର କରିବା ଶିକ୍ଷାରେ ହାସ୍ୟାସ୍ପଦ ଗଣତନ୍ତ୍ର ନୁହେଁ କି ?

ଅତଏବ ମୂଳ ପ୍ରଶ୍ନର ଉତ୍ତର କଅଣ ଦେବା ? କାହାକୁ ଦାୟୀ କରିବା ? ଆପଣମାନେ ଭାବନ୍ତୁ । ଏଠାରେ ଶେଷୋକ୍ତ କେତେକ ସୂଚନା ମଧ୍ୟ ବିଚାର କରନ୍ତୁ ।

୧ । ସବୁ ପୁସ୍ତକ ଓ କିଛି କାମ ନାହିଁ, ସବୁ Head କିନ୍ତୁ କିଛି Hand ଓ Heart ନାହିଁ, ଜୀବନ ଓ ଶିକ୍ଷାର ମତିଭ୍ରମ, ଏଥିରୁ ରକ୍ଷା ପାଇବାକୁ ହେବ ।

୨ । ଜାତୀୟ ଲକ୍ଷ୍ୟର ପରିସର ମଧ୍ୟରେ ପାଠ୍ୟକ୍ରମ, ପାଠ୍ୟପୁସ୍ତକ, ପରୀକ୍ଷା ଆଦିର ବିକେନ୍ଦ୍ରୀକରଣ ନିଷ୍ପତ୍ତି କରିବା ଓ ଆମେ ଭାବିଲେ କରିପାରିବା ।

୩ । ଶିକ୍ଷକ ସହଭାଗୀ ହେବେ, ଶିକ୍ଷାର ପ୍ରତ୍ୟେକ ସ୍ତରରେ । ସେଥିପାଇଁ ବୋର୍ଡ ବା ଅନ୍ୟାନ୍ୟ ସଙ୍ଗଠନରେ ଶିକ୍ଷକଙ୍କୁ ସଭ୍ୟ କରିବାର ସୂଚନା ଦେଉ ନାହିଁ । ସେ ରହନ୍ତୁ ଭଲ କଥା, କିନ୍ତୁ ଅଭିଜ୍ଞ ଶିକ୍ଷକଙ୍କୁ ବିଭିନ୍ନ ପର୍ଯ୍ୟାୟରେ ଜଡ଼ିତ କରାଯିବ ।

୪ । ପରୀକ୍ଷାଟି ସହାୟକ ସାଧନ ନ ହୋଇ ସଇତାନ ହୋଇଛି । କିଛିଦିନ ପାଇଁ ପରୀକ୍ଷା କଥା ଭୁଲି ଶିକ୍ଷାଦାନ ଉପରେ ଆମ ଟିପ ଜୋର୍ କରିବା ।

୫ । ଶିକ୍ଷାରେ ଓ ପରୀକ୍ଷାରେ ନବପ୍ରବର୍ତ୍ତନ ପାଇଁ ଶିକ୍ଷକଙ୍କୁ ଉତ୍ସାହିତ ଓ ପୁରସ୍କୃତ କରିବା । ପରୀକ୍ଷାକୁ ହଟାଇ ଆମ ସନ୍ତୋଷଜନକ ବ୍ୟବସ୍ଥା ଯେଉଁ ଶିକ୍ଷକ କରିବେ ତାଙ୍କ ସହିତ ମିଶି ସ୍ଥିର କରିବା ।

୬ । ଶିକ୍ଷାଦାନ ଓ ଶିକ୍ଷାର୍ଥୀଙ୍କ ପ୍ରତି ଶିକ୍ଷକଙ୍କର କିପରି ଉତ୍ସର୍ଗୀକୃତ ମନୋଭାବ ରହିବ-ଏହାକୁ କାର୍ଯ୍ୟକାରୀ କରିବା ।

୭ । ଶିକ୍ଷକ ସଙ୍ଗଠନଙ୍କ ସହିତ ଏକାତ୍ମ ହୋଇ କାମ କରିବା ।

୮ । ଆଞ୍ଚଳିକ ସ୍ତରରେ ଶିକ୍ଷାବିକାଶ କ୍ଷେତ୍ର ସୃଷ୍ଟି କରି ଶିକ୍ଷକ, ଶିକ୍ଷକ ସଂଗଠନ, ଅଭିଭାବକ ଓ ପ୍ରଶାସକ ସମବାୟ ରଚନା କରିବା ।

୯ । ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ଅଭିଜ୍ଞତାର ବ୍ୟାଙ୍କ୍ (Experience Bank) ଗଠନ କରାଯିବ ।

୧୦ । ପାଠ୍ୟ ପୁସ୍ତକ ଓ ପରୀକ୍ଷା ପ୍ରଶ୍ନର ପ୍ରସ୍ତୁତି ଆଞ୍ଚଳିକ ଭିତ୍ତିରେ ବିଭିନ୍ନ ସେଟ୍‌ରେ କରାଯିବ । ଶିକ୍ଷକ ସହାୟକ ପୁସ୍ତକ ଓ ପିଲାଙ୍କ (Work Book, Reference Book) ଆଦି ରଚନା କରାଯିବ । ପ୍ରଦୂଷଣ ନିୟନ୍ତ୍ରଣ, ବନୀକରଣ, ଜନସଂଖ୍ୟା ବିସ୍ଫୁରଣ, ଜାତୀୟ ସଂହତି, ମୂଲ୍ୟବୋଧ ଶିକ୍ଷା, ଆନ୍ତର୍ଜାତିକ ସଦ୍ଭାବ ଆଦି ଜାତୀୟ ଏବଂ ବିଶ୍ୱ-ସମସ୍ୟା ଆଧାରିତ ପୁସ୍ତକ ରଚନା କରାଯାଇ ଯୋଗାଇ ଦିଆଯିବ ।

୧୧ । ସାମାଜିକ ଦାୟିତ୍ୱ ସହ ବ୍ୟକ୍ତିବୈଶିଷ୍ଟ୍ୟ କିପରି ଛାତ୍ରଛାତ୍ରୀମାନଙ୍କଠାରେ ବିକାଶ ପାଇବ ସେ ଦୃଷ୍ଟିରୁ ବିଭିନ୍ନ ପଠନ ଓ ଶିକ୍ଷକ ସହାୟକ ପୁସ୍ତକ ଲେଖାଯିବ । Remedial କାର୍ଯ୍ୟକ୍ରମ ଦଶମ ଶ୍ରେଣୀ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରାଯିବ । ବ୍ୟକ୍ତିକୁ ଶିକ୍ଷାର ଏକକ ଭାବରେ ଗ୍ରହଣ କରାଯିବ ।

୧୨ । Cumulative Record Card, Guidance, Teacher made tests ଆଦି ଉପରେ ଗୁରୁତ୍ୱ ଦିଆଯିବ ।

୧୩ । ଗଣତନ୍ତ୍ର, ଧର୍ମନିରପେକ୍ଷତା, ସମାଜବାଦ ଆଦି ସାମ୍ବିଧାନିକ ଲକ୍ଷ୍ୟକୁ କିପରି କାର୍ଯ୍ୟକାରୀ କରାଯିବ ଏଥିପାଇଁ ପାଠ୍ୟ-ଖସଡ଼ା, ସୂଚନା ପତ୍ର, ପୁସ୍ତକାଦି ରଚନା କରାଯାଇ ସମାଜ ଓ ଶିକ୍ଷାୟତନକୁ ସଚେତନ କରାଯିବ ।

୧୪ । ଶିକ୍ଷକଙ୍କ ମର୍ଯ୍ୟାଦା, ସ୍ୱାଧୀନତା, ସ୍ୱାଭିମାନ, ସୁବିଧାସୁଯୋଗ ପ୍ରତି ପ୍ରାଧାନ୍ୟ ଦିଆଯିବ ।

୧୫ । Vocationalisation, Universalisation, Literacy ଆଦି କାର୍ଯ୍ୟକ୍ରମ ଅଗ୍ରାଧିକାର ପାଇବ । ପ୍ରତ୍ୟେକ ଗ୍ରାମର ବିକାଶକୁ ଲକ୍ଷ୍ୟ ରଖି ଗ୍ରାମକୁ ଏକକରୂପେ ଗ୍ରହଣ କରାଯିବ ଓ ବିକାଶ ସହିତ ଶିକ୍ଷାର ସଂଯୋଗ ରହିବ । ବିଦ୍ୟାଳୟ ସଙ୍ଗମ ଯୋଜନା କାର୍ଯ୍ୟକାରୀ କରାଯିବ । Developmental activities should spread evenly and the school should be the centre.

□□□

# ନୂତନ ଶିକ୍ଷା ଯୋଜନାର ଭୂମି ଓ ଭୂମିକା

ସ୍କୁଲ ଓ କଲେଜ ଶ୍ରେଣୀର ଏହି ନୂତନ ଡାଞ୍ଚାକୁ ଭଲଭାବରେ ବୁଝିବା ଏକାନ୍ତ ଆବଶ୍ୟକ। ତିନୋଟି ସଂଖ୍ୟାରେ ଗଠିତ ଏହି ଗାଣିତିକ ସଂଯୋଗ ପଛରେ ଶିକ୍ଷାର ସ୍ୱରୂପ, ଦର୍ଶନ, ଉଦ୍ଦେଶ୍ୟ, ପ୍ରଣାଳୀ ଆଦି ସ୍ୱତନ୍ତ୍ରଭାବରେ ରହିଛି। ପ୍ରକୃତ ବୁଝାମଣା ନ ଥାଇ ସମର୍ଥନ ହେଲେ ସୁଦ୍ଧା ତାହା ଆଦୌ ଗ୍ରହଣୀୟ ନୁହେଁ। ବୁଝାମଣାର ଅଭାବରୁ ବିରକ୍ତ, ବିରୋଧ ଓ ବିତୃଷ୍ଣା ମଧ୍ୟ ପ୍ରକାଶ ପାଇପାରେ। ଏଥିପ୍ରତି ମନୋଭାବ ମଧ୍ୟ ଉଦାସୀନ ହୋଇପାରେ। ଏସବୁ କେବେହେଁ ସହାୟକ ନୁହେଁ, ବରଂ ସଫଳତାର ପ୍ରତିକୂଳାଚରଣ କରେ। ସେଥିପାଇଁ ବ୍ୟାପକ ବୁଝାମଣା ଗଭୀରଭାବରେ ହେବା ଉଚିତ।

**ବିଚାର ଓ ବୈଶିଷ୍ଟ୍ୟ**

ଆଲୋଚନା ପ୍ରସଙ୍ଗରେ କେତେକ ସ୍ଥଳରେ ଉକ୍ତ ନୂତନ ଡାଞ୍ଚାରୁ ଯୁକ୍ତ ଚିହ୍ନଟିକୁ ବାଦ୍ ଦେଇ କେବଳ ସଂଖ୍ୟାରେ ପ୍ରକାଶ କରିବାର ଦେଖାଯାଏ ଅର୍ଥାତ୍ ଦଶ, ଦୁଇ, ତିନି ବୋଲି କୁହାଯାଏ। ଏଥିରେ ଶିକ୍ଷାର ପର୍ଯ୍ୟାୟକ୍ରମିକତା ପ୍ରତି ଦୃଷ୍ଟି ଦିଆଯାଏ ନାହିଁ। ଦଶ ବର୍ଷର ନିମ୍ନମାଧ୍ୟମିକ ଶିକ୍ଷା, ଦୁଇ ବର୍ଷର ଉଚ୍ଚତର ମାଧ୍ୟମିକ ଶିକ୍ଷା ଓ ସ୍ନାତକ ଶିକ୍ଷା ପରସ୍ପର ପର୍ଯ୍ୟାୟକ୍ରମିକ। ପ୍ରତ୍ୟେକ ସ୍ତରର ଉଦ୍ଦେଶ୍ୟ, ପାଠ୍ୟକ୍ରମ ଓ ପ୍ରଣାଳୀ ପରବର୍ତ୍ତୀ ଓ ପୂର୍ବବର୍ତ୍ତୀ ସ୍ତର ସହିତ ସମ୍ପୃକ୍ତ। ଏସବୁ ଗୋଟିଏ ସ୍ତରରୁ ସ୍ତରାନ୍ତରରେ କ୍ରମୋନ୍ନତ। ବିଦ୍ୟାର୍ଥୀମାନଙ୍କର ବ୍ୟକ୍ତିତ୍ୱର ବିକାଶ ସହିତ ମଧ୍ୟ ସମ୍ପୃକ୍ତ। ବିକାଶ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା ଓ ଏହି ବିକାଶର ସ୍ପଷ୍ଟ ରୂପାୟନପାଇଁ ଶିକ୍ଷା ଏକ ନିରବଚ୍ଛିନ୍ନ ପ୍ରକ୍ରିୟା। ଯୁକ୍ତ ଚିହ୍ନଦ୍ୱାରା ଏହି ପର୍ଯ୍ୟାୟକ୍ରମିକତା ଓ ନିରବଚ୍ଛିନ୍ନତା ସୂଚିତ ହୁଏ। ପୁନଶ୍ଚ ଶିକ୍ଷା ଏକ ଆଜୀବନ ପ୍ରକ୍ରିୟା ହୋଇଥିବାରୁ ଏହି ଡାଞ୍ଚାର ପୂର୍ବରୁ ଓ ପରେ ଅନେକଗୁଡ଼ିଏ ଅନୁରୂପ ଯୁକ୍ତଚିହ୍ନ ରହିଛି, କିନ୍ତୁ ରାଷ୍ଟ୍ରର ଶିକ୍ଷା ପଦ୍ଧତିରେ ଏହି ଡାଞ୍ଚାକୁ ସୁସ୍ପଷ୍ଟ ରୂପ ଦିଆଯାଇଛି।

ତେଣୁ ଜାତୀୟ ଶିକ୍ଷାର ଡାଞ୍ଚା ଓ ବିନ୍ୟାସ ବହୁବିଧ ହେଲେ ଏହାଦ୍ୱାରା ବିଶୃଙ୍ଖଳା ଓ ବିଭ୍ରାନ୍ତି ହିଁ ସାର ହୁଏ। ବସ୍ତୁତଃ ବି.ଏ. ପାଶ୍ କରିବାପାଇଁ ଜଣେ ଛାତ୍ରକୁ କେତେକ ରାଜ୍ୟରେ ୧୪ ବର୍ଷ ଲାଗୁଥିବାସ୍ଥଳେ ଅନ୍ୟ କେତେକ ରାଜ୍ୟରେ ୧୫ ବର୍ଷ ବା ୧୬ ବର୍ଷ ଲାଗୁଛି। ସେହିପରି ସ୍ନାତକ ଶିକ୍ଷାକୁ ଛାଡ଼ିଦେଲେ ତତ୍ ପୂର୍ବବର୍ତ୍ତୀ ମାଧ୍ୟମିକ ଶିକ୍ଷାର ସମୟ ୧୨ ବର୍ଷ ଓ ୧୧ ବର୍ଷ ହୋଇଅଛି। ସ୍ନାତକ

ଶିକ୍ଷାର ସମୟ ମଧ୍ୟ ଦୁଇରୁ ତିନି ବର୍ଷଯାଏ ରହିଛି । ଏହା ଫଳରେ ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାଗବେଷକ ଗୋଟିଏ ରାଜ୍ୟରୁ ରାଜ୍ୟାନ୍ତର ଗଲେ ଘୋର ଅସୁବିଧାର ସମ୍ମୁଖୀନ ହୁଅନ୍ତି । ତେଣୁ ଜାତୀୟ ସଂହତିର ସହାୟକ ପରିସ୍ଥିତି ସୃଷ୍ଟ ହୁଏ ନାହିଁ । ମାନର ପ୍ରଶ୍ନ ମଧ୍ୟ ଏହା ସହିତ ପରୋକ୍ଷରେ ଜଡ଼ିତ ହୁଏ । ମାନକୁ କ୍ରମୋନ୍ନତ କରି ଭାରତୀୟ ଶିକ୍ଷାର ମାନକୁ ବିଶ୍ୱର ଶିକ୍ଷାମାନ ସହିତ ତୁଳନୀୟ କରିବା ସହଜ ହୁଏ ନାହିଁ ।

## ଅଧିକ ଗୁରୁତ୍ୱପୂର୍ଣ୍ଣ

ଶିକ୍ଷାର ଏହି ନୂତନ ଡାଞ୍ଚାର ଅନେକଗୁଡ଼ିଏ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦିଗ ରହିଛି । ପ୍ରଥମ ଦିଗଟି ହେଲା, ପ୍ରଥମ ଦଶ ବର୍ଷର ସ୍କୁଲ ଶିକ୍ଷା ହେଉଛି ଏକ ସାଧାରଣ ଶିକ୍ଷାକ୍ରମ । ଏହି ଦଶ ବର୍ଷରେ କୌଣସି ଇଚ୍ଛାଧୀନ ବିଷୟ ଗ୍ରହଣ କରି ଜୀବନର ଭବିଷ୍ୟତ କର୍ମପନ୍ଥା ନିର୍ବାଚନ କରିବାର ସୁଯୋଗ ରହିଲା ନାହିଁ । ବର୍ତ୍ତମାନ ନବମ ଶ୍ରେଣୀରେ ଗଣିତ, ସଂସ୍କୃତ, ବିଜ୍ଞାନ, ଶରୀରତତ୍ତ୍ୱ, ନଗର ବିଜ୍ଞାନ ଆଦି କୌଣସି ଗୋଟିଏ ଇଚ୍ଛାଧୀନ ବିଷୟରେ ଅଧିକ ଜ୍ଞାନାର୍ଜ୍ଜନର ସୁଯୋଗ ଦିଆଯାଉଛି । ଗଣିତ ବାଧ୍ୟତାମୂଳକ ବିଷୟ ହେଲେହେଁ ବାଳିକାମାନେ ଏହାକୁ ଛାଡ଼ି ଦେଇପାରିବେ । ସର୍ବସାଧାରଣଙ୍କ ପାଇଁ ଆମ ହାଇସ୍କୁଲ ସାର୍ଟିଫିକେଟ ପାଠ୍ୟକ୍ରମ ସାଧାରଣ ଜ୍ଞାନାର୍ଜ୍ଜନର ପାଠ ନୁହେଁ । ପିଲାମାନଙ୍କ ପ୍ରତି ଆମେ ପାତର ଅନ୍ତର ବିଚାର କରିଥାଉଁ । ଯେଉଁମାନେ ଇଚ୍ଛାଧୀନ ବିଷୟଭାବରେ ଗଣିତକୁ ନିର୍ବାଚନ କରିଥାନ୍ତି ସେମାନେ ଆମ ସାଧାରଣ ଦୃଷ୍ଟିରେ ମେଧାବୀ ଅଟନ୍ତି । ସେମାନଙ୍କ ବିଷୟରେ ଉଚ୍ଚ ଭବିଷ୍ୟତର କଳ୍ପନା କରାଯାଇଥାଏ । ଆହୁରି ମଧ୍ୟ ଏପରି ଇଚ୍ଛାଧୀନ ବିଷୟ ଅଛି ଯାହାର ପାଠପଢ଼ା ସୁଯୋଗ ସ୍କୁଲରେ ନ ନେଇ ପିଲାଏ ଘରେ ଘରେ ପଢ଼ି ହାଇସ୍କୁଲ ପରୀକ୍ଷା ଦେଇପାରିବେ । ଅତଏବ ଏହାର ଗୁରୁତ୍ୱ ଆମ ଦୃଷ୍ଟିରେ ଊଣା । ଅପରିଣତ ବୟସରେ ଜୀବନର ଭାବୀ ପନ୍ଥା ନିର୍ବାଚନ କରିବା ସଙ୍ଗତ ନୁହେଁ । ଏହାକୁ "ବାଲ୍ୟ ବିବାହ" ସଙ୍ଗେ ତୁଳନା କରିଯାଇଛନ୍ତି । ଏହା ଅସଙ୍ଗତ । ଶିକ୍ଷା ବିଷୟ ଓ ଶିକ୍ଷାର୍ଥୀମାନଙ୍କ ବିଷୟରେ ପାତର ଅନ୍ତର ମନୋଭାବ ପୋଷଣ କରିବା ମଧ୍ୟ ମାରାତ୍ମକ । ତେଣୁ ପ୍ରଥମ ଦଶ ବର୍ଷର ଶିକ୍ଷା ସମସ୍ତଙ୍କ ପାଇଁ ସର୍ବସାଧାରଣ ପାଠ୍ୟକ୍ରମ କରିବାର ପରିକଳ୍ପନା ଏହି ନୂତନ ଯୋଜନାରେ ରହିଛି । ଜ୍ଞାନର ବିସ୍ଫୁରଣ ଘଟୁଛି । ସାମାଜିକ କର୍ମକୁଶଳତା ଓ ପୌରଜୀବନର ଆବଶ୍ୟକତା ଖୁବ୍ ବେଶୀ ବଢ଼ିଯାଇଛି । ତେଣୁ ଏହି ଦଶ ବର୍ଷର ପାଠ୍ୟକ୍ରମରେ ଭାଷା ଶିକ୍ଷା, ଗଣିତ, ବିଭିନ୍ନ ବିଜ୍ଞାନ ବିଷୟ, ସ୍ୱାସ୍ଥ୍ୟ ଶିକ୍ଷା, କର୍ମାନୁଭୂତି, ବିଭିନ୍ନ ସମାଜ ବିଜ୍ଞାନ ବିଷୟ, କଳା ଓ ସୃଜନାତ୍ମକ ଶିକ୍ଷାକୁ ସ୍ଥାନ

ଦିଆଯାଇଛି । ଏସବୁ ବିଷୟର ଶିକ୍ଷା ଛାତ୍ରଭେଦରେ ପୃଥକ ହେଉ ନାହିଁ । ବ୍ୟକ୍ତିଗତ ଓ ସାମାଜିକ ଜୀବନର ସମନ୍ୱିତ ବିକାଶ କରାଯାଇ ପୂର୍ଣ୍ଣାଙ୍ଗ ମନୁଷ୍ୟର ସୃଷ୍ଟିପାଇଁ ସମାନ ସୁଯୋଗ ସମସ୍ତଙ୍କୁ ଦିଆଯାଉଛି । ଏହାଦ୍ୱାରା ନିମ୍ନ ମାଧ୍ୟମିକ ଶିକ୍ଷା ସୁଦୃଢ଼ ହେବ, ଏଥିରେ ସନ୍ଦେହ ନାହିଁ ।

ପରବର୍ତ୍ତୀ ଯୁକ୍ତ ଦୁଇ ସ୍ତରରେ ଶିକ୍ଷାକୁ ବିଭିନ୍ନ ବୃତ୍ତିଭିତ୍ତିକ କରାଯାଇଛି । ପ୍ରଥମ ଦଶ ବର୍ଷର ଶିକ୍ଷାରେ କର୍ମାନୁଭୂତି, କ୍ରିୟାକଳାପ ଓ ପ୍ରାୟୋଗିକତା ଉପରେ ଯେଉଁ ଗୁରୁତ୍ୱ ଆରୋପ କରାଯାଇଛି ତା'ର ସ୍ୱାଭାବିକ ପରିଣତି ହେଉଛି ଏହି ବୃତ୍ତି ଭିତ୍ତିକରଣ । ବିଶେଷ ଜ୍ଞାନ ଅର୍ଜନ କରି ଭାବୀ ଜୀବନପାଇଁ ବୃତ୍ତିପନ୍ଥା ନିର୍ବାଚନ କରିବାର ସୁଯୋଗ ସଦୁପଯୋଗ ପାଇଁ ଶିକ୍ଷାର୍ଥୀଙ୍କ ପରିଣତ ବୟସ ହୋଇଥାଏ । ଯେଉଁମାନେ ବୌଦ୍ଧିକ ଦିଗରେ ଆଗ୍ରହୀ ଓ ସମର୍ଥ ସେମାନଙ୍କୁ ତିନି ବର୍ଷର ସ୍ନାତକ ପାଠ୍ୟକ୍ରମରେ ଯୋଗ ଦେବାର ସୁବିଧା ଅଛି । ଏହା ହିଁ ଉଚ୍ଚତର ମାଧ୍ୟମିକ ଶିକ୍ଷାର ପରିକଳ୍ପନା । ଏହାକୁ ମିଶାଇ ବାର ବର୍ଷର ମାଧ୍ୟମିକ ଶିକ୍ଷାର ବ୍ୟବସ୍ଥା ରହୁଛି । ଏତଦ୍ୱାରା ମାଧ୍ୟମିକ ଶିକ୍ଷା ମୁଦାଲିୟର କମିଶନ୍‌ଙ୍କ ଭାଷାରେ "ଦୁର୍ବଳତମ ସଂଯୋଗ" ନ ହୋଇ ସୁଦୃଢ଼ ସେତୁ ହେବ ।

ଯୁକ୍ତ ତିନି ସ୍ତର ହେଉଛି ପ୍ରଥମ ସ୍ନାତକ ଶିକ୍ଷା । ଏହାର ଦ୍ୱାର ଆଉ ସାଆଣ ମେଲା ରହିବ ନାହିଁ କିମ୍ବା ସମସ୍ତେ ଏଆଡ଼େ ଧାଇଁବେ ନାହିଁ । ଯୋଜନାବଦ୍ଧ ମାନବ ଶକ୍ତିର ବିକାଶପାଇଁ ବ୍ୟବସ୍ଥା ହେବା ଫଳରେ ପ୍ରଥମ ଦଶ ବର୍ଷ ଓ ବାର ବର୍ଷର ଶିକ୍ଷା ପରେ ଅନେକ ପିଲା ସଂସାରରେ ପ୍ରବେଶ କରିଯିବେ । ଫଳରେ ସୀମିତ ସଂଖ୍ୟକ ସମର୍ଥ ଶିକ୍ଷାର୍ଥୀ ସ୍ନାତକ ଶିକ୍ଷା ଲାଭ କରିବେ ଓ ଏହାର ସମୟ ଦୁଇ ବର୍ଷରୁ ତିନି ବର୍ଷକୁ ବଢ଼ିଯିବା ହେତୁ ଏବଂ ଏହାର ପୂର୍ବବର୍ତ୍ତୀ ଶିକ୍ଷା ବାର ବର୍ଷର ହୋଇଥିବା ଯୋଗୁଁ ସ୍ନାତକ ଶିକ୍ଷାର ମାନ ନିଶ୍ଚିତ ଭାବରେ ସମୃଦ୍ଧ ଓ ସୁପରିକଳ୍ପିତ ହେବ ।

ନୂତନ ପଦ୍ଧତିର ପରିକଳ୍ପନା ଅନୁସାରେ ମିଡ୍‌ଲ୍ ସ୍କୁଲକୁ ତିନିବର୍ଷିଆ, ମାଧ୍ୟମିକ ଶିକ୍ଷାକୁ ବାରବର୍ଷିଆ ଓ ପ୍ରଥମ ସ୍ନାତକ ଶିକ୍ଷା ତିନିବର୍ଷିଆ କରାଗଲେ ଯେ ଶିକ୍ଷାର ଗୁଣାତ୍ମକ ପରିବର୍ତ୍ତନ କରାଯାଇପାରିବ ଏପରି ଭାବିବା ଠିକ୍ ନୁହେଁ । ଶିକ୍ଷାର ସମୟ ଏକାକୀ ମାନ ବୃଦ୍ଧିର ପରିଚାୟକ ନୁହେଁ । ଶିକ୍ଷାୟତନକୁ ଅଧିକ ଶ୍ରେଣୀବିଶିଷ୍ଟ କରାଯାଇପାରିଲେ; ଉଦାହରଣସ୍ୱରୂପ, ପ୍ରାଥମିକ ବିଦ୍ୟାଳୟ ପାଞ୍ଚ ଶ୍ରେଣୀଆ; ମିଡ୍‌ଲ୍ ସ୍କୁଲ ତିନି ଶ୍ରେଣୀଆ ବା ଆଠ ଶ୍ରେଣୀଆ; ହାଇସ୍କୁଲ ଦଶ ଶ୍ରେଣୀଆ ବା ପାଞ୍ଚ ଶ୍ରେଣୀଆ ଇତ୍ୟାଦି ଏହା ଶିକ୍ଷାନୁକୂଳ ହେବ । ମାନବିକ ଓ

ଭୌତିକ ସମ୍ବଳର ଅଧିକ ସଦୁପଯୋଗ କରାଯାଇପାରିବ । ଏହା ସହିତ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ନୂତନ ଆଭିମୁଖ୍ୟ ଓ ବୈପ୍ଳବିକ ବ୍ୟବସ୍ଥା । ଜାତୀୟ ସଂହତି, ସାମାଜିକ ନ୍ୟାୟ, ଉତ୍ପାଦନଶୀଳତା, ସମାଜର ଆଧୁନିକୀକରଣ ତଥା ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟ ସହିତ ଶିକ୍ଷଣ ଅନୁଭୂତି ଓ ପାଠ୍ୟକ୍ରମକୁ ସଂପୃକ୍ତ କରିବା ଦ୍ୱାରା ଶିକ୍ଷା ସାମାଜିକ ପରିବର୍ତ୍ତନର ସାଧନ ହୋଇପାରିବ । ଇଉନୋସ୍କୋ କମିଶନ୍ ଯଥାର୍ଥରେ ମତ ଦେଇଛନ୍ତି ଯେ ଶିକ୍ଷା ମାନବ ଇତିହାସରେ ଯୁଗ ଯୁଗ ଧରି ଜୀବନ ଓ କର୍ମଠାରୁ ଅଲଗା ହୋଇ ରହିଅଛି । ବିଦ୍ୟାଳୟରେ ପ୍ରବେଶ କରିଗଲେ କାମକୁ ହାତରେ ନେବା ଦରକାର ନାହିଁ । ପାଠପଢ଼ା ସରିଗଲେ କାମ କରିବାକୁ ହୁଏ ଓ ତାପରେ ଆଉ ସ୍କୁଲକୁ ଆସିବା ଦରକାର ନାହିଁ । ଗାନ୍ଧିଜୀ ଏହି ଭାବରେ ତୀବ୍ର ଅସନ୍ତୋଷ ପ୍ରକାଶ କରି କର୍ମକୁ ଶିକ୍ଷାର ବାହକ କରିଥିଲେ । ଥିଲାବାଲା ଓ ନଥିଲାବାଲାଙ୍କ ମଧ୍ୟରେ ପାର୍ଥକ୍ୟ ଦୂର କରିବାପାଇଁ ଶିକ୍ଷାରେ କର୍ମର ସ୍ଥାନ ଦିଆଯାଏ । ସୁତରାଂ କର୍ମାନୁଭୂତି, ବିଜ୍ଞାନ ଓ ଗଣିତର ଶିକ୍ଷା ଅପରିହାର୍ଯ୍ୟ ଓ ଏହାଦ୍ୱାରା ଉତ୍ପାଦନକ୍ଷମ, ବିଚାରବୁଦ୍ଧିସମ୍ପନ୍ନ ଓ ସର୍ଜନାତ୍ମକ ନାଗରିକ ପ୍ରସ୍ତୁତ ହୋଇପାରିବେ । ଲୋକମାନଙ୍କର ଆଶା, ଆକାଂକ୍ଷା ଓ ଆବଶ୍ୟକତା ସହିତ ଶିକ୍ଷାକୁ ସଂପୃକ୍ତ କରାଯିବ । ତେଣୁ ଏହି ନୂତନ ପଦ୍ଧତି ସଂପୂର୍ଣ୍ଣ ଅଭିନବ ଓ ପ୍ରଚଳିତ ପଦ୍ଧତିଠାରୁ ପୃଥକ୍ ।

ଏହିପରି ଭାବରେ ବିଶ୍ଳେଷଣ କଲେ ଦେଖାଯିବ ଯେ ଗୋଟିଏ ଆଧୁନିକ ସମାଜ ସୃଷ୍ଟି କରିବାରେ ନୂତନ ପଦ୍ଧତି ସହାୟକ ହେବ । ପରମ୍ପରା ଆଶ୍ରିତ ସମାଜ କ୍ରମେ ଗତିଶୀଳ ଓ ବିଜ୍ଞାନଭିତ୍ତିକ ସମାଜରେ ପରିଣତ ହେବ । ସମାଜର ଏହି ରୂପାନ୍ତରୀକରଣରେ ଶିକ୍ଷାର ନିର୍ଦ୍ଦିଷ୍ଟ ଦାନ ଅଛି । ସମାଜର ବିକାଶ ସହିତ ସଂଶ୍ଳିଷ୍ଟ ରହି ଏହାକୁ ତ୍ୱରାନ୍ୱିତ କରିପାରିଲେ ଏହା ପ୍ରାସଙ୍ଗିକ ହେବ । ଦଶବର୍ଷିଆ ବିଦ୍ୟାଳୟର ପାଠ୍ୟକ୍ରମପାଇଁ ଯେଉଁ ପ୍ରସ୍ତାବନାର ଅବତାରଣା କରାଯାଇଛି ସେଥିରେ ଦଶ ବର୍ଷ ପାଠର ବିଭିନ୍ନ ସ୍ତର ଅର୍ଥାତ୍ ପ୍ରାଥମିକ ବିଦ୍ୟାଳୟ, ମିଡ଼ଲ୍ ସ୍କୁଲ ଓ ନିମ୍ନ ମାଧ୍ୟମିକ ସ୍ତରପାଇଁ ପର୍ଯ୍ୟାୟ କ୍ରମିକଭାବରେ ଉଦ୍ଦେଶ୍ୟ ସ୍ଥିର୍ କରାଯାଇଛି । ଆହୁରି ମଧ୍ୟ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ବିଭିନ୍ନ ପାଠ ବିଷୟର ଉଦ୍ଦେଶ୍ୟ ସ୍ତର ଅନୁସାରେ ନିର୍ଣ୍ଣୟ କରାଯାଇଛି । ସମଗ୍ର ପରିକଳ୍ପନାର ଭିତ୍ତିଭାବରେ ସମାଜତତ୍ତ୍ୱ ଓ ଶିକ୍ଷାବିକାଶ ସମ୍ବନ୍ଧରେ ଆଧୁନିକ ବିଚାରଧାରାର ସନ୍ନିବେଶ ହୋଇଛି । ଏସବୁ ମଧ୍ୟରେ ଅନ୍ତର୍ନିହିତ ଐକ୍ୟର ପ୍ରତିଷ୍ଠା କରିହେବ ।

ଠିକ୍ ଏହି ସାମାଜିକ ପ୍ରାସଙ୍ଗିକତାର ପରିପ୍ରେକ୍ଷୀରେ ଆଲୋଚନା କଲେ ଜଣାଯାଏ ଯେ ପ୍ରତ୍ୟେକ ସ୍ତର ଅର୍ଥାତ୍ ଦଶ (ପାଞ୍ଚ+ତିନି+ଦୁଇ)+ଦୁଇ+ତିନି

ଶ୍ରେଣୀର ଶିକ୍ଷାୟତନକୁ କ୍ରମପ୍ରସ୍ତୁତକାରୀ ସୋପାନ ବୋଲି ବିଚାର କରିବା ସଙ୍ଗେ ସଙ୍ଗେ ଏହାର ଉଦ୍ଦେଶ୍ୟ ଓ ଆବଶ୍ୟକତା ଦୃଷ୍ଟିରୁ ଚୂଡ଼ାନ୍ତ ବୋଲି ଗ୍ରହଣ କରାଯାଇଅଛି । ଏବର ପୂର୍ବୋକ୍ତ ସ୍ଥିତି ଅର୍ଥାତ୍ ପ୍ରାଥମିକ ସ୍କୁଲ ହେଉଛି ମିଡ୍‌ଲ୍ ସ୍କୁଲର ଗୌଣ, ଏଥିପାଇଁ ଛାତ୍ର ପ୍ରସ୍ତୁତ କରିବାକୁ ଗୁରୁତ୍ୱ ଦିଆଯାଇଛି, କରିବି ଇତ୍ୟାଦିକୁ ବଦଳାଇ ଦିଆଯାଇଛି । ପ୍ରତ୍ୟେକ ସ୍ତରର ଶିକ୍ଷା ସାଙ୍ଗ କରିବା ସଙ୍ଗେ ସଙ୍ଗେ ବିଦ୍ୟାର୍ଥୀମାନେ ସାମାଜିକ ଜୀବନରେ ପ୍ରବେଶ କରିପାରିବେ ଓ ପରବର୍ତ୍ତୀ ସ୍ତରପାଇଁ ଉପଯୁକ୍ତ ହୋଇପାରିବେ । ଦଶ ବର୍ଷର ଶିକ୍ଷା ସମାପ୍ତି ପରେ କାର୍ଯ୍ୟତଃ ତିନୋଟି ପନ୍ଥା ଉନ୍ମୁକ୍ତ ରହିଛି-(୧) କର୍ମକ୍ଷେତ୍ରରେ ପ୍ରବେଶ, (୨) ବୃତ୍ତି ଶିକ୍ଷା ଓ (୩) ବୌଦ୍ଧିକ ଅଧ୍ୟୟନ । ବାର ବର୍ଷର ଶିକ୍ଷା ଶେଷରେ ମଧ୍ୟ ଅନୁରୂପ ବ୍ୟବସ୍ଥା ରହିଛି । ଦ୍ୱିତୀୟ ଓ ତୃତୀୟ ପନ୍ଥା ମଧ୍ୟରେ ଅଦଳ ବଦଳ ମଧ୍ୟ ହୋଇପାରିବ । ଯେଉଁମାନେ ସାମାଜିକ ଜୀବନର କର୍ମକ୍ଷେତ୍ରରେ ପ୍ରବେଶ କରିବେ ସେମାନେ ଅଣଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ଯୋଗ୍ୟତା ଅନୁରୂପ ଶିକ୍ଷା ସ୍ତରରେ ଯୋଗ ଦେଇପାରିବେ । ତେଣୁ ପାଠ୍ୟକ୍ରମର ପରିକଳ୍ପନା, କାର୍ଯ୍ୟକାରୀ ପଦ୍ଧତି ଓ ପ୍ରଣାଳୀ ତଥା ମୂଲ୍ୟାୟନକୁ ପରିବର୍ତ୍ତନସାପେକ୍ଷ ଓ ନମନୀୟ କରାଯାଇଅଛି । ଏସବୁର ଏକ ସୁଦୂରପ୍ରସାରୀ ତାତ୍ପର୍ଯ୍ୟ ହେଉଛି, ଶିକ୍ଷା ଓ ଜୀବନ ମଧ୍ୟରେ ନିବିଡ଼ ସମ୍ପର୍କ । ଜୀବନର ଅଧ୍ୟୟନ, ସମସ୍ୟା ଆଧାରିତ ପାଠ, ପ୍ରୟୋଗାତ୍ମକ କୌଶଳ, ବିଭିନ୍ନ ପାଠ୍ୟ ବିଷୟ ମଧ୍ୟରେ ସମ୍ପର୍କ, ପରିବେଶର ଅଧ୍ୟୟନ ଆଦି ଅଧିକରୁ ଅଧିକ ସ୍ଥାନ ପାଇଛି । ପ୍ରାସଙ୍ଗିକତା ତଦ୍ୱାରା ବୃଦ୍ଧି ପାଇଛି ।

**ଏକୀକୃତ ସମଗ୍ର ବିଚାର**

ସ୍କୁଲ୍ କଲେଜ ଶ୍ରେଣୀର ଏହି ଦଶ ଯୁକ୍ତ ଦୁଇ ଯୁକ୍ତ ତିନ ଡାଞ୍ଚା ପଛରେ ଏକ ଏକୀଭୂତ ଦ୍ୱାରା ଦୃଷ୍ଟିକୋଣ ରହିଛି । ସମଗ୍ର ଶିକ୍ଷାର ଏକୀକୃତ ରୂପାନ୍ତରୀକରଣ ପାଇଁ ଦୃଷ୍ଟି ଦିଆଯାଇଛି । ପ୍ରାଥମିକ ବିଦ୍ୟାଳୟଠାରୁ ଉପର ଉପରକୁ ଶିକ୍ଷାର ମାନୋନ୍ନତିର ପ୍ରଭାବ କ୍ରମେ ସଞ୍ଚୟୀକୃତ ହୋଇଅଛି । ସେହିପରି ସ୍ନାତକ ଗ୍ରାଜୁଏଟ୍ ତଥା ଉଚ୍ଚତର ଓ ନିମ୍ନମାଧ୍ୟମିକ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ବିଦ୍ୟାର୍ଥୀ ଶିକ୍ଷକଭାବରେ ଶିକ୍ଷାର ମାନୋନ୍ନତି ପାଇଁ ସହାୟକ ହେବେ । ଏହି ଏକୀକୃତ ସମଗ୍ର ବିଚାରକୁ ନେଇ ନୂତନ ଡାଞ୍ଚାକୁ ସମଗ୍ର ଭାବରେ କାର୍ଯ୍ୟକାରୀ କରିବା ଉଚିତ୍ ।

ଶିକ୍ଷାର ଯେ କୌଣସି ସ୍ତରରେ ବିଭିନ୍ନ ପାଠ୍ୟ ବିଷୟ ମଧ୍ୟରେ ଏକୀକୃତ ସମଗ୍ର ବିଚାର ପ୍ରତି ଲକ୍ଷ୍ୟ ଦିଆଯାଇଛି । ଯେ କୌଣସି ବିଷୟାନ୍ତର୍ଗତ ପାଠର ନିର୍ବାଚନ, ଉପସ୍ଥାପନ ଓ ମୂଲ୍ୟାୟନ ଏପରି କରାଯିବ ଯଦ୍ୱାରା ସେହି ବିଷୟର ଓ

ତତ୍‌ପରିପୋଷକ ଶିକ୍ଷା ସ୍ତରର ଉଦ୍ଦେଶ୍ୟ ସାଧିତ ହେବ । ତେଣୁ କୌଣସି ଗୋଟିଏ ବିଷୟଗ୍‌ ବିଭିନ୍ନ ପାଠ ମଧ୍ୟରେ ସହସମ୍ପର୍କ ସ୍ଥାପନ କରିବାପାଇଁ ଧ୍ୟାନ ଦିଆଯାଇଛି । ଏହାଛଡ଼ା ବିଭିନ୍ନ ବିଷୟ ମଧ୍ୟରେ ଏକୀକୃତ ସମ୍ପର୍କ ସ୍ଥାପନ ପାଇଁ ନଜର ରହିଛି । ପରିବେଶକୁ ଅନୁଧ୍ୟାନ କରିବା ଓ ଏହାକୁ ବୁଝିବା ଏବଂ ପ୍ରଭାବିତ କରିବା ହେଉଛି ଦୈନନ୍ଦିନ ଜୀବନ । ତେଣୁ ଏ ଦିଗରେ ବିଭିନ୍ନ ବିଷୟ ସହାୟକ ହେଉ-ଏହା ଲକ୍ଷ୍ୟ କରାଯାଇଛି ।

ଉଦ୍ଦେଶ୍ୟ, ଶିକ୍ଷଣ ଅନୁଭୂତି, ପାଠ୍ୟପୁସ୍ତକ, ସହାୟକ ସାମଗ୍ରୀ, ପ୍ରଣାଳୀ ଓ ମୂଲ୍ୟାୟନ ମଧ୍ୟରେ ଏକୀକୃତ ସମସ୍ତ ବିଚାର ରହିଛି । ସେସବୁକୁ ପୃଥକ୍ ଭାବରେ ବିବେଚନା କରାଯିବ ନାହିଁ । ସେସବୁ ଶିକ୍ଷା ଯୋଜନାର ଗୋଟିଏ ଗୋଟିଏ ଦିଗ । ଶିକ୍ଷାର ଏହି ନୂତନ ଢାଞ୍ଚାକୁ ଏହାର ସମଗ୍ର ରୂପରେ କାର୍ଯ୍ୟକାରୀ କରାଯିବା ଉଚିତ ।

□□□

ଶ୍ରୀଯୁକ୍ତ ଶତ୍ରୁଘ୍ନ ନାଥଙ୍କ ଜନ୍ମ ଫେବୃଆରୀ ୧ ତାରିଖ, ୧୯୧୫ ମସିହା ଭଦ୍ରକ ଜିଲ୍ଲାର ଶାଳନ୍ଦୀ ନଦୀକୂଳରେ ଅବସ୍ଥିତ ଉତ୍ତରବାହିନି ଗ୍ରାମରେ । ଶିକ୍ଷା ଭଦ୍ରକ ହାଇସ୍କୁଲ, ରେଭେନ୍‌ସା ମହାବିଦ୍ୟାଳୟରେ ଆଇ.ଏସ୍.ସି ଏବଂ ବି.ଏ (ଗଣିତ ଅନର୍ସ ଓ ଅର୍ଥନୀତି ପାସ), ଇନ୍‌ଷ୍ଟିଚ୍ୟୁଟ୍ ଇନ୍ ଏଜୁକେସନ, ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଶିକ୍ଷାରେ ସ୍ନାତକ । ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଶିକ୍ଷକତା ଆରମ୍ଭ କରି ଶିକ୍ଷା ପରିଦର୍ଶକ, ପ୍ରଶିକ୍ଷକ, ମୌଳିକ ଶିକ୍ଷାର ସଂଗଠକ, ମହାବିଦ୍ୟାଳୟର ଅଧ୍ୟକ୍ଷ ତଥା ଆହୁରି ଅନେକ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ରହି କର୍ତ୍ତବ୍ୟନିଷ୍ଠ ଭାବରେ ତାଙ୍କର କାମ ତୁଲାଇ ଅଛନ୍ତି । ସେ ଜଣେ ଲେଖକ, ଶିକ୍ଷକ, ଗବେଷକ, ଶିକ୍ଷାବିତ୍ ଓ ମହିମା ଧର୍ମାଲମ୍ବୀ ଭାବରେ ସୁପରିଚିତ । 'ଆମ ଭାଷା ବିଭବ', 'ପିଲାଙ୍କ ବିଲାତ କଥା', 'ବିଶ୍ୱ ଓ ବ୍ୟକ୍ତି', 'ମହିମା ଧର୍ମର ପ୍ରକାଶ ଓ ବିକାଶ', 'ବ୍ୟକ୍ତିତ୍ୱର ସ୍ଫୁରଣ', 'ଶିକ୍ଷକ ସହାୟକ ପ୍ରବନ୍ଧ' ଆଦି ଅନେକ ପୁସ୍ତକର ରଚୟିତା ।